

# ବାଗ୍ମୀ ବିଶ୍ୱନାଥ

କୃଷ୍ଣଚନ୍ଦ୍ର କର

IM TO WHOM R.

ସର୍ବେ ଭବନ୍ତୁ ସୁଖିନଃ
ସର୍ବେ ସନ୍ତୁ ନିରାମୟାଃ
ସର୍ବେ ଭଦ୍ରାଣି ପଶ୍ୟନ୍ତୁ
ମା କଶ୍ଚିଦ୍ ଦୁଃଖଭାଗ୍‌ଭବେତ୍

ବାଗ୍ମୀ ବିଶ୍ୱନାଥ

# ବାପ୍ପା ବିଶ୍ୱନାଥ

ଅସତୋ ମା ସଦ୍‌ଗମୟ
ତମସୋ ମା ଜ୍ୟୋତିର୍ଗମୟ
ମୃତ୍ୟୋର୍ମାଽମୃତଂ ଗମୟ

(ବୃହଦାରଣ୍ୟକୋପନିଷଦ୍-୧/୩/୨୮)

From appearance lead me to Reality
From darkness lead me to Light
From death lead me to Immortality.

—Chakrabarti Rajgopalachari



ବାଗ୍ମୀ ବିଶ୍ୱନାଥ

ଲେଖକ

ଶ୍ରୀ କୃଷ୍ଣଚନ୍ଦ୍ର କର

ପ୍ରକାଶକ

ରାଷ୍ଟ୍ରଭାଷା ସମବାୟ ପ୍ରକାଶନ
ରାଷ୍ଟ୍ରଭାଷା ରୋଡ୍, କଟକ-୭୫୩ ୦୦୧

ମୂଲ୍ୟ

କୋଡ଼ିଏ ଟଙ୍କା ମାତ୍ର

ପ୍ରଥମ ପ୍ରକାଶ

ଡିସେମ୍ବର-୧୯୮୩

ପ୍ରଚ୍ଛଦଶିଳ୍ପୀ

ଶ୍ରୀ ଅସିତ୍ ମୁଖାର୍ଜୀ
ଶିଳ୍ପରୂପମ୍
ବକ୍ସିବଜାର୍, କଟକ-୭୫୩ ୦୦୨

ମୁଦ୍ରାକର

ଶ୍ରୀ ଗୋପୀନାଥ ସାହୁ
ରାଷ୍ଟ୍ରଭାଷା ସମବାୟ ପ୍ରେସ୍
ରାଷ୍ଟ୍ରଭାଷା ରୋଡ୍, କଟକ-୭୫୩ ୦୦୧


ସୂଚିପତ୍ର

| | ବିଷୟ | ପୃଷ୍ଠା |
|---|---|---|
| । ୧ । | ...ଳସାହିତ୍ୟ'ର ସ୍ଥାୟିତ୍ୱକଳ୍ପେ 'ଉତ୍କଳସାହିତ୍ୟ ପ୍ରେସ୍' ସ୍ଥାପନ | ବାଉନ |
| । ୧୫ । | ବାଗ୍ମୀ ବିଶ୍ୱନାଥ | ଛପନ |
| । ୧୬ । | ଜାତୀୟତାବାଦୀ ବିଶ୍ୱନାଥ | ଏକଷଠି |
| । ୧୭ । | ସମାଜସଂସ୍କାର : ଗ୍ରାମାଞ୍ଚଳର ଉନ୍ନୟନ | ଛେଷଠି |
| । ୧୮ । | କେତୋଟି ପାରିବାରିକ କର୍ତ୍ତବ୍ୟ ନିଷ୍ପାଦନ | ସତୁରି |
| । ୧୯ । | ବଙ୍ଗୋତ୍କଳ ସାମାଜିକ ବନ୍ଧନର ସାଧୁ ଉଦ୍ୟମ | ଏକସ୍ତରି |
| । ୨୦ । | ସାହିତ୍ୟରେ ସଂକଟ : ନୂତନ ଯୁବପ୍ରତିଭାର ସନ୍ଧାନ | ବାସ୍ତରି |
| । ୨୧ । | ବାରବର୍ଷବ୍ୟାପୀ ଧର୍ମଯୁଦ୍ଧ | ପଞ୍ଚସ୍ତରି |
| । ୨୨ । | ପ୍ରେସପ୍ରାସାଦ ନିର୍ମାଣ | ପଞ୍ଚାଶି |
| । ୨୩ । | ବଙ୍ଗୋତ୍କଳ ସାମାଜିକ ବନ୍ଧନର ସଂପ୍ରସାରଣ | ଅଣନବେ |
| । ୨୪ । | ଆଦର୍ଶ ମୁଦ୍ରକ ବିଶ୍ୱନାଥ | ନବେ |
| । ୨୫ । | 'ଅସହଯୋଗ'ରେ ଅ-ସହଯୋଗ | ବୟାନବେ |
| । ୨୬ । | ଉପାଧି ପ୍ରତ୍ୟାଖ୍ୟାନ | ଚଉରାନବେ |
| । ୨୭ । | ସଂସ୍କାରର ସଂଜ୍ଞା | ପଞ୍ଚାନବେ |
| । ୨୮ । | ନିରାକାର ଓ ସାକାର ତତ୍ତ୍ୱ | ଛୟାନବେ |
| । ୨୯ । | ଜୀବନ-ଚର୍ଯ୍ୟାର ଶେଷ ପୃଷ୍ଠା | ଅଠାନବେ |
| । ୩୦ । | ଶେଷ ବାଣୀ | ଶହେଦୁଇ |
| । ୩୧ । | ସମାଧିମନ୍ଦିର | ଶହେଛଅ |
| । ୩୨ । | ପିତୃପଦାଙ୍କଗୃହୀ ମହାନନ୍ଦଙ୍କ ଘରେ | ଶହେଆଠ |
| । ୩୩ । | ସ୍ୱର୍ଗତାତ୍ମାଙ୍କ ପରିବାରର ସର୍ବଶେଷ ସ୍ଥିତି | ଶହେଏଗାର |
| । ୩୪ । | ବିଶ୍ୱନାଥ-ଚନ୍ଦନର ଉଚ୍ଛିନସାର | ଶହେତେର |

# ବଂଶବୃକ୍ଷ
(GENEOLOGICAL TREE)

- ଖଗେଶ୍ୱର କର (ସ୍ତ୍ରୀ ଲକ୍ଷ୍ମୀ)
  - ନାରାୟଣଚନ୍ଦ୍ର (ସ୍ତ୍ରୀ ବୈଦେହୀ)
    - ବିଶ୍ୱନାଥ (ସ୍ତ୍ରୀ ଜାନକୀ)
      - ମାୟାଧର (ସ୍ତ୍ରୀ ବିମଳା)
        - ସୁଷମା (ସ୍ୱା. ହୃଦାନନ୍ଦ ଶତପଥୀ)
        - କ୍ଷିତୀନ୍ଦ୍ରନାଥ (ସ୍ତ୍ରୀ ନନ୍ଦିନୀ)
        - ରବୀନ୍ଦ୍ରନାଥ (ସ୍ତ୍ରୀ ସ୍ୱର୍ଣ୍ଣଲତା)
      - ନର୍ମଦା (ସ୍ୱା. ଜିତେନ୍ଦ୍ରକୁମାର ଦଣ୍ଡାତ)
      - ମହାନନ୍ଦ (ସ୍ତ୍ରୀ ରମଳା)
        - ସୁନନ୍ଦ (ସ୍ତ୍ରୀ ନିରୁପମା)
      - ପୂର୍ଣ୍ଣାନନ୍ଦ
      - ପ୍ରତିଭା
      - ସୁପ୍ରଭା
    - ଲୋକନାଥ (ସ୍ତ୍ରୀ ଦୁର୍ଗା)
    - ଭୋଳାନାଥ (ସ୍ତ୍ରୀ ପାର୍ବତୀ)
    - କୃଷ୍ଣଚନ୍ଦ୍ର (ସ୍ତ୍ରୀ ଦୁର୍ଗା)
    - ହୀରା (ସ୍ୱା. ପରମାନନ୍ଦ ମିଶ୍ର)
  - ମାଧବଚନ୍ଦ୍ର (ସ୍ତ୍ରୀ ସୁଧା)
    - ରାମଚନ୍ଦ୍ର (ସ୍ତ୍ରୀ ସୌଦାମିନୀ)
      - ଶାନ୍ତି (ସ୍ୱା. ଶ୍ୟାମସୁନ୍ଦର ଦାଶ)
      - ଇନ୍ଦୁ (ସ୍ୱା. ହେମନ୍ତଚନ୍ଦ୍ର ରଥ)
      - ସୁଧା (ସ୍ୱା. ବ୍ରଜକେଶରୀ ମିଶ୍ର)
      - ସତ୍ୟବ୍ରତ (ସ୍ତ୍ରୀ ବନ୍ଦନା)
        - କସ୍ତୁରୀ (ସ୍ୱା. ଅଞ୍ଜନକୁମାର ଷଣ୍ଡା)
        - ଅନିତା (ସ୍ୱା. ଶିବପ୍ରସାଦ ମିଶ୍ର)
        - ଅତସୀ
        - ରୁଦ୍ଧନା
        - ସରିତା
      - ସୁବ୍ରତ
      - ସୁଜାତା (ସ୍ୱା. ସୁଧାକର ଆଚାର୍ଯ୍ୟ)
      - ଦେବବ୍ରତ (ସ୍ତ୍ରୀ ରାଜଲକ୍ଷ୍ମୀ)
        - ଶୁଭାଶିଷ
        - ଶିବାଶିଷ
        - ସ୍ନେହାଶିଷ
        - ଶୁଦ୍ଧ...
    - ଲକ୍ଷ୍ମଣ (ସ୍ତ୍ରୀ ସୁଲୋଚନା)
      - ଉର୍ମିଳା (ସ୍ୱା. ମୁରଲୀ ଶତପଥୀ)



# ଧର୍ମବିପ୍ଲବର ପୃଷ୍ଠଭୂମି

ସାମନ୍ତବାଦର ନିରଙ୍କୁଶ ସ୍ୱୈରତନ୍ତ୍ରର ନିକଟରେ ଅସହାୟ ଜନସମାଜ ନୀରବରେ ମଥା ପାତି ଅକଥନୀୟ ଅତ୍ୟାଚାର ସହୁଥିଲାବେଳେ ରାଜା ମହାରାଜା ଜମିଦାର ଆଦି ଅଖଣ୍ଡ କ୍ଷମତାଶାଳୀ ସାମନ୍ତଗୋଷ୍ଠୀର ଛତ୍ରଚ୍ଛାୟାତଳେ ଅଭୟାଶ୍ରୟ ପାଇ ଧର୍ମଧ୍ୱଜୀ ବ୍ୟବସ୍ଥାଦାତା ଓ ପୁରୋହିତବର୍ଗ ସମେତ ସମଗ୍ର ବ୍ରାହ୍ମଣଜାତି ନିଜ ଉପବୀତ-ସୂତ୍ରରେ 'ଛତିଶ ପାଟକର ରାଜା' ଆଖ୍ୟାର ଗ୍ରନ୍ଥି ମାରି ଲକ୍ଷ ଲକ୍ଷ ନିରୀହ ନରନାରୀଙ୍କ ସାମାଜିକ ଜୀବନଧାରାଉପରେ ଏକ ସମାନ୍ତରାଳ ଧର୍ମୀୟ ଶାସନ ଚଳାଉ କରି ରଖିଥିଲେ । ସେହିମାନେହିଁ ଥିଲେ ଗ୍ରାମ୍ୟ ଜନତାର ହର୍ତ୍ତା କର୍ତ୍ତା ବିଧାତା—ସମାଜର ନିୟନ୍ତ୍ରକ, ଧର୍ମଢଙ୍କାର ମଙ୍ଗୁଆଳ । ଶାସ୍ତ୍ର-ସଂହିତାର ଦାହିରେ ସେମାନଙ୍କ ଶ୍ରୀତୁଣ୍ଡରୁ ଯେତେବେଳେ ଯାହା ନିର୍ଗତ ହେଉଥିଲା, ତାହାକୁ ବେଦବାକ୍ୟରୂପେ ଶିରୋଧାର୍ଯ୍ୟ କରିବା ଛଡ଼ା କାହାରି ଗତ୍ୟନ୍ତର ନ ଥିଲା । କେବଳ ଦ୍ୱିଜକୁଳଜଙ୍କ ବ୍ୟତୀତ ଅନ୍ୟାନ୍ୟ କୁଳଜାତ ବ୍ୟକ୍ତି ସଂସ୍କୃତପଠନର ଅଧିକାରୀ ନ ଥିଲେ—କାରଣ ସଂସ୍କୃତ ହେଲା 'ଦେବଭାଷା' ଅର୍ଥାତ୍ ସ୍ୱର୍ଗବାସୀ ଦେବତାମାନଙ୍କର ଭାଷା, ଆଉ ବ୍ରାହ୍ମଣମାନେ ହେଲେ 'ଭୂସୁର' ଅର୍ଥାତ୍ ମର୍ତ୍ତ୍ୟମଣ୍ଡଳର ଦେବତା; ଏପରି ସ୍ଥଳେ ଅନ୍ୟାନ୍ୟ ଜାତିର ଲୋକେ ସଂସ୍କୃତଶିକ୍ଷାର ବିଧିଗତ ଅଧିକାର ପାଇବାକୁ ହକ୍‌ଦାର ହେବେ କିପରି ? ତେଣୁ ଜ୍ଞାତସାରରେ ହେଉ ବା ଅଜ୍ଞାତସାରରେ ହେଉ, କଦବା କୌଣସି ବ୍ରାହ୍ମଣେତର-ତୁଣ୍ଡରୁ ପଦେ ଅଧେ ସଂସ୍କୃତ ବାହାରିପଡ଼ିଲେ ସେହି ହତଭାଗ୍ୟକୁ ତିରସ୍କାରବ୍ୟଞ୍ଜକ କଟୂକ୍ତି ମନ୍ତବ୍ୟହିଁ ପୁରସ୍କାର ମିଳୁଥିଲା—"ବାଉରି ମୁହଁରେ ବେଦ !" ମୋଟ ଉପରେ କହିବାକୁ ଗଲେ ଶାସ୍ତ୍ରୀୟ ବିଧିବିଧାନର ହିଦ୍‌ଦର୍ଶନଦାନ ଯାଜକୀୟ ବ୍ରାହ୍ମଣସଂପ୍ରଦାୟର

ଥିଲା ହସ୍ତମୁଦ୍ରିମାହାଳି—ରାଜା, ଜମିଦାର ଓ ପ୍ରତିପତ୍ତିସଂପନ୍ନ ବିଭବବନ୍ତ ଅଭିଜାତ ପ୍ରମୁଖମାନଙ୍କ ପୃଷ୍ଠପୋଷକତା ଓ ଆନୁକୂଲ୍ୟରୁ ସେମାନେ ହାସଲ କରିଥିଲେ ଏହି ଏକଚ୍ଛତ୍ରିଆ ଆଧିପତ୍ୟର ଅସତ୍ୟ ଅବାଧ କର୍ତ୍ତୃତ୍ୱ ।

ସମୁଦ୍ରଗାମୀ ନଦୀସ୍ରୋତ ପରି ଖରତର ବେଗରେ ଗଡ଼ି ଚାଲିଗଲା ସମୟର ମହାସ୍ରୋତ—ଯୁଗପରେ ଯୁଗ ପଛକୁ ପକାଇଦେଇ । ତଥାପି ଶାସ୍ତ୍ରବାକ୍ୟର ଅପପ୍ରୟୋଗକାରୀ ଦୁର୍ଦ୍ଦାନ୍ତ ଗ୍ରାମ୍ୟ ଗୋସ୍ୱାମୀମାନଙ୍କର ପ୍ରଚଣ୍ଡ ପ୍ରତାପ କ୍ଷୁଣ୍ଣ ରହିଲା ଊନବିଂଶ ଶତାବ୍ଦୀର ପ୍ରାୟ ଶେଷପର୍ଯ୍ୟନ୍ତ । ବରଂ ତଥାକଥିତ ଶାସ୍ତ୍ରପ୍ରବକ୍ତା ବନାମ ଶାସ୍ତ୍ରବ୍ୟବସାୟୀ ଏହି ଲୋକକଣ୍ଟକ ସମାଜ-ପଣ୍ଡାମାନଙ୍କର ଦେବଭାଷା-ଉଚ୍ଚାରଣ-ପାରଗତା ଅଜ୍ଞତା-ନିବନ୍ଧନ ଅନୁସ୍ୱାର-ବିସର୍ଗ-ସଂଯୋଗରେ କିଂଭୂତକିମାକାର ସ୍ତରକୁ ଅଧୋଗତ ହେଲା ଯିନା, କୃତ୍ରିମ ପାଣ୍ଡିତ୍ୟର ବାଗାଡ଼ମ୍ବରଦ୍ୱାରା ସହଜବିଶ୍ୱାସୀ ଜନସମାଜଉପରେ କର୍ତ୍ତୃତ୍ୱ ଜାହିର କରିବାର ସ୍ପର୍ଦ୍ଧା ବେଳକୁ ବେଳ ବଢ଼ିବାରେ ଲାଗିଲା ଘୃତଭୁକ୍ତ ଅଗ୍ନିଶିଖା ପରି ।

ମାତ୍ର ସୌଭାଗ୍ୟର କଥା, ଅଦୂରରୁ ବିଂଶ ଶତାବ୍ଦୀର ଅସ୍ପଷ୍ଟ ପଦଧ୍ୱନି ଶୁଣାଯିବା ସଙ୍ଗେ ସଙ୍ଗେ ତନ୍ଦ୍ରିତ ଜନମାନସରେ ମନ୍ଦ୍ରିତ ହୋଇଉଠିଲା ଯୁଗ-ଜାଗୃତିର ପାଞ୍ଚଜନ୍ୟ-ଘୋଷ—'ଉତ୍ତିଷ୍ଠତ, ଜାଗ୍ରତ, ପ୍ରାପ୍ୟବରାନ୍ ନିବୋଧତ' । ବସ୍ତୁତଃ ବିଂଶ ଶତାବ୍ଦୀଟି ବିପ୍ଳବର ଯୁଗରୂପେ ତଥା ଅଭ୍ୟୁତ୍‌ଥାନର ଆବାହକ-ରୂପେ ଭାରତ ଇତିହାସରେ ସ୍ୱର୍ଣ୍ଣାକ୍ଷରରଞ୍ଜିତ । ଭାରତର ଏକ ଅଙ୍ଗ ଆମର ଏ ଓଡ଼ିଶାପ୍ରତି ଶଂସିତ ଶତାବ୍ଦୀର ଦାନ ମଧ୍ୟ ଅବିସ୍ମରଣୀୟ । ବଙ୍ଗ ଆନ୍ଧ୍ର ଅନ୍ୟାନ୍ୟ ପ୍ରଦେଶ ଭଳି ଉତ୍କଳର ବିଭିନ୍ନ କ୍ଷେତ୍ରରେ ଅବତୀର୍ଣ୍ଣ ହେଲେ ଯୋଗଜନ୍ମା କେତେ ରଥୀ ମହାରଥୀ—ସାର୍ ବାସୁଦେବ ସୁଢ଼ଳଦେବ, ମହାରାଜା ଶ୍ରୀରାମଚନ୍ଦ୍ର, କର୍ମ-ଯୋଗୀ ଗୌରୀଶଙ୍କର, ଉତ୍କଳଗୌରବ ମଧୁସୂଦନ, ବ୍ୟାସକବି ଫକୀରମୋହନ, ଶୁଦ୍ଧାତ୍ମା ପ୍ୟାରୀମୋହନ, କବିଗୁରୁ ରାଧାନାଥ, ବ୍ରହ୍ମଜ୍ଞ ମଧୁସୂଦନ, ବାଗ୍ମୀ ବିଶ୍ୱନାଥ, ଉତ୍କଳମଣି ଗୋପବନ୍ଧୁ, ପଲ୍ଲୀକବି ନନ୍ଦକିଶୋର, ରଙ୍ଗରାଜ ପ୍ରହରାଜ ପ୍ରମୁଖ । ଏମାନଙ୍କ କୃତି ଓ କୃତିତ୍ୱର ଅଳିଭା ସ୍ୱାକ୍ଷର କାଳବକ୍ଷରେ ଏପର୍ଯ୍ୟନ୍ତ ଜାଜ୍ୱଲ୍ୟମାନ ରହିଛି ଏବଂ କାଳେ କାଳେ ରହିଥିବ ।

ସଂସ୍କାରକ ବିଶ୍ୱନାଥଙ୍କ ଜୀବନଦର୍ଶନ ପର୍ଯ୍ୟାଲୋଚନା କରିବାପୂର୍ବରୁ ତତ୍କାଳୀନ ଧର୍ମଜଗତର ପୃଷ୍ଠଭୂମି ସମ୍ବନ୍ଧରେ କିଞ୍ଚିତ୍ ଆଲୋକପାତ ପ୍ରୟୋଜନୀୟ

ଓ ପ୍ରାସଙ୍ଗିକ ମନେ ହୁଏ । ତାହାହେଲେ, ତାଙ୍କଭଳି ଜଣେ ଗୀତାଧ୍ୟାୟୀ କୁଳୀନ ବ୍ରାହ୍ମଣ-ସନ୍ତାନ 'ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହଃ'ର ତାତ୍ପର୍ଯ୍ୟ ବୁଝି ସୁଦ୍ଧା କାହିଁକି ପ୍ରଚଳିତ ଧର୍ମଧାରାପ୍ରତି ବିମୁଖ ହୋଇ ଧର୍ମାନ୍ତରପ୍ରତି ଆକୃଷ୍ଟ ହେଲେ, ତାହାର କାରଣ ସ୍ପଷ୍ଟ ହେବ ।

୧୭୭୪ ମସିହାରେ ବଙ୍ଗମାତା ଜନ୍ମ ଦେଇଥିଲା ନୂତନ ଆଲୋକର ବର୍ତ୍ତିକାଧାରୀ ମହାତ୍ମା ରାମମୋହନ ରାୟଙ୍କୁ । ସେତେବେଳେ ହିନ୍ଦୁଧର୍ମଜଗତର ଏକ ଘୋରସନ୍ଧି ବେଳ । ମେଧାବୀ ରାମମୋହନ ଷୋଳ ବର୍ଷ ବୟସମଧ୍ୟରେ ବଙ୍ଗଳା, ସଂସ୍କୃତ, ଇଂରାଜୀ, ଆରବୀ, ପାରସୀ, ଉର୍ଦ୍ଦୁ, ହିନ୍ଦୀ, ଫରାସୀ, ଗ୍ରୀକ୍, ଲାଟିନ୍ ଆଦି ବହୁ ଭାଷାରେ ବିଲକ୍ଷଣ ପାଣ୍ଡିତ୍ୟ ଅର୍ଜନ କରି ତତ୍ତତ୍ ଭାଷାରେ ଲିଖିତ ଧର୍ମଗ୍ରନ୍ଥରାଜି ଆଲୋଡ଼ନ କଲେ । ତଦ୍ଦ୍ୱାରା ବିଭିନ୍ନ ଧର୍ମର ସାରାସାର ଅବକଳନ ତାଙ୍କ ପକ୍ଷରେ ସହଜତର ହୋଇଉଠିଲା । ସେ ପୌତ୍ତଳିକତା ଓ ପୌରୋହିତ୍ୟବାଦର ଅସାରତା ଓ ସୁଦୂରପ୍ରସାରୀ କୁଫଳ ମର୍ମେ ମର୍ମେ ଉପଲବ୍ଧି କରି ଉକ୍ତ ପ୍ରଥା ବିରୁଦ୍ଧରେ ଦୃଢ଼ ସ୍ୱର ଉତ୍ତୋଳନ କଲେ ଏବଂ 'ହିନ୍ଦୁଙ୍କର ପୌତ୍ତଳିକ ଧର୍ମପ୍ରଣାଳୀ' ନାମକ ଏକ ମହାନ୍ ଗ୍ରନ୍ଥ ପ୍ରକାଶ କରି ଧର୍ମଶାସ୍ତ୍ରଜ୍ଞମାନଙ୍କ ଆଗରେ ସ୍ୱକୀୟ ଯୁଗାନ୍ତକାରୀ ଧର୍ମମତ ଉପସ୍ଥାପିତ କଲେ । ଏହାଫଳରେ ନ୍ୟସ୍ତସ୍ୱାର୍ଥ ପଣ୍ଡିତଗୋଷ୍ଠୀ ଭୀଷଣ ଉତ୍ତ୍ୟକ୍ତ ହୋଇଉଠିଲେ ଏବଂ ତାଙ୍କୁ ବେଦନିନ୍ଦକ, ଧର୍ମଦ୍ରୋହୀ ଓ ନାସ୍ତିକ ଆଖ୍ୟା ଦେଇ ନାନାଭାବରେ ନିର୍ଯ୍ୟାତିତ କରିବାକୁ ଲାଗିଲେ । ଏତେ ନିର୍ଯ୍ୟାତନା ସତ୍ତ୍ୱେ ଧର୍ମବିପ୍ଳବର ରକ୍ତପତାକାଧାରୀ ଅକୁତୋଭୟ ରାମମୋହନ ଗ୍ରାମେ ଗ୍ରାମେ, ନଗରେ ନଗରେ ବୁଲି ନିଜର ନୂତନ ଧର୍ମମତପ୍ରଚାରରେ ଅବିଶ୍ରାନ୍ତ ଲାଗିପଡ଼ିବା ସଙ୍ଗେ ସଙ୍ଗେ ସତୀଦାହ ଓ ନରବଳି ପ୍ରଥା ଭଳି ଜଘନ୍ୟ ନୃଶଂସ ଅମାନୁଷିକ କାର୍ଯ୍ୟର କଳଙ୍କ-କାଳିମାକୁ ସମାଜବକ୍ଷରୁ ନିଶ୍ଚିହ୍ନ କରିଦେବାପାଇଁ ବ୍ୟାପକ ଆନ୍ଦୋଳନ ଆରମ୍ଭ କରିଦେଲେ ।

କ୍ରମେ ତାଙ୍କ ନବଦ୍ୟୋତନାର ବାଣୀ, ଧୀରମନ୍ଥରଭାବରେ ହେଲେହେଁ, ଜନସାଧାରଣଙ୍କର ହୃଦୟ ସ୍ପର୍ଶ କଲା; ଅନେକଙ୍କର ସମର୍ଥନ ମଧ୍ୟ ପାଇଲା । ଯୁଗଧର୍ମୀ ରାମମୋହନ ଏହିରୂପେ ଧର୍ମସଂସ୍କାର କାର୍ଯ୍ୟରେ ଅବିରତ ବ୍ୟାପୃତ ରହି ଶେଷରେ ୧୮୨୭ ମସିହାରେ କଲିକତା ମହାନଗରୀର କମଳ ବସୁଙ୍କ ବାସଭବନରେ 'ବ୍ରାହ୍ମସଭା' ନାମକ ଏକ ଧର୍ମସଂସ୍ଥା ପ୍ରତିଷ୍ଠିତ କଲେ ।

ଦିନକୁ ଦିନ ସଂସ୍ଥାଟିର ଲୋକପ୍ରିୟତା ବଢ଼ିବାକୁ ଲାଗିଲା । ନବ୍ୟଶିକ୍ଷିତ ସୁଧୀ-ସମାଜର ଅଗଣିତ ନରନାରୀଙ୍କର ଏହା ହେଲା ପରମ ଆକର୍ଷଣ ଓ ଧର୍ମାଲୋଚନା କେନ୍ଦ୍ର । ବହୁଜନସମାଦୃତ ଏହି ବ୍ରାହ୍ମସଭାଟି ୧୮୨୯ ମସିହାରେ 'ବ୍ରାହ୍ମସମାଜ' ନାମ ଧାରଣ କଲା । ସେହି ଦିନରୁ ଦୂରଦ୍ରଷ୍ଟା ମହାତ୍ମା ରାମମୋହନ ରାୟ ବ୍ରାହ୍ମଧର୍ମର ପ୍ରବର୍ତ୍ତକରୂପେ ତଥା ନବଭାରତନିର୍ମାଣର ଭିତ୍ତିସ୍ଥାପୟିତାରୂପେ ଆଧୁନିକ ଯୁଗର ଚିରନମସ୍ୟ ହେଲେ ।

ଓଡ଼ିଶା ଏକ ଉପନିବେଶରୂପେ ସେତେବେଳେ ବଙ୍ଗ ସହିତ ଯୋଡ଼ା ହୋଇ ରହିଥାଏ । ପ୍ରାଥମିକ ଅବସ୍ଥାରେ ନବପ୍ରତିଷ୍ଠିତ ଏହି ଧର୍ମଟି ବଙ୍ଗ-ପରିସରରେ କେବଳ ପ୍ରସାରିତ ହେଉଥିଲା ସତ, ମାତ୍ର ଅନତିବିଳମ୍ବରେ ତାହା ବଙ୍ଗୀୟ ସୀମା ଅତିକ୍ରମ କରି ପ୍ରତିବେଶୀ ଉତ୍କଳଭୂମିରେ ପ୍ରବେଶ ଲାଭ କଲା । ଗୌରୀଶଙ୍କର ରାୟ, ଜଗମୋହନ ଲାହା ଓ ପ୍ରିଣ୍ଟିଂ କମ୍ପାନୀର ଜଣେ କର୍ମଚାରୀଙ୍କ ନେତୃତ୍ୱରେ ସଂସ୍କାରକାମୀ କେତେକ ଯୁଗଧର୍ମୀ ଯୁବକ ଉକ୍ତ ଧର୍ମ-ଗଙ୍ଗାର ସ୍ୱଚ୍ଛ ପ୍ରବାହକୁ ଭଗୀରଥପ୍ରାୟ ଶୁଭଶଙ୍ଖନାଦରେ ସ୍ୱାଗତ କରି ପୁରାଣପ୍ରଥିତ କଟକ-ନଗରୀକୁ ବାଟ କଢ଼ାଇ ଆଣିଲେ । ବଙ୍ଗୀୟ 'ଆଦି ବ୍ରାହ୍ମସମାଜ'ର ନେତା ମହର୍ଷି ଦେବେନ୍ଦ୍ରନାଥ ଠାକୁରଙ୍କ ସୋତ୍ସାହ ପ୍ରେରଣାରେ ନବଦୀକ୍ଷିତ ଯୁବଗୋଷ୍ଠୀଙ୍କ ଅଦମ୍ୟ ଉଦ୍ୟମର ଫଳସ୍ୱରୂପ କରାଳ 'ନଅଙ୍କ' ଦୁର୍ଭିକ୍ଷର ତିନି ବର୍ଷପରେ ଅର୍ଥାତ୍ ୧୮୬୯ ମସିହାରେ ଓଡ଼ିଆବଜାରର ପ୍ରଧାନ ପଥପାର୍ଶ୍ୱରେ ପ୍ରତିଷ୍ଠିତ ହେଲା "କଟକ ବ୍ରାହ୍ମସମାଜ" । ନବାଗନ୍ତୁକମାନଙ୍କ ସହଯୋଗରେ ଏହାର ସଭ୍ୟସଂଖ୍ୟା କ୍ରମେ ବୃଦ୍ଧିପ୍ରାପ୍ତ ହେବାକୁ ଲାଗିଲା । କିଛି ସମୟପରେ ଋଷିପ୍ରାଣ ଭକ୍ତକବି ମଧୁସୂଦନ ରାଓଙ୍କ ଉପରେ 'ସମାଜ'ର ପୁରୋଧା ଓ ମୁଖ୍ୟଚାଳକର ଦାୟିତ୍ୱ ଅର୍ପିତ ହେଲା । ଏହି ବ୍ରାହ୍ମସମାଜର ପ୍ରତିଷ୍ଠାସ୍ମୃତି ସେଇ ୧୮୬୯ ମସିହାରେ ପ୍ରତିଷ୍ଠିତ କଟକ ମ୍ୟୁନିସିପାଲିଟି, କେନ୍ଦ୍ରାପଡ଼ା ମ୍ୟୁନିସିପାଲିଟି ଓ କଟକ ନର୍ମାଲ୍ ସ୍କୁଲର ପ୍ରତିଷ୍ଠାସ୍ମୃତି ସହିତ, ପୁଣି ବିଶ୍ୱବରେଣ୍ୟ ମହାତ୍ମା ଗାନ୍ଧୀଙ୍କ ଜନ୍ମସ୍ମୃତି ସହିତ ଏକସୂତ୍ରରେ ଗ୍ରଥିତ । (ଅବଶ୍ୟ କଟକ ମ୍ୟୁନିସିପାଲିଟି ୧୮୭୬ରେ ବିଧିବଦ୍ଧଭାବରେ କାର୍ଯ୍ୟକାରୀ ହୋଇଥିଲା ।)



# ଉତ୍କଳର ରାମମୋହନ

ବ୍ରାହ୍ମଧର୍ମ-ପ୍ରତିଷ୍ଠାତା ରାମମୋହନ ରାୟଙ୍କ ଦେହାନ୍ତର ଠିକ୍ ଏକତ୍ରିଂଶତ୍ ବର୍ଷପରେ, କଟକ ଜିଲାର ସୁରୁପା 'ବିରୁପା' ତଟ-ଶିରୋଭୂଷା ଶିକ୍ଷାସଂସ୍କୃତିସଂପନ୍ନ ମୂଳବସନ୍ତ ଗ୍ରାମର ଏକ ଅଭିଜାତ ବ୍ରାହ୍ମଣ ପରିବାରରେ ୧୮୬୪ ମସିହା ଡିସେମ୍ବର ୨୪ ତାରିଖ ( ଗଜପତି ଦିବ୍ୟସିଂହ ଦେବଙ୍କ ୮ ଅଙ୍କ—ସନ ୧୨୭୨ ସାଲ ପୌଷ ଶୁକ୍ଳ ନବମୀ ) ଦିନ ଜନ୍ମ ପରିଗ୍ରହ କଲେ ବିଶ୍ୱନାଥ କର— 'ଉତ୍କଳର ରାମମୋହନ'। ପରଶୁପାଣି ପରଶୁରାମଙ୍କ ସଦୃଶ ଦୀପ୍ତଲଲାଟ ବିଶ୍ୱନାଥ ସତେ ଯେପରି ସଂସ୍କାରର ସୌରଶିଖା ଘେନି ଆବିର୍ଭୂତ ହୋଇଥିଲେ ବିଧାତାର ମଙ୍ଗଳ ନିର୍ଦ୍ଦେଶରେ। ମିତନିଷ୍ଠ ଜନକ ନାରାୟଣଚନ୍ଦ୍ରଙ୍କ ତେଜସ୍ୱିତା, ଦୟାଶୀଳା ଜନନୀ ବୈଦେହୀଙ୍କ କୋମଳତା ଓ ସ୍ନେହାର୍ଦ୍ର ହୃଦୟ ପିତୃବ୍ୟ ମାଧବଚନ୍ଦ୍ରଙ୍କ ସଦାପ୍ରସନ୍ନତା, ଏହି ତ୍ରିଗୁଣର ଏକତ୍ରୀଭୂତ ଉପାଦାନରେ ବିଶ୍ୱନାଥଙ୍କ ସ୍ୱଭାବ ଗଠିତ ହୋଇଉଠିଲା। ସେଥିପାଇଁ ତାଙ୍କର ଭବିଷ୍ୟତ୍ କର୍ମମୟ ଜୀବନ ଚାରିତ୍ରିକ ମହନୀୟତାରେ ପରିପୁଷ୍ଟ ହୋଇ ଜାତିକଲ୍ୟାଣକର ବହୁ ସାଧୁ ଉଦ୍ୟମରେ ଯଶସ୍ୱୀ ହୋଇପାରିଥିଲା।

ମୂଳବସନ୍ତ ବ୍ରାହ୍ମଣଗୋଷ୍ଠୀର ଆଭିଜାତ୍ୟ ଶ୍ରେଷ୍ଠତା ଓ ଶିକ୍ଷା-ସଂସ୍କୃତିଗତ ଐତିହ୍ୟ ଅତି ପୁରାତନ ଓ ଇତିହାସପ୍ରଥିତ। ଉତ୍କଳର ମହାରାଜା-ଗଜପତିବଂଶ ଭାରତର ବିଭିନ୍ନ ପ୍ରାନ୍ତରୁ ଭିନ୍ନ ଭିନ୍ନ ସଂଜ୍ଞାଧାରୀ ସମ୍ମାନାଢ୍ୟ ଜାତିଷ୍ଠ ବ୍ରାହ୍ମଣ ପରିବାରମାନଙ୍କୁ ସଂଗ୍ରହ କରି ଜଗନ୍ନାଥ-କୃପାପୂତ ପୁରୀ ଜିଲାର ଅଲଗା ଅଲଗା ସ୍ଥାନରେ ଏକପରେ ଏକ ଷୋଳଟି ଶାସନ ବସାଇବାପରେ ଶାସନ-ବସାଣର ପରିସମାପ୍ତି ଘୋଷଣା କରିଥିଲେ। ଏଗୁଡ଼ିକ 'ଷୋଳ ଶାସନ' ନାମରେ ଓ ତହିଁର ଅଧିବାସୀମାନେ 'ସାମନ୍ତ ବ୍ରାହ୍ମଣ' ନାମରେ ପରିଚିତ। ଏହି

ସାମନ୍ତମାନଙ୍କ ମଧ୍ୟରେ ଉଚ୍ଚ, ମଧ୍ୟ, ନିମ୍ନ ଭେଦରେ ବିବିଧ ସ୍ତର ବିଦ୍ୟମାନ । ବହୁ ବର୍ଷ ବ୍ୟାପିତ ହେଲାପରେ ଗଜପତି ପ୍ରତାପରୁଦ୍ର ଦେବ ଅନୁସଂଧାନରୁ ଜାଣିବାକୁ ପାଇଲେ ଯେ, ମହାରାଷ୍ଟ୍ରରେ ଏପରି ଏକ ଉଚ୍ଚ ଶ୍ରେଣୀୟ ବ୍ରାହ୍ମଣ ଅଛନ୍ତି, ଯେଉଁମାନେ କି କୋଳ-ଶାସିତ ସାମନ୍ତମାନଙ୍କ ମଧ୍ୟରୁ ସର୍ବୋଚ୍ଚ ସାମନ୍ତଙ୍କ ଅପେକ୍ଷା ଆହୁରି ଉଚ୍ଚାଭିଜାତ୍ୟସଂପନ୍ନ । ଏହାର ସତ୍ୟାସତ୍ୟ ଅବଗତ ହେବାପାଇଁ ପ୍ରତାପରୁଦ୍ର ମରହଟ୍ଟା ଶାସନକର୍ତ୍ତାଙ୍କ ପାଖକୁ ଚିଠାଉ ସହ ଦୂତ ପଠାଇଲେ ଏବଂ ସଂବାଦଟି ସତ୍ୟ ହୋଇଥିଲେ ଉତ୍କଳକୁ ତିନୋଟି କ୍ଷୁଦ୍ର ପରିବାର ଯୋଗାଇବାକୁ ଅନୁରୋଧ କଲେ । ସୁଖର କଥା, ଗଜପତିଙ୍କ ଆଶା ସଫଳ ହେଲା ଏବଂ ମରହଟ୍ଟା ଶାସକ 'କର' ଆଖ୍ୟାଧାରୀ ଯଜୁର୍ବେଦୀୟ ଯାସ୍କସଗୋତ୍ରୀୟ ଅଗ୍ନି-ହୋତ୍ରୀ ତିନୋଟି ବ୍ରାହ୍ମଣ-ପରିବାରଙ୍କୁ ଗୋଟିଏ ଗୋଟିଏ ହସ୍ତିପୃଷ୍ଠରେ ବସାଇ ପୁରୀକୁ ରମାନା କରିଦେଲେ । ଗଜପତିଙ୍କ ଅଶ୍ୱାରୋହୀ ଦୂତ ସେମାନଙ୍କୁ ବାଟ କଢ଼େଇ ଆଗେ ଆଗେ ଆସିଲା । ପ୍ରତାପରୁଦ୍ର ସେହି ତିନି ପରିବାରପାଇଁ ଉତ୍କଳ-ଗଙ୍ଗା 'ଚିତ୍ରୋତ୍ପଳା'(ମହାନଦୀ)ର ତନୁଜା(ଶାଖା) 'ବିରୂପା'-ନଦୀତଟରେ ନୂଆ ବସତିଟିଏ ସ୍ଥାପନ କରାଇଲେ । ଆଗେ ସମଗ୍ର ଭାରତରେ କେବଳ ମହାରାଷ୍ଟ୍ରରେ ଉକ୍ତ 'କର'ବଂଶୀମାନଙ୍କର ବସତି ଥିଲା । ଏବେ ଉତ୍କଳରେ କଟକ ଜିଲ୍ଲାର ଏହି ସ୍ଥାନରେ ସେହି ବଂଶର ପ୍ରଥମ(ମୂଳ) ବସତି ହେଲା । ଏହି କାରଣରୁ ଗଜପତି ପ୍ରତାପରୁଦ୍ର ବସତିଟିର ନାମ ରଖିଲେ 'ମୂଳବସତି' । କାଳକ୍ରମେ 'ମୂଳବସତି' ଶବ୍ଦଟି ଲୋକମୁଖରେ 'ମୂଳବସନ୍ତ'ରେ ପରିଣତ ହୋଇଯାଇଅଛି ।

ସେସମୟରେ ମୂଳବସନ୍ତର 'କର' ବଂଶ ମଧ୍ୟପ୍ରଦେଶ-ଅନ୍ତର୍ଗତ ସମ୍ବଲପୁର ଅଞ୍ଚଳ ସମେତ ଓଡ଼ିଶାର ଚବିଶ ଗଡ଼ଜାତରେ 'ଗୁରୁ'ବଂଶରୂପେ ଆଖ୍ୟାତ ଥିଲା । କାରଣ ସଂସ୍କୃତ ଓ ଓଡ଼ିଆ ଭାଷାରେ ପୂର୍ଣ୍ଣାବଗାହୀ ଏହି 'କର'-ବଂଶୀୟମାନେହିଁ ଅସୀମ ସାହସର ସହିତ ପଦବ୍ରଜରେ ବନପର୍ବତବେଷ୍ଟିତ ସେସମସ୍ତ ଦୁର୍ଗମ ପ୍ରାନ୍ତକୁ ଯାଇ ସେଠାରେ ସର୍ବପ୍ରଥମେ ଶିକ୍ଷାର ପ୍ରଦୀପ ଜାଳିଥିଲେ । ସେହି 'କର' ବଂଶରେ ଜାତ ଖଗେଶ୍ୱର କରଙ୍କର ଥିଲେ ଦୁଇଟି ପୁତ୍ର—ନାରାୟଣଚନ୍ଦ୍ର, ମାଧବଚନ୍ଦ୍ର । ଖଗେଶ୍ୱରଙ୍କର କେତେକ ଭ୍ରାତୃଷ୍ପୁତ୍ର ମଧ୍ୟ ଥିଲେ । ଏହି ବିଶାଳ ପରିବାରର ପ୍ରଥମ ପୁତ୍ରସନ୍ତାନରୂପେ ଜନ୍ମ ଲାଭ କରିଥିଲେ ବିଶ୍ୱନାଥ । ନାରାୟଣଚନ୍ଦ୍ର ପ୍ରାଚୀନ ଓଡ଼ିଶୀ ଶୈଳୀରେ ଶିକ୍ଷାପ୍ରାପ୍ତ । ସୁକଣ୍ଠରେ ଗୀତଗାୟନ ଓ ପୁରାଣବ୍ୟାଖ୍ୟାନଦ୍ୱାରା ଶ୍ରୋତୃମଣ୍ଡଳୀଙ୍କୁ ମୁଗ୍ଧକରଣ—ଏ ଥିଲା

ତାଙ୍କର ବିଶେଷ ଗୁଣ । ପୁଣି ସେ ଥିଲେ ଶାସ୍ତ୍ରାଦିଚର୍ଚ୍ଚାରେ ସାତିଶୟ ପାରଦର୍ଶୀ ଓ ତା ସଙ୍ଗେ ସଙ୍ଗେ ଆଦର୍ଶ ଗୃହସଂସାର-ଗ୍ରାଳକ । ସତ୍ୟପ୍ରିୟତା, ନ୍ୟାୟପରତା, ସଦ୍‌ବ୍ରାହ୍ମଣୋଚିତ ବୈଦିକ ବିଧିବିଧାନନିଷ୍ଠା, ସାମାଜିକ ଶୃଙ୍ଖଳାରକ୍ଷା ପ୍ରଭୃତିରେ ମଧ୍ୟ ସମସ୍ତ ଗ୍ରାମାଞ୍ଚଳରେ ତୁଙ୍ଗସ୍ଥାନୀୟ । ବିଶ୍ୱନାଥଙ୍କ ଜନନୀ ବୈଦେହୀ ଦେବୀ ସାକ୍ଷାତ୍ ମୂର୍ତ୍ତିମତୀ ଦୟାସ୍ୱରୂପିଣୀ । ଅନ୍ୟର ଦୁଃଖ-ଯାତନାରେ ତାଙ୍କର କୋମଳ ହୃଦୟ କରୁଣାରେ ଦ୍ରବୀଭୂତ ହୋଇଯାଉଥିଲା । ଅତିରିକ୍ତ ମୁକ୍ତହସ୍ତତା ଯୋଗୁଁ ପରିବାରଲୋକଙ୍କଠୁଁ ବେଳେବେଳେ ଭର୍ତ୍ସନା ଭୋଗୁଥିଲେହେଁ ସେ କାହାରି ଅଭାବ ଅସୁବିଧା ଦେଖିଲେ ଯଥାଶକ୍ତି ତାହା ଦୂର ନ କରି ରହିପାରୁ ନ ଥିଲେ ।

ପିତୃବ୍ୟ ମାଧବଚନ୍ଦ୍ର ବିହାରର ଏକ ନର୍ମାଲ୍ ସ୍କୁଲରୁ ଉତ୍ତୀର୍ଣ୍ଣ ହୋଇ ଆଜୀବନ ସମ୍ବଲପୁର ଜିଲ୍ଲାର ବରଗଡ଼-ବରପାଲି ଅଞ୍ଚଳରେ ଶିକ୍ଷକତା କରୁଥିଲେ । 'ସ୍ୱଭାବକବି' ପଦବୀର ଗୌରବମୁକୁଟଧାରୀ ଗଙ୍ଗାଧର ମେହେରଙ୍କର ସେ ଥିଲେ ବାଲ୍ୟଶିକ୍ଷକ । ତାଙ୍କରି ନିର୍ଦ୍ଦେଶରେ ବରପାଲି ସ୍କୁଲର ଶିକ୍ଷକ ଘନଶ୍ୟାମ ମିଶ୍ର (ମୂଳବସନ୍ତ ସୀମାନ୍ତବର୍ତ୍ତୀ ଉତ୍ତରସାହିର ଅଧିବାସୀ) ଗ୍ରୀବ ଗଙ୍ଗାଧରଙ୍କର କବିତ୍ୱଶକ୍ତିକୁ ବିକଶିତ କରାଇବାରେ ଯଥେଷ୍ଟ ସାହାଯ୍ୟ କରିଥିଲେ ।

ସମ୍ବଲପୁର ସେତେବେଳେ ହିନ୍ଦୀଭାଷୀ ମଧ୍ୟପ୍ରଦେଶରେ ସାମିଲ ଥିଲା । ସେ ଅଞ୍ଚଳକୁ ତ ରେଳରାସ୍ତା ଫିଟି ନ ଥାଏ; ତେଣୁ ପୁରୁଷୋତ୍ତମ କର, ନୀଳକଣ୍ଠ କର ପ୍ରଭୃତି କେତେ ଜଣ ସହଗ୍ରାମୀଙ୍କ ସଙ୍ଗେ ମାଧବଚନ୍ଦ୍ର ଘୋର ଅରଣ୍ୟ-ମଧ୍ୟରେ ଚାଲି ଚାଲି ଯାଇ ଉକ୍ତ ଅଞ୍ଚଳରେ ପ୍ରଥମେ ଓଡ଼ିଆ ଭାଷାରେ ଶିକ୍ଷା ଦେବାକୁ ଆରମ୍ଭ କରିଥିଲେ । ସେହି କେତେ ଜଣଙ୍କ ନିଷ୍ଠାପର ଉଦ୍ୟମଫଳରେ ଇଂରେଜ ସରକାର ସେଠାରେ ପରିଲେ କେତେକ ସ୍କୁଲ ସ୍ଥାପନ କଲେ । ମାଧବଚନ୍ଦ୍ରଙ୍କ ଆଦର୍ଶ ଶିକ୍ଷକତାର ଖ୍ୟାତି ଏବେ ମଧ୍ୟ ସେଠାକାର ଜନମୁଖରେ ଉଦ୍‌ଘୋଷିତ । ତାଙ୍କର କର୍ତ୍ତବ୍ୟପରାୟଣତା ଓ ଗ୍ରୀବବତ୍ସଳତାର ପ୍ରତିଷ୍ଠା କ୍ରମେ ଉଚ୍ଚପଦାଧିଷ୍ଠିତ ରାଜପୁରୁଷମାନଙ୍କର ଦୃଷ୍ଟି ଆକର୍ଷଣ କଲା । ସମ୍ବଲପୁରର ଗୁଣଗ୍ରାହୀ ଡେପୁଟି କମିସନର୍ ସାହେବ ଏକ ରାଜକୀୟ ଦରବାରରେ ମାଧବଚନ୍ଦ୍ରଙ୍କ ଶିକ୍ଷକଜୀବନର ପ୍ରଭାବବନ୍ତ କୃତିତ୍ୱ ଓ ଅଭିନନ୍ଦନୀୟ ଗୁଣାବଳୀ ବର୍ଣ୍ଣନା କରି ମହାମାନ୍ୟ ଇଂରେଜ ସରକାରଙ୍କ ପକ୍ଷରୁ ତାଙ୍କୁ ସମ୍ମାନସୂଚକ ଉପାଧି ସହ ଗୋଟିଏ ସ୍ୱର୍ଣ୍ଣପଦକ ଉପହାର ଦେଇଥିଲେ ।

ମାଧବଚନ୍ଦ୍ର ବହୁ ଦିନଯାଏ ନିଃସନ୍ତାନ ରହିବାପରେ ଅଗ୍ରଜ ନାରାୟଣ-ଚନ୍ଦ୍ରଙ୍କ ତୃତୀୟ ପୁତ୍ର ଭୋଳାନାଥଙ୍କୁ ପୋଷ୍ୟପୁତ୍ରରୂପେ ଗ୍ରହଣ କରିଥିଲେ; ମାତ୍ର ତାଙ୍କ ହୃଦୟ-ଭଣ୍ଡାରର ଅତୁଳ ସ୍ନେହ ଅତିମାତ୍ରାରେ ଅଜାଡ଼ି ହୋଇପଡ଼ୁଥିଲା ବିଶ୍ୱନାଥଙ୍କ ଉପରେ । ଜ୍ୟେଷ୍ଠପୁତ୍ର କୁଳର କାରେଣି ବୋଲି ବିଶ୍ୱନାଥଙ୍କୁ ସେ ପୋଷ୍ୟପୁତ୍ରରୂପେ ପାଇପାରି ନ ଥିଲେ । ଉତ୍ତର ବୟସରେ ମାଧବଚନ୍ଦ୍ରଙ୍କ ପତ୍ନୀ 'ରାଧା'ଙ୍କ ଗର୍ଭରୁ ରାମଚନ୍ଦ୍ର ଓ ଲକ୍ଷ୍ମଣ ଦୁଇ ପୁତ୍ର ସଂଭୂତ ହୋଇଥିଲେ । ରାମଚନ୍ଦ୍ରଙ୍କର ଜନ୍ମ ୨୦. ୮. ୧୮୯୮ (୧୩୦୬ ସାଲର ଭାଦ୍ର ଶୁକ୍ଳ ନବମୀ) ଦିନ ଓ ଲକ୍ଷ୍ମଣଙ୍କର ୧୩. ୬. ୧୯୦୪ (୧୩୧୨ ସାଲର ଜ୍ୟୈଷ୍ଠ ଶୁକ୍ଳ ଦ୍ୱିତୀୟା) ଦିନ । ତଥାପି ମାଧବଚନ୍ଦ୍ରଙ୍କ ଅକୃତ୍ରିମ ବତ୍ସଳ ହୃଦୟ ବୟସ୍କ ବିଶ୍ୱନାଥଙ୍କୁହିଁ ପୂର୍ବପରି ସ୍ନେହବର୍ଷଣରେ ବୁଡ଼ାଇରଖିଥିଲା ।

ଅସାଧାରଣ ସୁକୃତର ପରିପାକରେ ଲୋକ ଏଭଳି ଜନକ-ଜନନୀ ଓ ପିତୃକଳ୍ପ ପିତୃବ୍ୟ ଲାଭ କରେ । ବିଶ୍ୱନାଥ ସତ୍ୟ ସତ୍ୟରେ ଏହିପରି ଜଣେ ନିଷ୍କଳୁଷ ନିଷ୍କଳଙ୍କ ଭାଗ୍ୟଧର ସନ୍ତାନ ।



# ଶିକ୍ଷାଜୀବନ

## ପାଠଶାଳା ଏବଂ ସଂସ୍କୃତ ଟୋଲ୍ ଓ ଚତୁଷ୍ପାଠୀରେ

ପ୍ରାଥମିକ ଶିକ୍ଷାପାଇଁ ତଥା ସଂସ୍କୃତ ସାହିତ୍ୟରେ ପାଣ୍ଡିତ୍ୟ ଅର୍ଜନପାଇଁ ବିଶ୍ୱନାଥଙ୍କ ସମ୍ମୁଖରେ ଶିକ୍ଷାପୀଠର ଦ୍ୱାର ମୁକ୍ତ ଥିଲା । ତାଙ୍କର ଶୈଶବଗୁରୁ ବା ପ୍ରଥମ ଗୁରୁ ହୋଇଥିଲେ ମୂଳବସନ୍ତ ଗ୍ରାମବାସୀ ଗୋବିନ୍ଦ ଅବଧାନ । ସେକାଳରେ ସଂସ୍କୃତହିଁ ଉଚ୍ଚଶିକ୍ଷାରୂପେ ପରିଗଣିତ ହେଉଥିଲା; ତେଣୁ ଗୋବିନ୍ଦ ଅବଧାନଙ୍କ ପାଖରେ ପାଠଶାଳା-ଶିକ୍ଷା ସମାପ୍ତ କଲାପରେ ବିଶ୍ୱନାଥ ସ୍ୱଗ୍ରାମର ସଂସ୍କୃତ ଟୋଲ୍‌ରେ ସ୍ୱନାମଧନ୍ୟ ପଣ୍ଡିତ ବ୍ରଜବନ୍ଧୁ କରଙ୍କ ନିକଟରେ ସଂସ୍କୃତ ଶିକ୍ଷା ଆରମ୍ଭ କରି ବ୍ୟାକରଣର ସାଧାରଣ ଜ୍ଞାନ ଅର୍ଜନ କଲେ । ମାତ୍ର ଅଧିକ ସଂସ୍କୃତ ପଢ଼ିବାପାଇଁ ପ୍ରବଳ ଆଗ୍ରହ ଜନ୍ମିବାରୁ ସେ ସନ୍ନିହିତ ଘଟକୁଣ୍ଡ ଗ୍ରାମର ପ୍ରସିଦ୍ଧ ସଂସ୍କୃତ ଚତୁଷ୍ପାଠୀରେ ନିୟମିତ ଛାତ୍ରରୂପେ ଯୋଗ ଦେଲେ । ସେଠାରେ ବ୍ୟାକରଣ ଶାସ୍ତ୍ରର ପରିପୂର୍ଣ୍ଣ ଜ୍ଞାନ ଆୟତ୍ତ କଲେ ମଧ୍ୟ ବାଳବିପ୍ରଙ୍କ ଜ୍ଞାନ-ପିପାସାରେ ନିବୃତ୍ତି ଆସିଲା ନାହିଁ । ପରେ ପରେ ସେ ଆଉ କେତେ ବର୍ଷ ସେହି ଚତୁଷ୍ପାଠୀରେ ଅଧ୍ୟୟନ କରି କାବ୍ୟ ଓ ଅଳଂକାର ଶାସ୍ତ୍ରରେ ପ୍ରଭୂତ ବ୍ୟୁତ୍ପତ୍ତି ଲାଭ କଲେ । ତାଙ୍କର କୁଶାଗ୍ରତୀକ୍ଷ୍ଣ ଧୀ, ସ୍ମୃତିପ୍ରାଖର୍ଯ୍ୟ ଏବଂ ଦୁରୂହ ବିଷୟାବଳୀର ଆଶୁ-ଗ୍ରହଣ ତଥା ଆତ୍ମସ୍ଥକରଣ ଶକ୍ତି ଦେଖି ତତ୍ରତ୍ୟ ଆଚାର୍ଯ୍ୟଗଣ ମୁଗ୍ଧଚକିତ ହୋଇଯାଉଥିଲେ । ବାଲ୍ୟବୟସ ଅତିକ୍ରାନ୍ତ ହେବାର ଯଥେଷ୍ଟ ପୂର୍ବରୁ ବିଶ୍ୱନାଥ ଯେ ସଂସ୍କୃତରେ ଏତେ ଦକ୍ଷତା ହାସଲ କରିଥିଲେ, ଏହା ଏବର ଲୋକଙ୍କୁ ନିଶ୍ଚୟ ଅସମ୍ଭବ ମନେ ହେବ; କିନ୍ତୁ ସେହି କାଳପର୍ଯ୍ୟନ୍ତ ସଂସ୍କୃତାଭ୍ୟାସ ଓ ସାଂସ୍କୃତିକ ପରିକାଷ୍ଠାର ପରଂପରା ଅଧିକାଂଶ ଉଚ୍ଚବ୍ରାହ୍ମଣ-ଶାସନରେ ଜୀବନ୍ତ ରହିଥିବାରୁ ବିଶ୍ୱନାଥଙ୍କ ପକ୍ଷରେ ଏହା ସମ୍ଭବ ହୋଇପାରିଥିଲା ।

ଏହି ଅଗାଧ ସଂସ୍କୃତଜ୍ଞାନହିଁ ତାଙ୍କ ସାରସ୍ୱତ ପ୍ରତିଭାର ଦ୍ରୁତ ପ୍ରତିଷ୍ଠା-ପାଇଁ ଓ ସାହିତ୍ୟିକ ଗୁରୁର ଆସନପ୍ରସ୍ତୁତିପାଇଁ ପର୍ଯ୍ୟାପ୍ତ ଖୋରାକ ଯୋଗାଇ-ଦେଇଥିଲା । ତା ନ ହୋଇଥିଲେ ପରବର୍ତ୍ତୀ କାଳରେ ସେ ନବଯୁଗୀୟ ଓଡ଼ିଆ ଭାଷାରେ ଶୁଦ୍ଧ ମାର୍ଜିତ ବଳିଷ୍ଠ ଗଦ୍ୟଶୈଳୀର ପ୍ରବର୍ତ୍ତନଦ୍ୱାରା ସାହିତ୍ୟ-ରାଜ୍ୟରେ ଯୁଗାନ୍ତର ଆଣି ତାହାର ଦିକ୍‌ପାଳ ତଥା ମାର୍ଗନିର୍ଦ୍ଦେଶକ ଓ ନିୟାମକ ହେବାର ଯୋଗ୍ୟତା ଅର୍ଜନ କରିପାରି ନ ଥାନ୍ତେ, କି ଅନର୍ଗଳ ବକ୍ତା, ସାଧୁ ସମାଲୋଚକ ଓ ପ୍ରଚଣ୍ଡ ଲେଖନୀଧର ହୋଇପାରି ନ ଥାନ୍ତେ ।

## ମଧ୍ୟଇଂରାଜୀ ବିଦ୍ୟାଳୟରେ

ସଂସ୍କୃତ ଶିକ୍ଷା ସାଙ୍ଗ ହେବା ସଙ୍ଗେ ସଙ୍ଗେ ବିଶ୍ୱନାଥ ବିରୂପାର ଅପର ପାର୍ଶ୍ୱବର୍ତ୍ତୀ କୁଆଁପାଳ ଗ୍ରାମର ମଧ୍ୟଇଂରାଜୀ ବିଦ୍ୟାଳୟରେ ନାମ ଲେଖାଇ ଆଧୁନିକ ସ୍କୁଲଶିକ୍ଷାର ଶୁଭାରମ୍ଭ କଲେ । କୁଆଁପାଳ ମୂଳବସନ୍ତଠାରୁ ସାମାନ୍ୟମାତ୍ର ଦୂର—ନଈଟି ଯାହା ପାରି ହେବାକୁ ପଡ଼େ । ସଂସ୍କୃତଜ୍ଞାନାର୍ଜନର ମୋହରେ ଅଧିକ କାଳ ବିତିଯାଇଥିବାରୁ କୁଆଁପାଳ ସ୍କୁଲର ସହାଧ୍ୟାୟୀମାନଙ୍କ ତୁଳନାରେ ବିଶ୍ୱନାଥଙ୍କ ବୟସ ବେଶ୍ ଟିକିଏ ବୁଢ଼ୀଯାଇଥାଏ ସିନା, ଏହି ବୟସାଧିକ୍ୟଜନିତ ନୈତିକ ଚେତନା କିନ୍ତୁ ତାଙ୍କ ଭାବୀ ସଂସ୍କାରକ ଜୀବନର ପୁଟଦ୍ୱାରକୁ ଏହିଠାରେ ଉନ୍ମୋଚିତ କରିଦେଲା ।

**ତରୁଣ ପ୍ରାଣରେ ଧର୍ମୀୟ ପ୍ରତିକ୍ରିୟା**—କୁଆଁପାଳ ମୁଖ୍ୟତଃ ବଙ୍ଗାଳୀ ସଂପ୍ରଦାୟ-ଅଧ୍ୟୁଷିତ, ଭଦ୍ରପରିବାରବହୁଳ ଏକ ସମୃଦ୍ଧିମନ୍ତ ଗ୍ରାମ ସେତେବେଳେ । ବିଖ୍ୟାତ ଜମିଦାର ଧନ-କୁବେର ଗୋଲୋକପ୍ରସାଦ ରାୟଙ୍କର ମଧ୍ୟ ତାହା ଆବାସସ୍ଥଳୀ । ଅଧିବାସୀମାନେ ଥିଲେ ଚରମ ବିଳାସବ୍ୟସନପ୍ରିୟ ଓ ବେପରବାୟ-ବ୍ୟୟୀ । ବାରମାସି ଚାଲିଥାଏ ନାନାପ୍ରକାର ମେଳା-ମଉଛବ, ଦେବାଦେବୀ ପୂଜା-ଉତ୍ସବ, ଯାତ୍ରା, ପାଲା, ଥିଏଟର, ଗାନବାଜଣ, ବାଈନୃତ୍ୟ, ଏହିପରି କେତେ କଣ । ଏସମସ୍ତ ଅନର୍ଥକ ଭୋଗବିଳାସିତାରେ ଧନାଢ଼୍ୟମାନୀ ଲୋକମାନଙ୍କର ଅମାପ ଅର୍ଥ ପାଣି ପରି ବୋହିଯାଉଥିଲା ।

ଆଡ଼ମ୍ବରସର୍ବସ୍ୱ ଏହିସବୁ କ୍ରିୟାକଳାପରେ ବିବେକକୁ ସଂପୂର୍ଣ୍ଣ ବଳି ଦିଆଯାଇଥାଏ । ଦେବପୂଜାଦି ଧର୍ମାନୁଷ୍ଠାନରେ ସାତ୍ତ୍ୱିକତାର ସତ୍ତା ସୁଦ୍ଧା ନ ଥିଲା—ଥିଲା କେବଳ ଉନ୍ମତ୍ତ ତାମସିକତା, ଧର୍ମ ନାମରେ ବୀଭତ୍ସ ବ୍ୟଭିଚାର,

ଜଘନ୍ୟ ଭ୍ରଷ୍ଟାଗ୍ୱର । ସଂକ୍ରାମକ ବ୍ୟାଧିଭଳି ଏହି କଳୁଷିତ ମନୋବୃତ୍ତି ଓ ନାନା ଅନ୍ୟାୟ-ଅନୀତି, ଦୁରାଗ୍ୱର-ଦୁର୍ନୀତି ଗ୍ରାମୁଁ ଗ୍ରାମାନ୍ତର ମାଡ଼ିଗ୍ୱଲିଥାଏ ଅନାହତ ଗତିରେ । ଅନୁଗୃହୀତ ବ୍ରାହ୍ମଣ, ପଣ୍ଡିତ ଓ ପୁରୋହିତମାନଙ୍କ ପ୍ରତ୍ୟକ୍ଷ ସହାୟତାରେ ଉଦ୍ଧତ ଧନକଦଳ ନିଜର ପ୍ରାଧାନ୍ୟ-ପ୍ରତିଷ୍ଠା ଅଧିକରୁ ଅଧିକ ବଢ଼ାଇ ସମାଜକୁ ସର୍ବସ୍ୱାନ୍ତ ଓ ଅନ୍ତଃସାରଶୂନ୍ୟ କରିବାରେ ଲାଗିପଡ଼ିଥାନ୍ତି ।

ତରୁଣ ବିଶ୍ୱନାଥଙ୍କ ପ୍ରଗତିପ୍ରିୟାଶୀଳ ପ୍ରାଣରେ ବିଦ୍ରୋହର ଦାବାଗ୍ନି ଜଳିଉଠିଲା । ପ୍ରଚଳିତ ଗ୍ୱଳିର ଲୌକିକ ଧର୍ମପ୍ରତି ବୀତସ୍ପୃହତା ଆସିଲା । କେବେ ସୁଯୋଗର ଦିନ ଆସିବ, ଅବୈଧ ଲୋକାଗ୍ୱରଭରା ଏହି ଧର୍ମର ଦୂଷିତ ପରିବେଶରୁ ମୁକ୍ତ ହେବେ, ଅଶାନ୍ତ ସମାଜର ନିଗଡ଼-ବନ୍ଧନ ଛିନ୍ନ କରି ଶାନ୍ତିର ନିଃଶ୍ୱାସ ମାରିବେ, ସେହି ଅମୃତ ଲଗ୍ନକୁ ବ୍ୟାକୁଳ ହୃଦୟରେ ଅପେକ୍ଷା କରି ରହିଲେ ସେ ।

**ବାଲ୍ୟବୟସରେ ବିବାହ**—କୁଆଁପାଳରେ ସ୍କୁଲଶିକ୍ଷା ଆରମ୍ଭ କଲାବେଳକୁ ବିଶ୍ୱନାଥଙ୍କର ବୟସ ବୋଧହୁଏ ୧୧ ପୂରି ୧୨ ଗ୍ୱଲିଥାଏ । ସେକାଳର ହିନ୍ଦୁ ସମାଜରେ, ବିଶେଷତଃ ବ୍ରାହ୍ମଣ ଜାତିରେ ବାଲ୍ୟବିବାହ ପ୍ରଥା ଖୁବ୍ କଡ଼ାକଡ଼ିଭାବରେ ପାଳିତ ହେଉଥାଏ । ଅନ୍ୟାନ୍ୟ ଜାତିରେ ମଧ୍ୟ 'ଅରକ୍ଷଣୀୟା' କନ୍ୟା ପ୍ରାୟ କେଉଁଠି ଦେଖାଯାଉ ନ ଥିଲେ । ତେଣୁ ସେହି ବାର ବର୍ଷ ବୟସରେ (ଏବର ହରିଦାସପୁର ରେଳଷ୍ଟେସନ ନିକଟବର୍ତ୍ତୀ) କଞ୍ଚିଆ ବ୍ରାହ୍ମଣ ଶାସନର ଏକ ଧନାଢ଼୍ୟ ପରିବାରର ଅଷ୍ଟମବର୍ଷୀୟା କନ୍ୟା ସୁଶ୍ରୀ 'ଜାନକୀ' ସହିତ ତାଙ୍କର ପରିଣୟ ଯଥାବିଧି ସଂପାଦିତ ହୋଇଥିଲା । ଏହା ୧୮୭୭ ମସିହାର କଥା ।

## କଟକ ପ୍ୟାରୀମୋହନ ଏକାଡେ଼ମୀରେ

କୁଆଁପାଳ ମଧ୍ୟଇଂରାଜୀ ବିଦ୍ୟାଳୟର ନବ୍ୟଶିକ୍ଷାପ୍ରତି ବିଶ୍ୱନାଥଙ୍କର ଯେତିକି ଆକର୍ଷଣ ବଢ଼ିଲା, କୁଆଁପାଳ ଓ ତାର ପାରିପାର୍ଶ୍ୱିକ ଅଞ୍ଚଳର ବେଦଧର୍ମବିରୋଧୀ କ୍ରିୟାକର୍ମପ୍ରତି ତତୋଽଧିକ ବିକର୍ଷଣ ଘଟିଲା । ଯାହାହେଉ, ସେଠାର ଶିକ୍ଷା ସମାପ୍ତ କରି ସେ ଉଚ୍ଚଶିକ୍ଷାଲାଭ ଉଦ୍ଦେଶ୍ୟରେ ୧୮୮୨ ମସିହାର ପ୍ରାରମ୍ଭରେ କଟକ ଆସି ପ୍ୟାରୀମୋହନ ଏକାଡେ଼ମୀରେ ନାମ ଲେଖାଇଲେ । ସେତେବେଳକୁ ଠିକ୍ ୧୮ ବର୍ଷରେ ତାଙ୍କର ପଦାର୍ପଣ ।

ଏହି ଉଚ୍ଚଇଂରାଜୀ ବିଦ୍ୟାଳୟର ପ୍ରତିଷ୍ଠାତା ପୁଣ୍ୟାତ୍ମା ପ୍ୟାରୀମୋହନ ଆଚାର୍ଯ୍ୟଙ୍କର କେତୋଟିମାତ୍ର ଦିନପୂର୍ବରୁ ଅର୍ଥାତ୍ ୧୮୮୧ ଡିସେମ୍ବର ୨୮ ତାରିଖରେ ତିରୋଧାନ ଘଟିଯାଇଥାଏ । ଲୋକପ୍ରିୟ ପ୍ୟାରୀମୋହନଙ୍କୁ ଦେଖିବାର ସୌଭାଗ୍ୟରୁ ବଞ୍ଚିତ ହୋଇଥିଲେହେଁ ମୁଖେ ମୁଖେ କୀର୍ତ୍ତିତ ତାଙ୍କର ଜନକଲ୍ୟାଣ, ସତ୍ୟନିଷ୍ଠା, ସାଧୁତା, ତ୍ୟାଗ, ଔଦାର୍ଯ୍ୟ, ସତ୍‌ସାହସ ଓ ନିର୍ଭୀକ ଆଭିମୁଖ୍ୟ ପ୍ରଭୃତି ଗୁଣ ବିଶ୍ୱନାଥଙ୍କ ଜୀବନଉପରେ ଅଖଣ୍ଡ ପ୍ରଭାବ ବିସ୍ତାର କଲା ।

**ପ୍ୟାରୀମୋହନଙ୍କ ପରିଚୟ**—ସାଧାରଣ ପାଠକପାଠିକାଙ୍କ ଅବଗତିପାଇଁ ଏଠାରେ ପ୍ୟାରୀମୋହନଙ୍କ ପରିଚୟ ଓ ତାଙ୍କ ସ୍ଥାପିତ ହାଇସ୍କୁଲଟି ସମ୍ବନ୍ଧରେ ସଂକ୍ଷିପ୍ତ ଉଲ୍ଲେଖ କରାଯାଉଛି । କୁଆଁପାଳର ଅଦୂରବର୍ତ୍ତୀ କ୍ଷୀଣାଙ୍ଗୀ ଗୋବରୀ ନଦୀତଟସ୍ଥ ପଶ୍ଚିଲୁଣ୍ଡା ଗ୍ରାମରେ ପ୍ୟାରୀମୋହନ ୧୮୫୧ ମସିହାର ଶ୍ରାବଣ ମାସରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ଭୁବନ-ମୋହନ ଆଚାର୍ଯ୍ୟ କଟକ ଅଦାଲତରେ ଓକିଲାତି କରୁଥିଲେ । ପ୍ୟାରୀମୋହନ ଏଣ୍ଟ୍ରାନ୍‌ସ୍ ପଢୁଥିବାବେଳେ ସହାଧ୍ୟାୟୀ ମଧୁସୂଦନ ରାଓଙ୍କ ସହିତ ପ୍ରଗାଢ଼ ବନ୍ଧୁତ୍ୱ ସ୍ଥାପନ କରିଥିଲେ । ହରନାଥ ଭଟ୍ଟାଚାର୍ଯ୍ୟଙ୍କ ପ୍ରେରଣାରେ ଦୁଇ ବନ୍ଧୁ ଏକସଙ୍ଗେ ବ୍ରାହ୍ମଧର୍ମରେ ଦୀକ୍ଷିତ ହେଲେ ।

ଏହି ଛାତ୍ରାବସ୍ଥାରୁ ପ୍ୟାରୀମୋହନ 'ଉତ୍କଳଦୀପିକା' ସାପ୍ତାହିକ ପତ୍ରିକାର ନିୟମିତ ଲେଖକ ହୋଇ ଓଡ଼ିଶାରେ ଚାଲିଥିବା ମନମୁଖୀ ଶାସନ ଓ ଦେଶବାସୀଙ୍କ ଦୁଃଖ-ଦୁର୍ଦ୍ଦଶା, ଅଭାବ-ଅସୁବିଧା ଆଦି ବିଷୟରେ ନିଜର ସ୍ୱାଧୀନ ମତ ଓ କଠୋର ସମାଲୋଚନା ପ୍ରକାଶ କରୁଥିଲେ । ସେସବୁ ଉଗ୍ର ଲେଖାକୁ 'ଉତ୍କଳଦୀପିକା'ରେ ସ୍ଥାନ ଦେବାକୁ ଗୌରୀଶଙ୍କର ରାୟଙ୍କ ଭଳି ନିର୍ଭୀକ ସଂପାଦକ ମଧ୍ୟ ଭୟ କରିବାକୁ ଲାଗିଲେ । ଏଣୁ ପ୍ୟାରୀମୋହନ 'ଉତ୍କଳପୁତ୍ର' ନାମରେ ଖଣ୍ଡିଏ ପାକ୍ଷିକ ପତ୍ରିକା ନିଜ ସଂପାଦକତ୍ୱରେ ପ୍ରକାଶ କଲେ । ଏହି ପାକ୍ଷିକୀର ଗୋଟିଏ ସଂଖ୍ୟାରେ 'ଦରଖାସ୍ତ ଜୁତିପ୍ୟାନ୍' (ଜୋତାର ନିବେଦନ) ଶିରୋନାମାରେ ଗୋଟିଏ ଲେଖା ପ୍ରକାଶ ପାଇଲା । ତହିଁରେ କଟକ ସ୍ୱାୟତ୍ତଶାସନ ସଂସ୍ଥାର କାର୍ଯ୍ୟକଳାପକୁ ତୀବ୍ର ସମାଲୋଚନା କରାଯାଇଥିଲା । ତତ୍କାଳୀନ ଜିଲ୍ଲା କଲେକ୍ଟର ଏର୍‌ଭିଂ ସାହେବ ତାହା ଜାଣିବାମାତ୍ରେ କ୍ରୋଧ-ପ୍ରଜ୍ୱଳିତ ହୋଇ ଛାତ୍ର ପ୍ୟାରୀମୋହନଙ୍କୁ ସରକାରୀ ହାଇସ୍କୁଲରୁ ବହିଷ୍କୃତ କରିଦେଲେ ।

କାରଣ

କଲେକ୍ଟରଙ୍କ ଏହି ଦଣ୍ଡାଦେଶ କିନ୍ତୁ ପ୍ୟାରୀମୋହନଙ୍କ ପ୍ରାଣରେ ନବ ଚେତନା ଓ ନବ ଉଦ୍ଦୀପନାର ଉତ୍ସସ୍ୱରୂପ କାର୍ଯ୍ୟ କଲା । ସେ କଲେକ୍ଟରଙ୍କ କୋପବହ୍ନିର ଉଦାର ପ୍ରତିଶୋଧ ନେବାପାଇଁ କଟକରେ ଗୋଟିଏ ବେସରକାରୀ ହାଇସ୍କୁଲ-ସ୍ଥାପନର ଶ୍ରେଷ୍ଠପଥ ଗ୍ରହଣ କଲେ ।

ଏଥିପୂର୍ବରୁ ବକ୍ସିବଜାରନିବାସୀ ଧନାଢ୍ୟ ମହାଜନ କୃପାସିନ୍ଧୁ ସାହୁ ସ୍ୱଗୃହରେ ପାଠଶାଳାଟିଏ ବସାଇଥିଲେ । ପ୍ୟାରୀମୋହନ ସେହି ପାଠଶାଳାଟିକୁ ୧୮୭୫ ମସିହାରେ ମାଇନର ସ୍କୁଲରେ ପରିଣତ କରି ତାକୁ ପୁଣି ୧୮୭୮ରେ ହାଇସ୍କୁଲ ସ୍ତରକୁ ଉନ୍ନୀତ କରିଦେଲେ । ଏହି ଦୁରୂହ କାର୍ଯ୍ୟ ସାଧନ କରିବାପାଇଁ ତାଙ୍କୁ ଅକ୍ଳାନ୍ତ ପରିଶ୍ରମ କରିବାକୁ ହୋଇଥିଲା ଏବଂ ବହୁ ବାଧାବିଘ୍ନ, ଅଭାବ-ଅନଟନର ସମ୍ମୁଖୀନ ହେବାକୁ ପଡ଼ିଥିଲା । ସ୍ୱାଧୀନଚେତା ପଣ୍ଡିତ ଗୋବିନ୍ଦ ରଥ, ଫକୀରମୋହନ ସେନାପତି ଓ ମଧୁସୂଦନ ରାଓ ତାଙ୍କୁ ଏହି ଦେଶକଲ୍ୟାଣ କର୍ମରେ ପ୍ରଭୂତ ମନୋବଳ ଯୋଗାଇଥିଲେ ।

ଆଚାର୍ଯ୍ୟ ମହାଶୟ ପାଦରେ ଚାଲି ଚାଲି କଲିକତା ଯାଇ ଉକ୍ତ ନବପ୍ରତିଷ୍ଠିତ ହାଇସ୍କୁଲର ପ୍ରଧାନଶିକ୍ଷକରୂପେ ବରଣ କରି ଆଣିଥିଲେ ଭାରତ-ବିଖ୍ୟାତ ବିପ୍ଳବୀ ନେତା ବିପିନବିହାରୀ ପାଲଙ୍କୁ । ସେହି ସୁଖ୍ୟାତିସଂପନ୍ନ ହାଇସ୍କୁଲଟିହିଁ ଆଜିର ପ୍ୟାରୀମୋହନ ଏକାଡ଼େମୀ ।

ସାଢ଼େ ତିରିଶଟିମାତ୍ର ବର୍ଷର କ୍ଷୀଣ ପରମାୟୁ ନେଇ ଆସିଥିବା ଦେଶବତ୍ସଳ ମହାତ୍ମା ପ୍ୟାରୀମୋହନଙ୍କ ନିକଟରେ ଓଡ଼ିଶାବାସୀ ଓ ଓଡ଼ିଆଭାଷୀ ବହୁଭାବରେ ଋଣୀ । ତାଙ୍କ ପ୍ରଣୀତ 'ଓଡ଼ିଶା ଇତିହାସ' ପୁସ୍ତକ ଓଡ଼ିଆ ଜାତିର ପ୍ରଥମ ଇତିହାସ-ସଂକଳନ । କେବଳ ଏତିକି ନୁହେଁ, ସର୍ବଭାରତୀୟ କ୍ଷେତ୍ରରେ ଏହାହିଁ ଆଞ୍ଚଳିକ ଭାଷାରେ ଲିଖିତ ସର୍ବପ୍ରଥମ ଇତିହାସ ଗ୍ରନ୍ଥ ।

୧୮୬୬ର କୁଖ୍ୟାତ 'ନଅଙ୍କ' ଦୁର୍ଭିକ୍ଷବେଳକୁ ତାଙ୍କୁ ବୟସ ହୋଇଥିଲା ମୋଟେ ପନ୍ଦର ବର୍ଷ । ସେହି କିଶୋର ବୟସରେ ସମବୟସ୍କ ସ୍ୱେଚ୍ଛାସେବକ ଦଳଟିଏ ଗଠନ କରି ସେ ଅନାହାରକ୍ଳିଷ୍ଟ ରୋଗପ୍ରପୀଡ଼ିତ ଅସଂଖ୍ୟ ଲୋକଙ୍କର ସେବାକାର୍ଯ୍ୟରେ ଲାଗିପଡ଼ିଥିଲେ ଏବଂ ସେମାନଙ୍କ ବୁଭୁକ୍ଷୁ ଉଦରପାଇଁ ଅନ୍ନସଂସ୍ଥାନ କରିଥିଲେ । ଏହି ଉଦ୍ଦେଶ୍ୟରେ କଟକନଗରୀର ଯେଉଁ ସ୍ଥାନରେ ଅନ୍ନଛତ୍ରର ବ୍ୟବସ୍ଥା କରାଯାଇଥିଲା, ସେହି ସ୍ଥାନଟି ସେହିଦିନୁଁ 'ଛତ୍ରବଜାର' ନାମରେ ଅଭିହିତ ହେଲା ।

**ସାହିତ୍ୟଚର୍ଚ୍ଚାପ୍ରତି ଆଗ୍ରହ**—ପ୍ୟାରୀମୋହନଙ୍କ ଆକସ୍ମିକ ବିୟୋଗ-ପରେହିଁ ତାଙ୍କ ପ୍ରତିଷ୍ଠିତ ହାଇସ୍କୁଲଟି ପ୍ୟାରୀମୋହନ ଏକାଡ଼େମୀ ନାମ ଧାରଣ କରିଥିଲା । ସେହି ଏକାଡ଼େମୀରେ ଅଧ୍ୟୟନ କରୁଥିବା ସମୟରେ ବିଶ୍ୱନାଥ ସାହିତ୍ୟଚର୍ଚ୍ଚାପ୍ରତି ଆକୃଷ୍ଟ ହୋଇଥିଲେ । ଦୈବକ୍ରମେ ତାଙ୍କୁ ଗୋଟିଏ ସୁଯୋଗ ମଧ୍ୟ ମିଳିଲା । ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣ ସେତେବେଳେ କଟକରେ ଅବସ୍ଥାନ କରୁଥାନ୍ତି। ସଂସ୍କୃତ ସାହିତ୍ୟ ଓ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ତାଙ୍କ ଅନନ୍ୟସାଧାରଣ ପାଣ୍ଡିତ୍ୟର ଖ୍ୟାତି ସାରା ଉତ୍କଳରେ ବିଚ୍ଛୁରିତ ହୋଇଥାଏ । ତେଣୁ ତାଙ୍କ ବସାଟି ବହୁ କାବ୍ୟାମୋଦୀ ସାହିତ୍ୟରସିକଙ୍କ ସମାଗମରେ ନିତ୍ୟକଲ୍ଲୋଳିତ ହେଉଥିଲା । ବିଶ୍ୱନାଥ ଅବସରବେଳେ ପ୍ରାୟ ପ୍ରତ୍ୟହ ବିଦ୍ୟାଭୂଷଣଙ୍କ ବସାକୁ ଯିବାକୁ ଲାଗିଲେ ଏବଂ ତାଙ୍କ ମୁଖରୁ ସଂସ୍କୃତ କାବ୍ୟ, ନାଟକ, ବ୍ୟାକରଣ, ଅଳଂକାର ଓ ପ୍ରାଚୀନ ଓଡ଼ିଆ କବି ଭଞ୍ଜ, ଅଭିମନ୍ୟୁ, କବିସୂର୍ଯ୍ୟ ବଳଦେବ ଆଦିଙ୍କ କାବ୍ୟ, ସଂଗୀତ, ଚମ୍ପୂ, ଚଉତିଶା ପ୍ରଭୃତିର ପ୍ରାଞ୍ଜଳ ବ୍ୟାଖ୍ୟାନ ଶୁଣି ନିଜ ଜ୍ଞାନ-ଭଣ୍ଡାରକୁ ଯଥେଷ୍ଟ ସମୃଦ୍ଧ କରିଦେଲେ । ବାସ୍ତବତା ଦୃଷ୍ଟିରୁ ଦେଖିବାକୁ ଗଲେ, ଏହିଠାରେହିଁ ହେଲା ତାଙ୍କ ସାହିତ୍ୟିକ ଜୀବନର ଶୁଭପ୍ରଭାତ ଏବଂ ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣ ହେଲେ ତାଙ୍କ ସାହିତ୍ୟ-ସାଧନାର ଉପଦେଷ୍ଟା ଓ ଗୁରୁ ।

## ଛାତ୍ରମର୍ଯ୍ୟାଦାରକ୍ଷାପାଇଁ ଏକାଡ଼େମୀତ୍ୟାଗ : କଟକ ମିସନ୍ ହାଇସ୍କୁଲରେ ଅଧ୍ୟୟନ

ଏଣ୍ଟ୍ରାନ୍‌ସ୍ ଶ୍ରେଣୀରେ ଅଧ୍ୟୟନ କରୁଥିବାବେଳେ ବିଶ୍ୱନାଥ ଏକ ମାନସିକ ଦ୍ୱନ୍ଦ୍ୱର ସମ୍ମୁଖୀନ ହେଲେ । ଜଣେ ଶିକ୍ଷକଙ୍କର ଅଶିକ୍ଷକୋଚିତ ଅନ୍ୟାୟ ଆଚରଣ ତାଙ୍କୁ ଅତ୍ୟନ୍ତ କ୍ଷୁବ୍ଧ ଓ ବିବ୍ରତ କରିଦେଲା । ଦୀର୍ଘ ତିନି ବର୍ଷ ଏକାଡ଼େମୀରେ ଅଧ୍ୟାୟୀର ଜୀବନ କଟାଇଥିଲେହେଁ ଏଭଳି ଆହତ ମନ ନେଇ ସେଠାରେ ଶିକ୍ଷାଶେଷପର୍ଯ୍ୟନ୍ତ ପଡ଼ିରହିବା ଉଚିତ, କି ଅନ୍ୟାୟର ପ୍ରତିବାଦସ୍ୱରୂପ ସେହି ଶିକ୍ଷାନୁଷ୍ଠାନରୁ ବିଦାୟ ନେବା ଉଚିତ, ଏହି ସମସ୍ୟାହିଁ ତାଙ୍କ ଅନ୍ତରକୁ କିଛି ଦିନ ଆଲୋଡ଼ିତ କଲା । ପରିଶେଷରେ ପ୍ରିୟ ପ୍ୟାରୀମୋହନ ଏକାଡ଼େମୀକୁ ବର୍ଜନ କରି ଅନ୍ୟତ୍ର ପଢ଼ିବାହିଁ ଶ୍ରେୟଃକର୍ତ୍ତବ୍ୟ ବୋଲି ସେ ସ୍ଥିର ସିଦ୍ଧାନ୍ତରେ ଉପନୀତ ହେଲେ । ଏହାର ଅବ୍ୟବହିତ ପୂର୍ବରୁ କଟକରେ ମିସନ୍ ହାଇସ୍କୁଲ

ନୂଆ ହୋଇ ପ୍ରତିଷ୍ଠିତ ହୋଇଥାଏ। ବିଶ୍ୱନାଥ ଶତ ସହପାଠୀଙ୍କ ସନିର୍ବନ୍ଧ ଅନୁରୋଧ ସତ୍ତ୍ୱେ ଏକାଡ଼େମୀରୁ ନାମ କଟାଇନେଇ ଉକ୍ତ ମିସନ୍ ସ୍କୁଲରେ ନାମ ଲେଖାଇଲେ। ଯାହାଙ୍କର ଦୁର୍ବଳତାରେ ଅନ୍ୟାୟକୁ ଶିର ନୁଆଁଇ ବରଦାସ୍ତ କରିଯିବା ଯେ ମୂଳ ଅନ୍ୟାୟ ଅପେକ୍ଷା ଅଧିକତର ଅନ୍ୟାୟ, ବିବେକୀ ବିଶ୍ୱନାଥ ନିଜର ଏହି ବଳିଷ୍ଠ ଭୂମିକାଦ୍ୱାରା ଛାତ୍ରସଂପ୍ରଦାୟକୁ ଆତ୍ମସଚେତନତାର ଦୃଷ୍ଟାନ୍ତ ଦେଖାଇବାରେ ଅଗ୍ରଣୀ ନାୟକ ହୋଇଥିଲେ।

**ଧର୍ମସଂସ୍କାରର ଉପୋଦ୍‌ଘାତ**—ମିସନ୍ ସ୍କୁଲରେ ପାଠ୍ୟସମାପ୍ତି-ପର୍ଯ୍ୟନ୍ତ ଅଧ୍ୟୟନ କରି ଏଣ୍ଟ୍ରାନ୍‌ସ୍ ପରୀକ୍ଷା ଦେବା ବିଶ୍ୱନାଥଙ୍କ ପକ୍ଷରେ ସମ୍ଭବପର ହୋଇପାରିଲା ନାହିଁ। ସେଠାରେ ୟଙ୍ଗ୍ ସାହେବ ପ୍ରଭୃତି ବିଶିଷ୍ଟ ମିସନାରୀଙ୍କ ସଂସ୍ପର୍ଶରେ ଓ ସଂସର୍ଗରେ ଆସିବାଫଳରେ, ଜାତିବାଦର ମାରାତ୍ମକ ପରିଣାମ ସମ୍ବନ୍ଧରେ ତାଙ୍କ ମନରେ ଯେଉଁ ଧାରଣା ଅଙ୍କୁରିତ ହୋଇଥିଲା, ତାହା ଦୃଢ଼ମୂଳ ହୋଇଗଲା। ସେ ଜାତିବିଚାରକୁ ଓ ସ୍ପୃଶ୍ୟ-ଅସ୍ପୃଶ୍ୟ ଭେଦକୁ ସଂପୂର୍ଣ୍ଣରୂପେ ହୃଦୟରୁ ମୂଳୋତ୍ପାଟିତ କରିଦେଲେ ଏବଂ ହିନ୍ଦୁ-ଅଣହିନ୍ଦୁନିର୍ବିଶେଷରେ ଯେକୌଣସି ଜାତିର ଲୋକଙ୍କ ସଙ୍ଗରେ ଅବାଧ ମିଳାମିଶା କରି ଏକପଙ୍‌କ୍ତିରେ ଭୋଜନ କରିବାକୁ ଲାଗିଲେ। ଧର୍ମସଂସ୍କାର କାର୍ଯ୍ୟରେ ଏ ହେଉଛି ତାଙ୍କର ପ୍ରଥମ ପଦକ୍ଷେପ। କ୍ରମଶଃ ଧର୍ମସଂସ୍କାର ଦିଗକୁ ମନ ଏତେ ପ୍ରବଳଭାବରେ ଢଳିଲା ଯେ, ଅଧିକ ଅଧ୍ୟୟନର ଆବଶ୍ୟକତା ତାଙ୍କ ନିକଟରେ ନିତାନ୍ତ ଗୌଣ ଓ ନଗଣ୍ୟ ହୋଇପଡ଼ିଲା।

**'ବ୍ରାହ୍ମସମାଜ' ଓ ମଧୁସୂଦନଙ୍କ ସହିତ ସଂପର୍କ : ଶିକ୍ଷାରେ ଜଳାଞ୍ଜଳି**—ସେତେବେଳକୁ କଟକରେ 'ବ୍ରାହ୍ମସମାଜ'ପ୍ରତିଷ୍ଠାର ପନ୍ଦର ବର୍ଷ ପୂରିସାରିଥାଏ। 'ସମାଜ'-ପ୍ରାଙ୍ଗଣରେ ଅନୁଷ୍ଠିତ ରବିବାସରୀୟ ସାପ୍ତାହିକ ଉପାସନା-ସଭାମାନ ଶିକ୍ଷିତ ଯୁବଜନପ୍ରାଣରେ ଧର୍ମ ସମ୍ବନ୍ଧରେ ନୂତନ ଆଲୋକପାତ କରି ଲୋକପ୍ରିୟ ହେବାକୁ ଯାଉଥାଏ। ଦରମୀଳିତ-ଚକ୍ଷୁ ଆଚାର୍ଯ୍ୟ ମଧୁସୂଦନଙ୍କ ଆବେଗ-ସଂପୂରିତ ଭାବଗଦ୍‌ଗଦ ଭଗବତ୍-ଉପାସନା ସେଠାରେ ଥିଲା ସର୍ବାଧିକ ଆକର୍ଷଣ। ଯେଉଁ ନବଯୁବକବୃନ୍ଦ ବ୍ରାହ୍ମସମାଜର ବକ୍ତୃତା ଓ ଉପଦେଶ ଶୁଣିବାର ଲୋଭ ସଂବରଣ କରି ନ ପାରି ଘନ ଘନ ସେଠାକୁ ଯାଉଥିଲେ, ସେମାନଙ୍କ ଦଳର ଅଧିନାୟକ ଥିଲେ ଚତୁର୍ଭୁଜ ପଟ୍ଟନାୟକ।

ଏହି ସମୟରେ ବିଶ୍ୱନାଥ ଜାଣିବାକୁ ପାଇଲେ ଯେ, ପ୍ୟାରୀମୋହନ ଜୀବିତ ଥିବାପର୍ଯ୍ୟନ୍ତ ମଧୁସୂଦନ ଥିଲେ ତାଙ୍କର ପରମ ଅନ୍ତରଙ୍ଗ ଓ ସମହୃଦୟୀ । ତେଣୁ ପ୍ୟାରୀମୋହନ-ଭକ୍ତ ବିଶ୍ୱନାଥ ମଧୁସୂଦନଙ୍କ ସାପ୍ତାହିକ ଉପାସନା ଶୁଣିବାପାଇଁ ଉଦ୍‌ବିଗ୍ନ ହୋଇପଡ଼ିଲେ । ଯେଉଁ ଦିନ ସେ ପ୍ରାର୍ଥନା-ସଭାରେ ଦିବ୍ୟବିଭା-ବିଭାସିତ ମଧୁସୂଦନଙ୍କ ଶାନ୍ତସମାହିତ ଶୁଚି-ସୌମ୍ୟ ମୂର୍ତ୍ତି ପ୍ରଥମେ ଦେଖିବାକୁ ପାଇଲେ ଓ ଅମୃତରସାଣିତ କଣ୍ଠର କୋମଳ-ମଧୁର ମର୍ମସ୍ପର୍ଶୀ ବାଣୀ ପ୍ରଥମେ ଶୁଣିବାକୁ ପାଇଲେ, କି ଏକ ଅଭୂତପୂର୍ବ ଚୌମ୍ବକ ସ୍ପର୍ଶରେ ଅନ୍ତରାତ୍ମା ତାଙ୍କର ପୁଲକିତ ହୋଇଉଠିଲା । ସେହି ଦିନୁଁ ଦେବୋପମ ମଧୁସୂଦନଙ୍କୁ ନିଜ ଧର୍ମ-ଜୀବନର ଦିଗ୍‌ଦର୍ଶକ ଓ ଦୀକ୍ଷାଗୁରୁରୂପେ ହୃଦୟ-ବେଦୀରେ ଅଧିଷ୍ଠିତ କରିଦେଲେ । ପରଦିନଠାରୁ ତାଙ୍କ ନିକଟକୁ ନିୟମିତ-ଭାବରେ ଯାଇ ଓ ତାଙ୍କ ମୁଖନ୍ତ୍ରୁ ବ୍ରାହ୍ମଧର୍ମର ସାରତତ୍ତ୍ୱମାନ ଆଗ୍ରହସହକାରେ ଶୁଣି ଜୀବନକୁ ଧନ୍ୟ ମନେ କଲେ । ମଧୁସୂଦନଙ୍କ ସାନ୍ନିଧ୍ୟ ଲାଭ କଲାପରେ ଜିଜ୍ଞାସୁ ବିଶ୍ୱନାଥଙ୍କ ମନକୁ ଆନ୍ଦୋଳିତ କରୁଥିବା ବହୁ ସଂଶୟ ଅଚିରେ ନିରାକୃତ ହେଲା ଏବଂ ବହୁ ପ୍ରଶ୍ନବାଚୀର ଚିର ନିରସନ ଘଟିଲା । ଧର୍ମଜଗତର ଦୂର ଚକ୍ରବାଳରେ ରଶ୍ମିରେଖାଟିଏ ସହସା ଝଲସିଉଠି ତାଙ୍କୁ ଏକ ନୂତନ ଦିଗନ୍ତ ଆଡ଼କୁ ପଥ ଦେଖାଇଦେଲା ।

ଏଣିକି ସ୍କୁଲଶିକ୍ଷାପ୍ରତି ମନ ତାଙ୍କର ସଂପୂର୍ଣ୍ଣ ବୀତସ୍ପୃହ ହୋଇଗଲା । ପଢ଼ାରେ ଜଳାଞ୍ଜଳି ଦେଇ ୧୮୮୫ ମସିହାର ପ୍ରଥମ ଭାଗରେ ବିଶ୍ୱନାଥ ମିସନ୍ ସ୍କୁଲ ପରିତ୍ୟାଗ କଲେ ।



# ମଫସଲ ସ୍କୁଲରେ ପ୍ରଧାନଶିକ୍ଷକତା

ସମ୍ବଳଶୂନ୍ୟ ହସ୍ତରେ କଟକ ଭଳି ବଡ଼ ସହରରେ କେତେ କାଳ ବା ଚଳିହେବ ? ତେଣୁ ବିଶ୍ୱନାଥ ପୂର୍ବବତ୍ କଟକରେ ଥାଇ ଆତ୍ମନିଯୁକ୍ତିପାଇଁ ଚାରିଆଡ଼େ ଆଖି ବୁଲାଇଲେ । ରୁଟିକର ଖଣ୍ଡିଏ ଯୋଗାଡ଼ କରିବାକୁ ବର୍ଷଟାସାରା ବିତିଗଲା । ଏହି ଫାଙ୍କା ସମୟଟକ ବିଶ୍ୱନାଥ ବ୍ରାହ୍ମଧର୍ମସଂକ୍ରାନ୍ତ ବିବିଧ ଉପାଦେୟ ଗ୍ରନ୍ଥପାଠରେ ବିନିଯୋଗ କରି ଆତ୍ମାର କ୍ଷୁଧା ଅନେକାଂଶରେ ନିବାରଣ କଲେ । ତହିଁ ସଙ୍ଗେ ସଙ୍ଗେ ବ୍ରାହ୍ମସମାଜର ଅଗ୍ରଯାୟୀ ସକ୍ରିୟ ସଭ୍ୟ ଚତୁର୍ଭୁଜ ପଟ୍ଟନାୟକଙ୍କ ପରିଚାଳିତ 'ସମାଜ' ଓ 'ସଂସ୍କାରକ' ପତ୍ରିକାଦୁଇଟିର ସଂପାଦକତ୍ୱ ଗ୍ରହଣ କରି ପତ୍ରିକା-ସଂପାଦନା କଳାରେ ସମ୍ୟକ୍ ଅଭିଜ୍ଞତା ଅର୍ଜନ କଲେ । ଏହାଦ୍ୱାରା ବ୍ରାହ୍ମସମାଜ ସହିତ ତାଙ୍କର ପ୍ରଚ୍ଛନ୍ନ ସଂପର୍କ ପ୍ରକାଶ୍ୟ ସଂପର୍କରେ ପରିଣତ ହେବାର ପ୍ରକୃଷ୍ଟ ସୁଯୋଗ ପାଇଲା ।

ନିଜ ଚେଷ୍ଟାର ଫଳସ୍ୱରୂପ ଶେଷରେ ଜଗତ୍‌ସିଂହପୁର ଅଞ୍ଚଳର ବିରୋଳ ଗ୍ରାମରେ ଶିକ୍ଷକତା କାର୍ଯ୍ୟ କରିବାପାଇଁ ନିଯୁକ୍ତିପତ୍ର ମିଳିଲା । ବିଶ୍ୱନାଥ ୧୮୮୭ ମସିହା ଜାନୁଆରି ମାସରେ କଟକରୁ ବିଦାୟ ନେଇ ବିରୋଳ (ମାଇନର ?) ସ୍କୁଲର ପ୍ରଧାନଶିକ୍ଷକ ପଦରେ ଯୋଗଦାନ କଲେ । କଟକ ଛାଡ଼ିବା ଦିନ ବ୍ରାହ୍ମସମାଜର 'ମାଘୋତ୍ସବ'ରେ ମଧୁସୂଦନଙ୍କ ପ୍ରାଣସ୍ପର୍ଶିନୀ ଉପାସନା ଓ ବକ୍ତୃତା ତାଙ୍କ ଉଦ୍‌ବୁଦ୍ଧ ହୃଦୟରେ ଯେଉଁ ନୂତନ ଚେତନାର ନିକଷଗାର ପକାଇଦେଇଥିଲା, ତାହା ବିରୋଳରେ ଉଜ୍ଜ୍ୱଳତର ହୋଇଉଠିଲା । ସେଠାରେ କେତେକ ବନ୍ଧୁ ତାଙ୍କ ଧର୍ମବ୍ୟାଖ୍ୟାନରେ ସହମତ ହୋଇ ଆନ୍ତରିକ ସହାନୁଭୂତି ପ୍ରକାଶ କରିବାରୁ ବିଶ୍ୱନାଥ ପ୍ରୋତ୍ସାହିତ ହୋଇ ସ୍ଥାନେ ସ୍ଥାନେ ନିଜ ମତ ପ୍ରଚାର କରିବାକୁ ଲାଗିଲେ । ତାହାର ଫଳ କିନ୍ତୁ ବିପରୀତ

ହେଲା । ଚିରାଚରିତ ନିତ୍ୟାଚାର, ଲୌକିକ ବିଧିବିଧାନ, ଦେବାଦେବୀପୂଜା ଓ ବିବିଧ ଧର୍ମାନୁଷ୍ଠାନପ୍ରତି ତାଙ୍କର ତୀବ୍ର ଘୃଣା ଓ ଅଶ୍ରଦ୍ଧା ଦେଖି ପ୍ରଚଳିତ ସାମାଜିକତାର ଗଣ୍ଡିମଧ୍ୟରେ ବଢ଼ିଆସିଥିବା ଶଗଡ଼ଗୁଳାଶ୍ରୟୀ ଲୋକେ ତାଙ୍କୁ ଧର୍ମଛଡ଼ା ଓ ଈଶ୍ୱରଦ୍ରୋହୀ ବୋଲି ଭର୍ତ୍ସନା କଲେ ।

ଅନୁଜ ଲୋକନାଥ ଓ ଭୋଳାନାଥ କିନ୍ତୁ ଅଗ୍ରଜ ବିଶ୍ୱନାଥଙ୍କର ନୂତନ ଧର୍ମମତକୁ ସର୍ବାନ୍ତଃକରଣରେ ସ୍ୱାଗତ କରି ତାଙ୍କ ଧର୍ମବିଶ୍ୱାସର ସଂପୂର୍ଣ୍ଣ ଅନୁଗାମୀ ହୋଇଯାଇଥାନ୍ତି । ସହୋଦରଦ୍ୱୟଙ୍କ ସହଗାମିତା ବିଶ୍ୱନାଥଙ୍କ ମନୋବଳକୁ ପର୍ଯ୍ୟାପ୍ତ ଇନ୍ଧନ ଯୋଗାଉଥାଏ । ଉଭୟେ ମାଇନର ଶିକ୍ଷା ଶେଷ କରି ଗ୍ରାମରେ ରହିଥାନ୍ତି । ବିରେଳରେ ନିଯୁକ୍ତି ପାଇବାପରେ ବିଶ୍ୱନାଥ ସେଦୁହିଁଙ୍କୁ ଉଚ୍ଚତର ଶିକ୍ଷା ଦେବା ଅଭିପ୍ରାୟରେ କଟକକୁ ନେଇଯାଇ ବ୍ରାହ୍ମସମାଜ-ସଂଲଗ୍ନ ଛାତ୍ରାବାସରେ ରଖାଇଦେଲେ । ଲୋକନାଥ ମେଡ଼ିକାଲ୍ ସ୍କୁଲରେ ଡାକ୍ତରୀ ବିଦ୍ୟା ଶିକ୍ଷା କଲେ ଓ ଭୋଳାନାଥ କଲେଜିଏଟ୍ ସ୍କୁଲରେ ଏଣ୍ଟ୍ରାନ୍ସ୍ ପଢ଼ିଲେ । ଦୁଇ ଭାଇ ଉକ୍ତ ଛାତ୍ରାବାସରେ ଅବସ୍ଥାନ କରିବାଫଳରେ ସ୍ୱଭାବତଃ ବ୍ରାହ୍ମସମାଜପ୍ରତି ଆକୃଷ୍ଟ ହୋଇପଡ଼ିଲେ ।



# ପୌରୋହିତ୍ୟ-ବୃତ୍ତିଉପରେ କଟୁ ମନ୍ତବ୍ୟର ଜେଷ୍ଠ

ତିନି ଭାଇଙ୍କର ଏତାଦୃଶ ସମ୍ମିଳିତ ପ୍ରସ୍ତାବ ମନସ୍କ୍ରିୟାର ସଂବାଦ ପାଇବାପରେ ବିଶ୍ୱନାଥଙ୍କ ପରିବାର ସମେତ ମୂଳବସନ୍ତ ଓ ପାର୍ଶ୍ୱବର୍ତ୍ତୀ ଗ୍ରାମ-ସମୂହରେ ଏକ ଉତ୍ତେଜନାମୟ ବାୟୁମଣ୍ଡଳର ଉଦ୍ଭବ ହୋଇଥାଏ । ଲୋକେ ଖଡ୍ଗହସ୍ତ ହୋଇ ରହିଥାନ୍ତି । ସେହି ଉତ୍ତପ୍ତ ବାତାବରଣମଧ୍ୟରେ ୧୮୮୭ ମସିହାର ଚୈତ୍ରପୂର୍ଣ୍ଣିମା ଦିନ ବଧୂ ଜାନକୀ ପ୍ରଥମ ପୁତ୍ରସନ୍ତାନର ଜନନୀ ହେଲେ । ସମଗ୍ର ପରିବାରର ଜ୍ୟେଷ୍ଠପୁତ୍ର ବିଶ୍ୱନାଥଙ୍କର ଜ୍ୟେଷ୍ଠକୁମାରସମ୍ଭବ—ଗୃହସାରା ଆନନ୍ଦ-ହିଲ୍ଲୋଳରେ ଉଚ୍ଛ୍ୱସିତ ହୋଇଉଠିଲା । ଦୈବଯୋଗେ ତତ୍-ପୂର୍ବଦିନ ବିଶ୍ୱନାଥ ବରେଲିରୁ ଗୃହକୁ ଆସିଥାନ୍ତି । କୁଳପରଂପରାଗତ ବିଧି-ଅନୁଯାୟୀ ଜ୍ୟେଷ୍ଠପୁତ୍ରର ଜନ୍ମୋତ୍ସବରେ ଗୋଟିଏ ପୂଜା ଓ ସୁବର୍ଣ୍ଣଦାନ ହେବାର କଥା । ଏହି ଶୁଭକାର୍ଯ୍ୟର ଅନୁଷ୍ଠାନରେ ଯୋଗ ଦେବାପାଇଁ ବିଶ୍ୱନାଥଙ୍କୁ ପରିବାରର ସମସ୍ତେ ଓ ଆତ୍ମୀୟସ୍ୱଜନମାନେ ସମସ୍ୱରରେ ଅନୁରୋଧ କଲେ; ମାତ୍ର ବିଶ୍ୱନାଥ ସେଥିପ୍ରତି ତିଳେମାତ୍ର କର୍ଣ୍ଣପାତ କଲେ ନାହିଁ । ଧର୍ମର ପରିପନ୍ଥୀ ଏସବୁ ବାହ୍ୟାଡ଼ମ୍ବର ଓ ବହିରଙ୍ଗରେ ତାଙ୍କର ଆଦୌ ବିଶ୍ୱାସ ନାହିଁ ବୋଲି ସ୍ପଷ୍ଟ ଶୁଣାଇଦେଇ ନିଜ କର୍ମସ୍ଥଳୀ ବରେଲିକୁ ଚାଲିଗଲେ । କେବଳ ଏତିକି ନୁହେଁ, ପୁତ୍ରର ଏକୋଇଶା ଉତ୍ସବଦିନ ଗୃହରେ ପଦପାତ ସୁଦ୍ଧା କଲେ ନାହିଁ । ଏଥିପାଇଁ ପରିବାରର କାହାରି ମନରେ ସୁଖ ରହିଲା ନାହିଁ ।

ଗ୍ରୀଷ୍ମାବକାଶରେ ବିଶ୍ୱନାଥ ବରେଲିରୁ ଗ୍ରାମକୁ ଆସିଲେ; ଲୋକନାଥ ଓ ଭୋଳାନାଥ ମଧ୍ୟ କଟକରୁ ଆସି ଗୃହରେ ଉପସ୍ଥିତ ହେଲେ । ବିଶ୍ୱନାଥ ଏଥର ଆହୁରି ନିର୍ଭୀକଭାବରେ ସମାଜଉପରେ ଲଦିଦିଆହୋଇଥିବା ମନଗଢ଼ା ବିଧିବିଧାନ ଓ ଆବର୍ଜନାବହୁଳ ଅବାଞ୍ଛିତ କ୍ରିୟାକଳାପଗୁଡ଼ିକର ଉତ୍କଟ ସମାଲୋଚନା କରିବାକୁ ଲାଗିଲେ । ବ୍ରାହ୍ମଣଭିତର ବାହ୍ୱାସ୍ଫୋଟକାରୀ ଗୋଦର-ଗୋଡ଼ିଆ ବ୍ୟବସ୍ଥାପକ ପଣ୍ଡିତ ଓ କର୍ମକାଣ୍ଡଜ୍ଞାନର ଆସ୍ଫାଳନକାରୀ ବୁଜୁଳି-ଭାରାକ୍ରାନ୍ତସ୍କନ୍ଧ ପୁରୋହିତବର୍ଗ ମଧ୍ୟ ସେହି ଶାଣିତ ସମାଲୋଚନାରୁ ବାଦ୍ ଗଲେ

ନାହିଁ । ବିଶ୍ୱନାଥ ସେମାନଙ୍କ ସଂବନ୍ଧୀୟ ଯେଉଁ କେତେକ ପ୍ରତ୍ୟକ୍ଷୀଭୂତ ବିଷୟର ଉଲ୍ଲେଖ କଲେ, ତାର ସଂକ୍ଷିପ୍ତସାର ଏହିପରି :

ଖାଲି ବ୍ରାହ୍ମଣବଂଶରେ ଜନ୍ମ ପାଇଗଲେ କଣ ମନୀଷ ବ୍ରାହ୍ମଣପଦବାଚ୍ୟ ହୋଇଯାଏ ? "ଜନ୍ମନା ଜାୟତେ ଶୂଦ୍ରଃ, ସଂସ୍କାରାତ୍ ଦ୍ୱିଜମୁଚ୍ୟତେ, ବେଦାଭ୍ୟାସାତ୍ ଭବେଦ୍ ବିପ୍ରୋ, ବ୍ରହ୍ମ ଜାନାତି ବ୍ରାହ୍ମଣଃ ।" 'ସତ୍ୟଂ ଜ୍ଞାନମନନ୍ତଂ' ବ୍ରହ୍ମଙ୍କର ବିନ୍ଦୁ ବିସର୍ଗ ଧାରଣା ସୁଦ୍ଧା ଯେଉଁମାନଙ୍କର ନାହିଁ, ଦିନ ଦୁଇଘଡ଼ିରେ କୂଅମୂଳେ କାକସ୍ନାନ କଲେ ସୁଦ୍ଧା ଯେଉଁମାନେ "ଜବାକୁସୁମ-ସଂକାଶଂ କାଶ୍ୟପେୟଂ ମହାଦ୍ୟୁତିଂ, ଧ୍ୱାନ୍ତାରିଂ ସର୍ବପାପଘ୍ନଂ ପ୍ରଣତୋଽସ୍ମି ଦିବାକରମ୍" ନବୋଦିତ ବାଳସୂର୍ଯ୍ୟଙ୍କୁ ପ୍ରଣାମ କରିବାର ଏହି ପ୍ରାତଃସ୍ନାନ-କାଳୀନ ମନ୍ତ୍ର ପାଠ କରି ଦିଗ୍‌ବିଦିଗ ଫଟାଇଦେଉଛନ୍ତି, ସେହି ସୂତ୍ରଗ୍ରନ୍ଥ-ସର୍ବସ୍ୱମାନଙ୍କୁ କେଉଁ ବିବେକବନ୍ତ ବ୍ୟକ୍ତି ବ୍ରାହ୍ମଣ ବୋଲି ସ୍ୱୀକାର କରିବ ? ତଥାପି ସେମାନେ ଲୋକମାନଙ୍କ ଜ୍ଞାନଚକ୍ଷୁରେ ଏପରି ଅନ୍ଧପଟ୍ଟଳି ବାନ୍ଧି-ଦେଇଛନ୍ତି, ଆତ୍ମଚେତନାଉପରେ ଅନ୍ଧବିଶ୍ୱାସର ଗୋବରପିଣ୍ଡ ଏପରି ଗଢେଇ-ଦେଇଛନ୍ତି, ଦାନ-ଦକ୍ଷିଣା-ବ୍ରାହ୍ମଣଭୋଜନ-ହୋମାଦିରେ ଦେବତାଙ୍କୁ ସଂତୁଷ୍ଟ ରଖିଲେ ପିତୃପୁରୁଷମାନଙ୍କର ସ୍ୱର୍ଗବାସ ହୁଏ—ଏହି ମିଥ୍ୟା ଧାରଣା ଲୋକଙ୍କ ମନରେ ଏପରି ଚେର ମଡ଼ାଇଦେଇଛନ୍ତି ଯେ, ହୋମବେଳେ 'ଶିଖାଙ୍କ ଉପରେ ଠେକଙ୍କ ମଝିରେ ଘୃତ ଅଛନ୍ତି' ଭଳି ମାନ୍ୟାର୍ଥକ ଭାଷାର ବ୍ୟବହାର ସହଜବିଶ୍ୱାସୀ ଯଜମାନମାନଙ୍କର ଅଭ୍ୟାସଗତ ହୋଇପଡ଼ିଛି । ପୁଣି, 'ସମାଜ-ରକ୍ଷକ' ଆଖ୍ୟାଧାରୀ ତକ୍ଷକଧର୍ମୀ ସର୍ବଭକ୍ଷକ ଶାସ୍ତ୍ରଜ୍ଞମ୍ମନ୍ୟ ବ୍ୟବସ୍ଥାଦାତାମାନଙ୍କ ବିଚିତ୍ର ଆଜ୍ଞାପଞ୍ଜିକା କଥା କଣ କହିବା ? 'ପଣ୍ଡିତପୁଅ ମାଙ୍କଡ଼ ମାରିଲେ ଦୋଷ ନାହିଁ' ନ୍ୟାୟରେ ଜ୍ଞାତିକୁଟୁମ୍ବ ଲୋକେ ଯେତେ ପାପକାର୍ଯ୍ୟ ବା ଅପରାଧ କଲେ ବି ସେମାନଙ୍କୁ ସାତଖୁଣ ମାଫି, ଅଥଚ ଅନ୍ୟ ଜାତିର କାହାର ସାମାନ୍ୟ ତ୍ରୁଟିଖିଲାପ ନଜରକୁ ଆସିଗଲେ ତାପାଇଁ ପୋଥିପୁରା ଆଉଡ଼ାଇ, ପୁନ୍ଥୁଣା ନଜିର କାଢ଼ି କଡ଼ା ଶାସ୍ତିବିଧାନ—ପାପକ୍ଷାଳନ ଯଜ୍ଞ, ଯଥାବିହିତ ପ୍ରାୟଶ୍ଚିତ୍ତ, ଗୋଦାନ, ସୁବର୍ଣ୍ଣଦାନ, ପାପମାତ୍ରାର ଲଘୁତା-ଗୁରୁତା ଅନୁଯାୟୀ ସର୍ବନ୍ୟୂନ ଦଶ ମୂର୍ତ୍ତିରୁ ଶହେ ମୂର୍ତ୍ତି ତଥାକଥିତ ସଦ୍‌ବ୍ରାହ୍ମଣଙ୍କୁ ସଦକ୍ଷିଣ ପୂର୍ଣ୍ଣଗ୍ରାସ ଭୋଜନଦାନ, ଏହିପରି ଆହୁରି କେତେ । ଅତି କ୍ଷୋଭର କଥା, ଶାସ୍ତ୍ରୀୟ ତାତ୍ତ୍ୱିକତାର ଧାର ଧାରୁ ନ ଥିଲେ ମଧ୍ୟ ଏହି ଅହଂସର୍ବସ୍ୱ ଶାସ୍ତ୍ରାଭିମାନୀ ଯାଜକଗୋଷ୍ଠୀଙ୍କୁ ବିଧି-ବିଧାନପ୍ରଣେତା ବ୍ରାହ୍ମଣବଂଶୋଦ୍ଭବ ପୂର୍ବାଗ୍ରହୀମାନଙ୍କ ଘଣ୍ଟତଳେ ଏପର୍ଯ୍ୟନ୍ତ

ନିର୍ଘାତ ରଖାଯାଇଛି । ମଙ୍ଗଳବାର, ଗୁରୁବାର, ଶନିବାର, ପୁଣି ଅଧିକନ୍ତୁ ରବିବାରରେ କେହି ମରିଗଲେ ତାକୁ 'ପୁଷ୍କର' ଦୋଷ ଲାଗିବାର ଉଲ୍ଲେଖ ଥିଲେହେଁ ତାହା କଡ଼ାକଡ଼ିଭାବରେ ବ୍ରାହ୍ମଣେତର ବଂଶଜଙ୍କପ୍ରତି ନିଶ୍ଚୟ ଲାଗୁ ହେବ, ଅଥଚ ବ୍ରାହ୍ମଣ-ପରିବାରପ୍ରତି ଲାଗୁ ହେବ ନାହିଁ । ଅଦ୍ଭୁତ ବେଣ୍ଡା ଆଇନ ! ବ୍ରାହ୍ମଣ ପୁରୋହିତେ ପୁରୁଷାନୁକ୍ରମେ ବ୍ରାହ୍ମଣେତରଙ୍କୁ ନିଃଶୋଷଣ କରି ଧୋତି-ଗୃହର-ଶାଢ଼ି-ଗାମୁଛା-ଚାଉଳ-ଡାଲି-ପନିପରିବା-ଫଳମୂଳ-ଘିଅ-ଦାନଦକ୍ଷିଣାରେ ଘର ଭର୍ତ୍ତି କରୁଥିବାର ପ୍ରଥାକୁ ଫନ୍ଦ ଛଡ଼ା ଠକେଇ ଆଉ କଣ କୁହାଯିବ ? ବ୍ରାହ୍ମଣେ ମନଇଚ୍ଛା ସମସ୍ତଙ୍କୁ ଲୁଟ କରିବେ, କିନ୍ତୁ ସେମାନଙ୍କ ଘରୁ ରୁଆଏ ଚାଉଳ କି ଚୁମୁଟେ ଲୁଣ କେହି ନେଇପାରିବେ ନାହିଁ—ଠିକ୍ ଯେମିତି ଶାଗୁଣା ସବୁର ମାଉଁସ ଖାଏ, କିନ୍ତୁ ତା ମାଉଁସ କେହି ଖାଆନ୍ତି ନାହିଁ ! ଶାସ୍ତ୍ରର ଦୋହାଇ ଦେଇ, ଧର୍ମକୁ ଆଖିମିଟିକା ମାରି ଏ ଯେଉଁ ଅନାଚାରର ହଟଚମଟ ତାଣ୍ଡବ ଚାଲିଛି, ଅସ୍ଥିକଙ୍କାଳସାର ଭୁଣ୍ଡିବନ୍ଧା ସମାଜ ଆଉ କେତେ କାଳ ନୀରବରେ ତାହା ବରଦାସ୍ତ କରିବ ? ଏସବୁ ଅନୀତିର ମୂଳପୋଛ ଏବେ ଏକାନ୍ତ ଜରୁରୀ ହୋଇପଡ଼ି ନାହିଁ କି ?

ତାଙ୍କର ଏବଂବିଧ ଉଗ୍ର ମନ୍ତବ୍ୟର କୁଠାର-ପ୍ରହାରରେ ଅଞ୍ଚଳଗୋଟା-ଯାକ ଦୁଲୁକି ଉଠୁଥିବାବେଳେ ଅନୁଜଦ୍ୱୟ ଲୋକନାଥ ଓ ଭୋଳାନାଥ, ଗ୍ରାମୀୟ ଜ୍ଞାତିସଂପର୍କିତ ଦୁଇ ଜଣ କନିଷ୍ଠାନ୍ ଭ୍ରାତା ଉଦୟନାଥ (ଏହି ଲେଖକର ପୂଜ୍ୟ ପିତୃଦେବ) ଓ ବଳଭଦ୍ର ଏବଂ ମୁଷ୍ଟିମେୟ ହୋଲେହେଁ ଆଉ କେତେକ ସାହସୀ ଯୁବକ ପ୍ରକାଶ୍ୟଭାବରେ ବିଶ୍ୱନାଥଙ୍କ ବେଦଧର୍ମାନୁସାରୀ ଅଭିନବ ଉକ୍ତିର ଯୌକ୍ତିକତାପ୍ରତି ଅକୁଣ୍ଠ ସମର୍ଥନ ଜଣାଇଲେ । ଫଳରେ ଚାଞ୍ଚଲ୍ୟ ଖେଳିଗଲା ଚାରିଆଡ଼େ । ସର୍ବଜନଗୃହୀତ ଧର୍ମଧାରାର ଗ୍ଲାନିକାରୀ ଏହି ଅର୍ବାଚୀନ କୁଳପାଂଶୁଳମାନଙ୍କ ବିରୁଦ୍ଧରେ ଗୋଟାଏ ତୁମୁଳ ଆନ୍ଦୋଳନ ଗ୍ରାମରେ ମୁଣ୍ଡ ଟେକିଲା । ବିଶ୍ୱନାଥଙ୍କ ସ୍ୱମତପ୍ରଚାର ଏହିରୂପେ କେତେକାଂଶରେ ସଫଳ ହେଲା । ଗ୍ରୀଷ୍ମାବକାଶଶେଷରେ ସେ ନବଶକ୍ତି ଘେନି ବିରୋଳ ପ୍ରତ୍ୟାବର୍ତ୍ତନ କଲେ ଏବଂ ଭାଇଦୁହେଁ କଟକ ଯାତ୍ରା କରି ନିଜ ନିଜ ପଢ଼ାରେ ଯୋଗ ଦେଲେ । ସଂକଟସଂକୁଳ କଣ୍ଟକିତ ସଂଗ୍ରାମ-ପଥରେ ଦୃଢ଼ଚେତା ବିଶ୍ୱନାଥଙ୍କର ଏହା ହେଲା ଆଗମଡ଼ା ଦ୍ୱିତୀୟ ପଦକ୍ଷେପ ।

○ ◑ ●

# ଧର୍ମବିଶ୍ୱାସର ଅନୁଶାସନ—ଏକ ଦୃଷ୍ଟାନ୍ତ

ଗ୍ରାମ୍ୟ ସମାଜର ଆବର୍ଜନାମୟ ଅସାମାଜିକ ବେଷ୍ଟନୀମଧ୍ୟରେ ଉଲ୍ଲିଖିତ ଗ୍ରୀଷ୍ମାବକାଶର ଏତେଗୁଡ଼ାଏ ଦିନ କଟାଇବା ବିଶ୍ୱନାଥଙ୍କୁ ବଡ଼ ଅସ୍ୱସ୍ତିକର ବୋଧ ହେଲା । ପକ୍ଷାନ୍ତରେ, ବ୍ରାହ୍ମଧର୍ମର ପ୍ରବଳ ଆକର୍ଷଣ ତାଙ୍କ ପ୍ରାଣକୁ ଉଦଗ୍ର କରିପକାଇଲା । ତେଣୁ ଉକ୍ତ ଅବକାଶର ମଧ୍ୟଭାଗରେ ସେ ଦିନେ କଟକ ଯାତ୍ରା କଲେ । ସେକାଳରେ ଯାତ୍ରୀବାହୀ ବସ୍ ବା ଟାକ୍‌ସିର ପ୍ରବର୍ତ୍ତନ ହୋଇ ନ ଥାଏ । ପଦବ୍ରଜରେ ପ୍ରାୟ ସାଢ଼େ ତିନି କ୍ରୋଶ ଦୂରବର୍ତ୍ତୀ ଧାନମଣ୍ଡଳ ଷ୍ଟେସନକୁ ଯାଇ ସେଇଠାରୁ ରେଳରେ କଟକ ଆସିବାକୁ ହେଉଥାଏ—ତେଇଶ ମାଇଲର ରେଳରାସ୍ତା, ଭଡ଼ା ପଡ଼ୁଥାଏ ସେସମୟର ମୁଦ୍ରାରେ ପାଞ୍ଚ ଅଣା ବା କୋଡ଼ିଏ ପଇସା । ଚାଲି ଚାଲି ଏକୁଟିଆ ସାତ ମାଇଲ ଯିବା ସୁଖକର ହେବ ନାହିଁ ବୋଲି ବିଶ୍ୱନାଥଙ୍କ ଇଙ୍ଗିତରେ ତାଙ୍କର ଅନୁଯାୟୀ ହେଲେ ବଳଭଦ୍ର ଓ ଉଦୟନାଥ ।

ଗ୍ରାମସୀମା ଅତିକ୍ରମ କଲାପରେ ବିଶ୍ୱନାଥ ବେଦଧର୍ମଉପରେ ପ୍ରତିଷ୍ଠିତ ନବ୍ୟ ବ୍ରାହ୍ମଧର୍ମର ମୌଳିକ ତଥ୍ୟମାନ ପୂର୍ବାପେକ୍ଷା ଅଧିକ ବିଶଦଭାବରେ ବିଶ୍ଳେଷଣପୂର୍ବକ ସାଥୀଦୁହିଁଙ୍କୁ ଅନୁପ୍ରାଣିତ କରିବାକୁ ଲାଗିଲେ । ସେ ଅଖଣ୍ଡ ବିଶ୍ୱାସର ସହିତ କ୍ଷିପ୍ର ପଦକ୍ଷେପରେ ଆଗେ ଆଗେ ଚାଲିଥାନ୍ତି—ଠିକ୍ ପଛେ ପଛେ ଧାଇଁଥାନ୍ତି ବଳଭଦ୍ର; କିନ୍ତୁ ଖଣ୍ଡେ ଦୂର ପଛରେ ଶିଥିଳ ପଦକ୍ଷେପରେ କୁଣ୍ଠିତ ଗତିରେ ଯାଉଥାନ୍ତି ଉଦୟନାଥ ।

କିଛି ସମୟ ଧରି ଉଦୟନାଥଙ୍କ ତୁଣ୍ଡର ଆବାଜ ନ ପାଇବାରୁ ବିଶ୍ୱନାଥ ପଶ୍ଚାତ୍‌କୁ ଅନାଇଲେ ଏବଂ ଉଦୟନାଥ ବହୁତ ପଛରେ ରହିଯାଇଥିବାର ଦେଖି ସେଇଠାରେ ଠିଆ ହୋଇ ରହିଲେ । ତରବର ହୋଇ ଉଦୟନାଥ କିଞ୍ଚିତ୍ ଚଞ୍ଚଳ ଗତିରେ ଯାଇ ତାଙ୍କ ପାଖ ଧରିଲେ । ବିଶ୍ୱନାଥ ତାଙ୍କୁ ପଚାରିଲେ, "ଉଦ, ତୁ ଚାଲିପାରୁ ନାହୁଁ କାହିଁକି ? ମତେ ଫିଟାଇ କହ ।"

ନମ୍ରକଣ୍ଠରେ ଉତ୍ତର ଦେଲେ ଉଦୟନାଥ, "ନନା, ସତକଥା କହୁଛି—ମୁଁ ଏପର୍ଯ୍ୟନ୍ତ ଏକେଶ୍ୱରବାଦ ଓ ବ୍ରାହ୍ମଧର୍ମର ଉପାଦେୟତା ଠିକ୍ ରୂପେ ଉପଲବ୍ଧି କରିପାରିଲି ନାହିଁ, କେବଳ ତୁମର ଅକୃତ୍ରିମ ସ୍ନେହରେ ଅନ୍ଧ ହୋଇ ଯନ୍ତ୍ରପୁତ୍ତଳି ପରି ପଛରେ ଗୁଲିଛି । ଏହାହିଁ ମୋର ଗତିମାନ୍ଦ୍ୟର କାରଣ ।"

ଏହି ହୃଦୟଖୋଲା କଥାତକ ଶୁଣି ଅତି ପ୍ରୀତ ମନରେ ବିଶ୍ୱନାଥ ଉପଦେଶ ଦେଲେ :

"ଉଦି, ଏ କଥାଟି ତୁ ଆଗରୁ କହିଲୁ ନାହିଁ କାହିଁକି ? ତା ଜାଣିଥିଲେ ମୁଁ ତତେ ଆଜ ମୋ ସାଙ୍ଗରେ ଜମା ଆଣି ନ ଥାନ୍ତି । ଯେପର୍ଯ୍ୟନ୍ତ ମନରେ ପୂର୍ଣ୍ଣ ପ୍ରତ୍ୟୟ ନ ଜନ୍ମିଛି, ଯେଉଁ ଆତ୍ମୀୟ ହେଲେ ସୁଦ୍ଧା ତା କଥାରେ ବିଶ୍ୱାସ କରି ଅନ୍ଧାନୁସରଣ କରିବା ଏକାନ୍ତ ଅନୁଚିତ । ଏଭଳି ଅନ୍ଧବିଶ୍ୱାସ ଧର୍ମାନ୍ତରଗ୍ରହଣ ମାତ୍ରର ପରିପନ୍ଥୀ । ଏଣୁ ମୋ କଥା ମାନି ଏହିଠାରୁ ଘରକୁ ଫେରିଯା । ଯଦି ଏକେଶ୍ୱରବାଦରେ କେବେ ବିଶ୍ୱାସ ଆସେ, ତାହେଲେ ସେତେବେଳେ ଏ ନୂଆଧର୍ମରେ ମୋର ସାଥୀ ହେବୁ । କେବଳ ବାହ୍ୟିକ ସମର୍ଥନରେ ସତ୍ୟର ପ୍ରଗ୍ରର ହୁଏ ନାହିଁ—ଅନ୍ତରରେ ପ୍ରକୃତ ଅବବୋଧ ଓ ଉପଲବ୍ଧିହିଁ ସତ୍ୟାଶ୍ରୟର ମୂଳମନ୍ତ୍ର ବା ଅନୁଶାସନ । ଏହା ମଧ୍ୟ ଜାଣିରଖ୍, ଧର୍ମବିଶ୍ୱାସ ଜବରଦସ୍ତି କାହାରି ଉପରେ ଲଦିଦିଆଯିବାର ବସ୍ତୁ ନୁହେଁ ।"

ଓଁ ଓ ୨

# ନବଧର୍ମ ଦୀକ୍ଷା

ଅଗ୍ନିବର୍ଷୀ ଗ୍ରୀଷ୍ମଦେବତାର ପ୍ରଚଣ୍ଡ ରୌଦ୍ରଜ୍ୱାଳା କ୍ରମଶଃ ମନ୍ଦୀଭୂତ ହୋଇଆସିବା ସଙ୍ଗେ ସଙ୍ଗେ ବିଦ୍ୟୁନ୍ମାଳିନୀ ବର୍ଷାଦେବୀ ମେଘମେଦୁର ଆକାଶମଞ୍ଚରୁ ଧୀରେ ଧୀରେ ଓହ୍ଲାଇଆସିଲେ । ତପ୍ତଶ୍ୱାସିନୀ ଧରଣୀର ବିଦଗ୍ଧ ବକ୍ଷ ଶାନ୍ତ ଶୀତଳ ହେଲା ଆଦ୍ୟ ଆଷାଢ଼ର ନବଜଳବର୍ଷଣରେ । ତୃଷ୍ଣା-ପ୍ରଶମକ, ଶାନ୍ତି-ପ୍ରଲେପକ ସେହି ଆଷାଢ଼ ମାସରେ ସତେ ଯେପରି ଧର୍ମଯୋଦ୍ଧା ବିଶ୍ୱନାଥଙ୍କ ଉପରେ ପରମକାରୁଣିକ ପରମେଶ୍ୱରଙ୍କ ଆଶୀର୍ବାଦ-ବାରି ବର୍ଷିତ ହେଲା—ତାଙ୍କ ଏକାନ୍ତ ଅନୁଗାମୀ ଲୋକନାଥ, ଭୋଳାନାଥ ଓ ଅନ୍ୟ କେତେକ ସତ୍‌ଧର୍ମୀ ଯୁବକବନ୍ଧୁ ହିନ୍ଦୁତ୍ୱର ବାହ୍ୟ ପ୍ରତୀକ ପଇତା ଓ ମାଳି ଫିଙ୍ଗିଦେଇ କଟକରେ ବ୍ରାହ୍ମଧର୍ମ ଗ୍ରହଣ କଲେ । ଏହା ହେଲା ବିଶ୍ୱନାଥଙ୍କ ଜୀବନ-ଯୁଦ୍ଧର ଆଦିପର୍ବ ଓ ଧର୍ମ-ଅଭିଯାନରେ ଆଦ୍ୟ ବିଜୟ ।

ନିଜେ ବିଶ୍ୱନାଥ କିନ୍ତୁ ସେମାନଙ୍କ ସହିତ ସେତେବେଳେ ଧର୍ମାନ୍ତରରେ ଦୀକ୍ଷିତ ହୋଇପାରିଲେ ନାହିଁ; କାରଣ ପ୍ରଧାନଶିକ୍ଷକର ଦାୟିତ୍ୱ-ବୋଝରୁ ସେପର୍ଯ୍ୟନ୍ତ ମୁକ୍ତି ପାଇ ନ ଥାନ୍ତି ସେ । ଏଣୁ ତାଙ୍କୁ କଟକରୁ କର୍ମକ୍ଷେତ୍ରକୁ ଅଗତ୍ୟା ପ୍ରତ୍ୟାବର୍ତ୍ତନ କରିବାକୁ ହେଲା । ସେ ବିଦ୍ୟାଳୟରେ ପହଞ୍ଚିବାପୂର୍ବରୁ ଏହି ଗୃହଶିକ୍ଷକର ଧର୍ମାନ୍ତରଗ୍ରହଣ ବାର୍ତ୍ତା ସେଠାରେ ତଥା ମୂଳବସନ୍ତ ଓ ତତ୍‌ପାର୍ଶ୍ୱବର୍ତ୍ତୀ ଅଞ୍ଚଳଯାକରେ ପହଞ୍ଚିଯାଇ ଘୃଣିଆଡ଼େ ଚହଳ ପକାଇଦେଇଥାଏ । ବିକ୍ଷୁବ୍ଧ ବାୟୁମଣ୍ଡଳ ବିଷାକ୍ତ ହୋଇଉଠିଥାଏ ଅଶାନ୍ତ ଝଞ୍ଜାର ଘୋର ଆବର୍ତ୍ତରେ ।

ସଂଗ୍ରାମୀର ଜୀବନ ପରିଣାମରେ ସୁଖାବହ ହେଲେହେଁ ସ୍ତରେ ସ୍ତରେ ବିଘ୍ନ-ବ୍ୟାଘାତ-ପ୍ରତିବନ୍ଧମୟ । ନିର୍ଯ୍ୟାତନ-ଅପମାନ-ଅପବାଦ-ଉପହାସ ଆଦିକୁ ଅଙ୍ଗଭୂଷଣ କରି ନ ପାରିଲେ, ପ୍ରତିରୋଧ-ପ୍ରତିଘାତର ଝଡ଼ଝଞ୍ଜାକୁ ଅତିକ୍ରମ

କରିବାର ପ୍ରଚଣ୍ଡ ନୈତିକ ସାହସ ନ ରଖିଲେ ସଂଗ୍ରାମରେ ଜୟଲାଭ କରିବା ବା ଲକ୍ଷ୍ୟସ୍ଥଳରେ ଉପନୀତ ହେବା ଯେ କଠିନ ହୋଇପଡ଼େ, ଏ ବିଷୟରେ ବିଶ୍ୱନାଥ ଥିଲେ ସଂପୂର୍ଣ୍ଣ ଅବହିତ । ତେଣୁ ଲାଞ୍ଛନା-ଲୋକନିନ୍ଦା, ଈର୍ଷ୍ୟା-ବିଦ୍ୱେଷ, ବ୍ୟଙ୍ଗ-ବିଦ୍ରୂପପ୍ରତି ଭ୍ରୂକ୍ଷେପ ନ କରି ସ୍ୱୀୟ ସଂକଳ୍ପିତ ପଥରେ ସେ ଆଗେଇ-ଚାଲିଥାନ୍ତି ନିର୍ଭୀକ ବୀରପ୍ରାୟ । ଏହି ସମୟରେ ଅନ୍ତରମଧ୍ୟରୁ ଆଗତ କାହାର ଏକ ନୀରବ ଆହ୍ୱାନରେ ମନ ତାଙ୍କର ଅଥୟ ହୋଇଉଠିଲା । ଏଣିକି ସ୍କୁଲ-ଜଞ୍ଜାଳ ତାଙ୍କୁ ରଗଡ଼ା ଶିଳାବୋଝ ପରି ବଡ଼ ଦୁର୍ବହ ବୋଧ ହେଲା । ସେ କାଳବିଳମ୍ବ ନ କରି ସ୍କୁଲର ସେକ୍ରେଟରିଙ୍କୁ ନିଜର ଦାୟିତ୍ୱ ବୁଝାଇଦେଇ ଆଶ୍ୱସ୍ତିର ଶ୍ୱାସ ତ୍ୟାଗ କଲେ ଏବଂ ଗ୍ରାମ ବାଟ ଦେଇ କଟକ ଚାଲିଆସିଲେ । ମିସନ୍ ସ୍କୁଲ କର୍ତ୍ତୃପକ୍ଷଙ୍କ ଅନୁରୋଧରେ ବିଶ୍ୱନାଥ ଉକ୍ତ ବିଦ୍ୟାଳୟର ସହକାରୀ ଶିକ୍ଷକଭାବରେ ଅଳ୍ପ ସମୟ କାର୍ଯ୍ୟ କଲେ । ସେହି ସମୟରେ ସେ ଉପବୀତକୁ ଭସ୍ମୀଭୂତ କରି ମନସ୍କାମ୍ୟ ବ୍ରାହ୍ମଧର୍ମରେ ଦୀକ୍ଷିତ ହେଲେ ।

ସେହି ଦିନଠାରୁହିଁ ବିଶ୍ୱନାଥଙ୍କର କର୍ମମୟ ନବଜୀବନର ଆରମ୍ଭ । ବହୁ ମହତ୍ତର କର୍ମସଂପାଦନପାଇଁ ତାଙ୍କ ଜୀବନ ଉଦ୍ଦିଷ୍ଟ ଥିଲା—ମଫସଲର ସଂକୀର୍ଣ୍ଣ ଗଣ୍ଡିମଧ୍ୟରେ ତାଙ୍କୁ ଆବଦ୍ଧ କରି ରଖିବା ସ୍ରଷ୍ଟାର ବୋଧ ହୁଏ ଅଭିପ୍ରେତ ନ ଥିଲା । ଏଣୁ ମନସ୍ୱୀ ବିଶ୍ୱନାଥ କଟକକୁ ନିଜର ସ୍ଥାୟୀ କର୍ମକ୍ଷେତ୍ର କରିବାକୁ ଚୂଡ଼ାନ୍ତ ନିଷ୍ପତ୍ତି ନେଲେ—ବିପୁଳା ପୃଥ୍ୱୀର ଆଲୋକୋଜ୍ଜ୍ୱଳ ମୁକ୍ତାଙ୍ଗନରେ ନିର୍ମୋକନିର୍ମୁକ୍ତ ଭୁଜଙ୍ଗପ୍ରାୟ ଅବାଧ ବିଚରଣ କରିବାପାଇଁ ।



# କଟକରେ ପ୍ରଧାନଶିକ୍ଷକତା

ନବଦୀକ୍ଷା ଗ୍ରହଣପରେ କର୍ମପ୍ରାଣ ବିଶ୍ୱନାଥ ବ୍ରାହ୍ମସମାଜ ସହିତ ନିଜକୁ ଓତପ୍ରୋତଭାବରେ ଜଡ଼ିତ କରି ତାର ସର୍ବବିଧ କାର୍ଯ୍ୟସଂପାଦନରେ ଲାଗିପଡ଼ିଲେ । ଏହାଦ୍ୱାରା ଭକ୍ତକବି ମଧୁସୂଦନଙ୍କର ପୂର୍ବ ସ୍ନେହସଂପର୍କ ଆହୁରି ଘନୀଭୂତ ଓ ନିବିଡ଼ ହୋଇଗଲା । ସେତେବେଳେ ମଧୁସୂଦନଙ୍କ ପ୍ରତିଷ୍ଠିତ 'ଟାଉନ୍ ସ୍କୁଲ୍' କଟକରେ ଏକ ଆଦର୍ଶ ମାଇନର ସ୍କୁଲର ଖ୍ୟାତି ଅର୍ଜନ କରିଥାଏ । ଲାଲବାଗର କମିସନର୍ କୋଠି ସମ୍ମୁଖସ୍ଥ ଟାଉନ୍ ପୋଲିସ ଥାନାର ସମୀପବର୍ତ୍ତୀ ଦର୍ପଣିରାଜାଙ୍କ ଏକ କୋଠାରେ ତାହା ଅବସ୍ଥାପିତ ଥିଲା । ମଧୁସୂଦନ ଏବେ ନାମମାତ୍ର ବେତନରେ ବିଶ୍ୱନାଥଙ୍କୁ ସେହି ସ୍କୁଲର ପ୍ରଧାନଶିକ୍ଷକରୂପେ ନିଯୁକ୍ତ କରି ତାଙ୍କର କର୍ମପରିସରକୁ ଅଧିକ ପ୍ରସାରିତ କରିଦେଲେ । ବୋଲିବା ବାହୁଲ୍ୟ ଯେ, ଅଳ୍ପ ସମୟମଧ୍ୟରେ ବିଶ୍ୱନାଥଙ୍କ ସୁଦକ୍ଷ ଶିକ୍ଷାଦାନ ଓ ସୁଶୃଙ୍ଖଳ ପରିଚାଳନାଫଳରେ 'ଟାଉନ୍ ସ୍କୁଲ୍' ଶିକ୍ଷାକ୍ଷେତ୍ରରେ ଅଶେଷ ଗୌରବର ଅଧିକାରୀ ହୋଇପାରିଲା ।

ପରବର୍ତ୍ତୀ କାଳରେ ଏହି କ୍ରମବର୍ଦ୍ଧିଷ୍ଣୁ ବିଦ୍ୟାପୀଠଟି ଉଚ୍ଚତର ସ୍ତରକୁ ଉନ୍ନୀତ ହୋଇ 'ଟାଉନ୍ ଭିକ୍ଟୋରିଆ ହାଇସ୍କୁଲ୍' ନାମରେ ଅନ୍ୟତ୍ର ସ୍ଥାପିତ ହେଲା । ସେତେବେଳକୁ ଅବଶ୍ୟ ଓଡ଼ିଆଜାତି ଓ ଓଡ଼ିଆସାହିତ୍ୟର ସର୍ବାଙ୍ଗୀଣ ସେବାରେ ସଂକଳ୍ପିତଚିତ୍ତ ବିଶ୍ୱନାଥ ନିଜର ସ୍ୱତନ୍ତ୍ର ସଂସ୍ଥା ଗଢ଼ିବା ଉଦ୍ଦେଶ୍ୟରେ ପ୍ରଧାନଶିକ୍ଷକତା କାର୍ଯ୍ୟରୁ ସ୍ୱେଚ୍ଛାକ୍ରମେ ବିଦାୟ ନେଇସାରିଥିଲେ । ଶତ ଶତ ଖ୍ୟାତିସଂପନ୍ନ କୃତୀ ଛାତ୍ରର ଜନୟିତ୍ରୀ ସେହି ଟାଉନ୍ ଭିକ୍ଟୋରିଆ ହାଇସ୍କୁଲ ସ୍ୱାଧୀନତୋତ୍ତର ଯୁଗରେ 'ଭକ୍ତମଧୁ ବିଦ୍ୟାପୀଠ' ନାମ ଧାରଣ କରି ତାର ସ୍ଥାପୟିତା ଅମରାତ୍ମା ମଧୁସୂଦନ ରାଓଙ୍କର ପୁଣ୍ୟ ଯଶୋଗାଥା ଏବେ ମଧ୍ୟ କୀର୍ତ୍ତନ କରୁଅଛି ।

୦ ● ●

# ଏକ ଶୋକ-ଉଜ୍ଜ୍ୱଳ ସ୍ମୃତି

ଟାଉନ୍ ସ୍କୁଲରେ ନିଯୁକ୍ତି ପାଇଲାପରେ ବିଶ୍ୱନାଥ ଆଲମଗଞ୍ଜ ବଜାରସ୍ଥ ବାଲୁବେଶ୍ୱର ଆଚାର୍ଯ୍ୟଙ୍କ ଗୃହପାର୍ଶ୍ୱବର୍ତ୍ତୀ ଗୋଟିଏ ଖୁଲଘର ଭଡ଼ା ନେଲେ ଏବଂ ଭାଇଦୁହିଙ୍କ ସହିତ ସେହିଠାରେ ଉଚ୍ଚ ସଂଯତ ମାର୍ଜିତ ରୁଚିରେ ଜୀବନ ଅତିବାହିତ କରିବାକୁ ଲାଗିଲେ । ଦେଖୁଁ ଦେଖୁଁ ଦୁଇ ବର୍ଷ ଗଡ଼ିଗଲା । ୧୮୯୯ରେ ଲୋକନାଥ ଡାକ୍ତରି ପାସ୍ କରି ରୁକରିର ନିଯୁକ୍ତିପତ୍ର ପାଇଲେ ଏବଂ ଭୋଳାନାଥ ମଧ୍ୟ ବୃତ୍ତିଲାଭସହ ପ୍ରଥମ ଶ୍ରେଣୀରେ ଏଣ୍ଟ୍ରାନ୍ସ୍ ପାସ୍ କଲେ । ଭାଇଦୁହିଙ୍କର ଯୋଗ୍ୟତାପୂର୍ଣ୍ଣ କୃତିତ୍ୱ ବିଶ୍ୱନାଥଙ୍କ ପ୍ରାଣରେ କେତେ ନବନବ ଆଶାର ସଂଚାର କଲା; ମାତ୍ର ଦିନ କେତୋଟା ଯାଇଛି କି ନାହିଁ, ନିୟତିର ଖର ନିଃଶ୍ୱାସ ସେସବୁର ଭବିଷ୍ୟ ଆଶାକୁ ସହସା ପୋଡ଼ିଜାଳିଦେଇ ବିଶ୍ୱନାଥଙ୍କ ହୃଦୟରେ ହତାଶାର ହୁତାଶନ ଜଳାଇଦେଲା । ଭୋଳାନାଥ କଲେଜରେ ନାମ ଲେଖାଇବାକୁ ପ୍ରସ୍ତୁତ ହେଉଥିବାବେଳେ ଅକସ୍ମାତ୍ ଉଦରଯନ୍ତ୍ରଣାରେ ପୀଡ଼ିତ ହୋଇ ଏବଂ ଲୋକନାଥ ରୁକରିରେ ଯୋଗ ଦେବାପାଇଁ ଯାଜପୁରରେ ପହଞ୍ଚିବାର ଠିକ୍ ପରଦିନ ଅଗ୍ନିକ ବିସୂଚିକା ରୋଗର ଗ୍ରାସରେ ପଡ଼ି ଆଗ ପଛ ହୋଇ ଇହଧାମ ଛାଡ଼ି ଚାଲିଗଲେ ।

ଗୋଟିଏ ସ୍ଥିର ଲକ୍ଷ୍ୟରେ ଓ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ ତିନି ଭାଇ ଏକାଠି ଏକା ବାଟରେ ଚାଲିଥିଲେ ପାଦକୁ ପାଦ ମିଳାଇ । ଖଣ୍ଡେ ବାଟମାତ୍ର ଯାଇଛନ୍ତି କି ନାହିଁ, ନିଷ୍ଠୁର ନିୟତି ଝିମିଟକେ ସାନଦିହିଙ୍କି ଝାମ୍ପିନେଇ ବଡ଼ଭାଇକି ସେହି ନିର୍ଘଟ ନିକାଞ୍ଚନ ରାସ୍ତାରେ ଏକା କରି ଛାଡ଼ିଦେଲା ନିର୍ଦ୍ଦୋଳ କରିଦେଇ । ନିଃସଙ୍ଗ ନିଃସହାୟ ବିଶ୍ୱନାଥଙ୍କୁ ଚତୁର୍ଦ୍ଦିଗ ଅନ୍ଧାର ଦିଶିଲା । ମନେ ହେଲା, ଧନୁର୍ଦ୍ଧର ପ୍ରାଣପ୍ରିୟ ଦୁଇ ଭାଇଙ୍କ ଅକାଳ-ବିୟୋଗରେ ତାଙ୍କର ଦୁଇ ବାହା ଯେପରି ଛିଣ୍ଡିପଡ଼ିଲା । ଭ୍ରାତୃହରା ଦୁର୍ବଳ ଜୀବନ ଏଣିକି ଦୁଃସହ ବୋଧ

ସଚ୍ଚିଦାନନ୍ଦ

ହେଲା । ତେଣେ ସମଗ୍ର ପରିବାରଟି ଶୋକରେ ଅଧୀର ଓ ମ୍ରିୟମାଣ ହୋଇ ହାହାକାର କରିବାକୁ ଲାଗିଲା । କିଏ କାହାକୁ ସାନ୍ତ୍ୱନା ଦେଇ ଶାନ୍ତ କରିବ ? ଏ ଦାରୁଣ ଦୁର୍ବିପାକବେଳେ କରୁଣାନିଧାନ ସେହି ମଙ୍ଗଳମୟ ସଙ୍କଟନାଶନଙ୍କ ବ୍ୟତୀତ କିଏ ଆଉ ଆଶ୍ରୟ ? ବ୍ୟଥିତ ବିଶ୍ୱନାଥ ନିଜର 'ବିବିଧ ପ୍ରବନ୍ଧ' ପୁସ୍ତକଟିକୁ ଏହି 'ପ୍ରାଣପ୍ରିୟ ସ୍ୱର୍ଗୀୟ ସହୋଦର ଲୋକନାଥ ଓ ଭୋଳାନାଥ'ଙ୍କୁ ଉତ୍ସର୍ଗ କରି ତାଙ୍କ ଦରମୁକୁଳିତ ଅମୂଲ୍ୟ ଜୀବନର ଯଥାର୍ଥ ସ୍ମୃତିରକ୍ଷା କରିଛନ୍ତି ।

ବିଶ୍ୱନାଥ ଭଗ୍ନବଳ, ଭଗ୍ନହୃଦୟ ଓ ଭଗ୍ନୋତ୍ସାହ ହୋଇଗଲେ ମଧ୍ୟ ତାଙ୍କର ଭଗବଦ୍‌ବିଶ୍ୱାସରେ ଅଣୁମାତ୍ର ହ୍ରସ୍ୱତା ଆସିଲା ନାହିଁ । ବିଭଗ୍ନ ସ୍ୱାସ୍ଥ୍ୟରେ ଦୀର୍ଘ କାଳ ଯନ୍ତ୍ରଣା ଭୋଗିଲେହେଁ ପ୍ରତ୍ୟହ ଅମୃତାଳୟ ପରଂବ୍ରହ୍ମଙ୍କୁ ବିକଳ-ଚିତ୍ତରେ ପ୍ରାର୍ଥନା କରୁଥାନ୍ତି । ତାଙ୍କର କୃପାରୁ ପ୍ରାୟ ଦୁଇ ବର୍ଷପରେ ବିଶ୍ୱନାଥଙ୍କର ପୂର୍ବ ସ୍ୱାସ୍ଥ୍ୟ ଫେରିଆସିଲା । ପୁଣି ସେ ନବବଳ ନବୋତ୍ସାହରେ ସ୍ୱୀୟ କର୍ମପଥରେ ଅଗ୍ରସର ହେଲେ ।



# କଟକରେ ସସ୍ତ୍ରୀକ ନିବାସ : କନ୍ୟାଜନ୍ମ

ଏହି ସମୟରେ ବିଶ୍ୱନାଥ ଏକ ବିଷମ ପରୀକ୍ଷାର ସମ୍ମୁଖୀନ ହେଲେ । ହିନ୍ଦୁଧର୍ମତ୍ୟାଗ ସଙ୍ଗେ ଗ୍ରାମ ମଧ୍ୟ ତ୍ୟାଗ କରିବାକୁ ପଡ଼ିଥିବାରୁ ତାଙ୍କର ନିରକ୍ଷରା ହିନ୍ଦୁପତ୍ନୀ ନବଜାତ ଶିଶୁସନ୍ତାନଟି ସହିତ ସେହି ଗ୍ରାମରେ ରହିଗଲେ । ଏଣୁ କଟକର କେତେକ ବ୍ରାହ୍ମମୁଖ୍ୟଙ୍କର ମତ ହେଲା—ନବ୍ୟଶିକ୍ଷିତା ବ୍ରାହ୍ମକନ୍ୟାଟିଏ ବିବାହ କରିବା ବିଶ୍ୱନାଥ ବାବୁଙ୍କ ପକ୍ଷରେ ବିଧେୟ ଓ ଶ୍ରେୟସ୍କର ହେବ । ଏତଦନୁଯାୟୀ ଜଣେ ବର୍ଷୀୟାନ୍ ନିର୍ଦ୍ଦିଷ୍ଟ ପ୍ରସ୍ତାବଟିଏ ବହନ କରି ବିଶ୍ୱନାଥଙ୍କ ନିକଟରେ ଉପସ୍ଥିତ ହେଲେ । ପ୍ରସ୍ତାବଟି ଆପାତଲୋଭନୀୟ ହୋଇଥିବାରୁ ଅନ୍ୟ ଯେକୌଣସି ନବଦୀକ୍ଷିତ ତରଳମନା ଯୁବକ ତାହା ସାଦରେ ଗ୍ରହଣ କରିନେଇଥାନ୍ତା; ମାତ୍ର ସଂସ୍କାରର ପ୍ରକୃତ ମର୍ମଜ୍ଞ ବିଶ୍ୱନାଥ ପ୍ରସ୍ତାବଟିକୁ ସଙ୍ଗେ ସଙ୍ଗେ ପ୍ରତ୍ୟାଖ୍ୟାନ କରିଦେଇ ପ୍ରସ୍ତାବବାହକଙ୍କୁ କହିଲେ :

"ମୋର ପତ୍ନୀ ନିରକ୍ଷରା ସତ, କିନ୍ତୁ ସେ ମୋର ବିବାହିତା ଧର୍ମପତ୍ନୀ—ସହଧର୍ମିଣୀ । ସହଧର୍ମିଣୀ ଜୀବିତ ଥାଉ ଥାଉ ଜଣେ ସମଧର୍ମିଣୀଙ୍କୁ ପୁଣି ପତ୍ନୀରୂପେ ଗ୍ରହଣ କରିବା ଧର୍ମଦୃଷ୍ଟିରୁ ଯେତିକି ଅବିଧେୟ, ତତୋଽଧିକ ବିବେକବିରୁଦ୍ଧ । ଏହାଦ୍ୱାରା ସଂସ୍କାରର ପ୍ରବର୍ତ୍ତନ ହେବା ପରିବର୍ତ୍ତେ ସମାଜ-ଜୀବନରେ ବିଶୃଙ୍ଖଳାର ବିସ୍ତାର ହେବ, ଯାହା ମୋ ବିଚାରରେ ଏକ ସଂସ୍କାରିତ କୁସଂସ୍କାର । ପୁନଶ୍ଚ, ଏପରି ବିବାହ ମୋ ଧର୍ମପତ୍ନୀଙ୍କୁ ଆଜୀବନ କୁସଂସ୍କାରର ଅନ୍ଧକାରରେ ବୁଡ଼ାଇରଖି ମୋର ସଂସ୍କାରମୁଖୀ ଜୀବନରେ ପଶ୍ଚାଦ୍‌ଗତିକୁହିଁ ଆବାହନ କରିଆଣିବ । ଅପର ପକ୍ଷରେ, ମୁଁ ଯଦି ମୋର ସହଧର୍ମିଣୀଙ୍କୁ ସମଧର୍ମିଣୀର ଦୀକ୍ଷା ଦେଇ ସଂସ୍କାରସଂପନ୍ନା ସହକର୍ମିଣୀରେ ପରିଣତ କରିପାରେଁ, ତାହାହେଲେ ବ୍ରାହ୍ମଧର୍ମର ସାଧୁ ପ୍ରସାରରେ, ଇଚ୍ଛେ ହେଉ ପଛକେ, ଅଗ୍ରଗତି ସାଧିତ ହେବ ନାହିଁ କି ?"

ଅଣରିଚ୍ଛନ୍ଦ

ବର୍ଷୀୟାନ୍ ପ୍ରସ୍ତାବବାହକଙ୍କର ପରିଣତ ଶୁକ୍ଳକେଶ ଯୁବକ ବିଶ୍ୱନାଥଙ୍କର ଭ୍ରମରନିନ୍ଦୀ କଳାକେଶ ନିକଟରେ ପରାଜୟ ସ୍ୱୀକାର କରି ଗୌରବ ଅନୁଭବ କଲା । ଏହା ସ୍ଥିତପ୍ରଜ୍ଞ ମଧୁସୂଦନଙ୍କ କର୍ଣ୍ଣଗତ ହେବାରେ ବେଶୀ ବିଳମ୍ବ ଘଟିଲା ନାହିଁ । ବିଶ୍ୱନାଥଙ୍କ ଜ୍ଞାନଗର୍ଭିତ ଯୁକ୍ତିଯୁକ୍ତ ବକ୍ତବ୍ୟରୁ ଦୂରଦର୍ଶିତାର ସ୍ପଷ୍ଟ ପରିଚୟ ପାଇ ସେ ନିରତିଶୟ ପ୍ରୀତି ଲାଭ କଲେ । ଅନୁସନ୍ଧାନୀ କହିବେ, ମଧୁସୂଦନଙ୍କ 'ନୀତିରତ୍ନମାଳା'ର ରଚନାକାଳ, ବିଶେଷତଃ ପ୍ରକାଶକାଳ କେବେ । ତଥାପି ମନେ ହୁଏ, ଏହି ନୀତିମୂଳକ ଘଟଣାଟିର ସ୍ମୃତିରୁ ଅନୁପ୍ରେରଣାହିଁ ତାଙ୍କ ଲେଖନୀକୁ ରସଦ ଯୋଗାଇଥିବ ସେହି 'ମାଳା'ର ଅଙ୍ଗୀଭୂତ ନିମ୍ନ ପଙ୍କ୍ତିଦ୍ୱୟ ରଚନା କରିବାପାଇଁ :

"ନୁହେଁ ବୃଦ୍ଧ ସେହି ଜନ ଶୁକ୍ଳକେଶ ଅଟେ ଯାର ଶିର,
ଯୌବନେ ଯେ ଜ୍ଞାନେ ରତ ଦେବେ ତାକୁ ବୋଲନ୍ତି ସ୍ଥବିର ।"

ନାହିଁ ଯଦି ଏହି ଘଟଣାର ପୂର୍ବରୁ 'ନୀତିରତ୍ନମାଳା' ରଚିତ ଓ ପ୍ରକାଶିତ ହୋଇସାରିଥିବ, ତାହାହେଲେ ଉକ୍ତ ସୂକ୍ତିର ସାକ୍ଷାତ୍ ସାକାର ମୂର୍ତ୍ତି ବିଶ୍ୱନାଥଙ୍କପାଇଁ ଗର୍ବ ଅନୁଭବ କରିବା ସଙ୍ଗେ ସଙ୍ଗେ ମଧୁସୂଦନ ନିଜ ରଚନାକୁ ନିଶ୍ଚୟ ଶ୍ଳାଘ୍ୟ ଓ ସାର୍ଥକ ମଣିଥିବେ ।

ବିଭୁଙ୍କ କୃପାରୁ କେତେ ସଙ୍କଟ ଓ ସମସ୍ୟାର ବିଷମ ପରୀକ୍ଷାରୁ ଉତ୍ତୀର୍ଣ୍ଣ ହୋଇ ଏବେ ବିଶ୍ୱନାଥ ପତ୍ନୀଙ୍କୁ କଟକ ଆଣିବାପାଇଁ ଯତ୍ନଶୀଳ ହେଲେ । ଏହି ଉଦ୍ଦେଶ୍ୟରେ ସେ ଯେତେ ଥର ଘରକୁ ଯାଇଛନ୍ତି, ସବୁଥର ବିଫଳକାମ ହୋଇ ଫେରିଆସିବାକୁ ପଡ଼ିଛି । ପତ୍ନୀଙ୍କର ଟିକିଏ ଦର୍ଶନ ମିଳିବାର ସୁଯୋଗ ସୁଦ୍ଧା ଜୁଟି ନାହିଁ । ବିଧର୍ମୀ ବୋଲି ଗ୍ରାମବାସୀଙ୍କ ଡରରେ ପରିବାରର କେହି ତାଙ୍କୁ ଖଞ୍ଜା ମଡ଼ାଇଦେଇ ନାହାନ୍ତି । ବାଡ଼ିର ମଶା-ଭଣଭଣ ଗୁହାଳଘର ହୋଇଥାଏ ବିଶ୍ୱନାଥଙ୍କର ଆଶ୍ରୟସ୍ଥଳ । ସେଇଠି କଦଳୀପତ୍ରର ଖଣ୍ଡିକରେ ତାଙ୍କ ଖାଇବା ବାଢ଼ି ଦିଆଯାଏ—ବାସନକୁସନ ମାରା ହୋଇଯିବ ବୋଲି । ଖିଆ ସରିଲେ ନିଜ ହାତରେ ବିଶ୍ୱନାଥଙ୍କୁ ପତ୍ର ଉଠାଇ ବାଡ଼ିର ଗୋଟାଏ କଣରେ ଫିଙ୍ଗିଦେଇ ଆସିବାକୁ ହୁଏ, ଚୁଲୁଆରେ ପାଣି ପିଇବାକୁ ପଡ଼େ, ଅଇଁଠା ଜାଗା ଗୋବର-ପାଣିରେ ଲିପିବାକୁ ହୁଏ । ବସିବା ଶୋଇବାକୁ ଖଣ୍ଡିଏ ଦରଚିରା ଖଜୁରି ଟାଟେଇ ତାଙ୍କୁ ଦିଆଯାଇଥାଏ । ପ୍ରତିଥର ଅଳୁଆଁ ପାଣ କଣ୍ଡରାଙ୍କଠାରୁ ବଳି ଆହୁରି

ହୀନ ବ୍ୟବହାର ପାଇଥିଲେହେଁ ବିଶ୍ୱନାଥ ସେଥିପାଇଁ କେବେହେଲେ ମନ ଊଣା କରି ନାହାନ୍ତି କି ଅପମାନ ବୋଧ କରି ନାହାନ୍ତି କିଂବା କ୍ରୁଦ୍ଧ ଅଭିମାନରେ ମର୍ମ ଘାରି ନାହାନ୍ତି କି କର୍କରିଳ କରି ନାହାନ୍ତି ।

ଯାହାହେଉ, ଅନେକ ଥରର ବ୍ୟର୍ଥତାପରେ ଶେଷ ଥରର ଉଦ୍ୟମ ସଫଳ ହେଲା । ବିଶ୍ୱନାଥ କୌଣସି ସୂତ୍ରରେ ପତ୍ନୀଙ୍କ ଅନୁକୂଳ ମନୋଭାବ ଅବଗତ ହୋଇ ପିତାଙ୍କୁ ନିଜର ଅଭିଳାଷ ଜଣାଇଲେ । ଦୁଇପୁତ୍ରହରା ଶୋକ-ଜର୍ଜରିତ ପିତା ଏଥର ଆଉ ମନା କରିପାରିଲେ ନାହିଁ । ସୁଖେଦୁଃଖେ-ସଦାଧୀରା ସାଧ୍ୱୀ ବଧୂର ମାୟା ଅଗତ୍ୟା ଛାଡ଼ିବାକୁ ପଡ଼ିଲା ସିନା, ଗୃହହୋଜ୍ଜ୍ୱଳକାରୀ କୁଳାଙ୍କୁର ଶିଶୁପୌତ୍ର ମାୟାଧରକୁ କୋଳଛଡ଼ା କରିବା ତାଙ୍କ ପକ୍ଷରେ ହେଲା ଅସମ୍ଭବ ।

ଗୋଟାଏ ବିଷାଦ-ମଧୁର ଗମ୍ଭୀର ପରିବେଶମଧ୍ୟରେ ବଧୂବିଦାୟର ମଧୁ-ମୁହୂର୍ତ୍ତ ଉପଗତ ହେଲା । ସ୍ୱାମିସହବାସ ଅବଗୁଣ୍ଠିତା ଜାନକୀ ପାଞ୍ଚ ବର୍ଷର ସୌମ୍ୟ ଶିଶୁଟିକୁ ଅଶ୍ରୁପ୍ଲାବିତ ମୁଖରେ ଶ୍ୱଶୁରଙ୍କ ହସ୍ତରେ ଅର୍ପଣ କଲାପରେ ପରିବାରର ପ୍ରତ୍ୟେକଙ୍କଠାରୁ ମେଲାଣି-ଆଶୀର୍ବାଦ ନେଇ ସ୍ୱାମୀଙ୍କର ହେଲେ ଅନୁଗାମିନୀ । ଶ୍ରୀରାମ-ଘରଣୀ ସତୀଶିରୋମଣି ଜାନକୀ ଅଶୋକବନର ବନ୍ଦିନୀ ଅବସ୍ଥାରୁ ବର୍ଷେକପରେ ଉଦ୍ଧାର ପାଇଥିଲା ପରି ଏବେ ବିଶ୍ୱନାଥ-ବନିତା ପତିବ୍ରତା ଜାନକୀ ଶ୍ୱଶୁରାଳୟର ବନ୍ଦିଶାଳାରୁ ଦୀର୍ଘ ପାଞ୍ଚ ବର୍ଷପରେ ମୁକ୍ତିଲାଭ କଲେ ।

ବିଶ୍ୱନାଥଙ୍କର ପରମ ସଖା ଥିଲେ ଡାକ୍ତର ରାମକୃଷ୍ଣ ସାହା । ପତ୍ନୀଙ୍କୁ କଟକ ଆଣିବାପରେ ତାଙ୍କର ହଡ଼ହଡ଼ (ହରିହର) ଘାଟସ୍ଥ ଘରେ ବିଶ୍ୱନାଥ ଏକତ୍ର ଏକାନ୍ନରେ ଅବସ୍ଥାନ କଲେ । ଯୁଗ୍ମ ପରିବାରର ରନ୍ଧନାଦି କାର୍ଯ୍ୟପାଇଁ ଜଣେ ହିନ୍ଦୁ ବ୍ରାହ୍ମଣ ନିଯୁକ୍ତ ହେଲା । ଏହା ୧୮୯୧ ମସିହା ଜୁଲାଇ ବା ତତ୍‌ପର ମାସର କଥା ।

ସେତେବେଳେ ବିଶ୍ୱନାଥ ଟାଉନ୍ ସ୍କୁଲର ପ୍ରଧାନଶିକ୍ଷକତାରୁ ମାସିକ ପଚିଶ ଟଙ୍କା ଭତ୍ତା ପାଉଥିଲେ । ଏହାଛଡ଼ା ଘରୋଇ ଟିଉସନ୍‌ରୁ ଯତ୍‌ସାମାନ୍ୟ ହାତକୁ ଆସୁଥାଏ । ତେଣୁ ସ୍ୱଚ୍ଛନ୍ଦରେ ଚଳିବାପାଇଁ ଅର୍ଥର ବିଶେଷ ଅସଦ୍ଭାବ ଘଟିଲା ନାହିଁ । କେବଳ ଶିକ୍ଷକତା, ଟିଉସନ୍ ଓ ପାରିବାରିକ କାର୍ଯ୍ୟରେ ସେ ସମସ୍ତ ସମୟ ନଷ୍ଟ କରିଦେଉ ନ ଥିଲେ । ପୂର୍ବବତ୍ ବିବିଧ ସଦ୍‌ଗ୍ରନ୍ଥ ଅଧ୍ୟୟନ,

ଏକବିଂଶ

ବ୍ରାହ୍ମସମାଜର ନିୟମିତ କର୍ମନିଷ୍ପାଦନ ଓ ବିଶେଷ କରି ଦୁଇଟି ମାସିକ ପତ୍ରିକାର ସଂପାଦନାଦ୍ୱାରା ସେ ବଳକା ସମୟର ସର୍ବୋତ୍କୃଷ୍ଟ ଉପଯୋଗ କରୁଥିଲେ । ସମୟର ଅଭାବ କେବେ ସେ ଅନୁଭବ କରି ନାହାନ୍ତି କି ଆଜିର କାମ କାଲିକି ରଖିଦେଇ ନାହାନ୍ତି ।

ତାଙ୍କର ଏହି କର୍ମପ୍ରାଣତା ଓ ସାହିତ୍ୟାସକ୍ତି ଅଚିରେ ଶୀର୍ଷସ୍ଥାନାଭିଷିକ୍ତ ରାଧାନାଥ, ମଧୁସୂଦନ, ଫକୀରମୋହନ ପ୍ରଭୃତି ଗୁଣଗ୍ରାହକଙ୍କର ସୁଦୃଷ୍ଟି ଆକର୍ଷଣ କଲା । ସେହିମାନଙ୍କ ଅଯାଚିତ ସହାୟତାରେ କର୍ମବୀର ବିଶ୍ୱନାଥଙ୍କୁ ଅନଧିକ କାଳମଧ୍ୟରେ ଏକ ବିଶାଳ କର୍ମଭୂମିର ତୋରଣଦେଶରେ ନେଇ ଉଭା କରାଇଦେଇଥିଲା ।

ଉନ୍ନତର ଜୀବନ ଗଢ଼ିବାର ଦୁରନ୍ତ ପିପାସା ଏଣିକି ବିଶ୍ୱନାଥଙ୍କୁ ଏପରି କର୍ମପାଗଳ କରିଦେଲା ଯେ, ମାମୁଲି ପାରିବାରିକ କାମ ଅନେକ ସମୟରେ ତାଙ୍କ ନିକଟରେ ଗୌଣ, ବେଳେବେଳେ ମଧ୍ୟ ତୁଚ୍ଛ ବିବେଚିତ ହେଲା । ଗୋଟିଏ ଦୃଷ୍ଟାନ୍ତରୁ ତାଙ୍କ କର୍ତ୍ତବ୍ୟୈକନିଷ୍ଠତାର ପ୍ରକୃଷ୍ଟ ପରିଚୟ ମିଳିପାରିବ । ୧୮୯୨ ସେପ୍ଟେମ୍ବରରେ କଲିକତାର 'ବ୍ରାହ୍ମସମାଜ' କାର୍ଯ୍ୟାଳୟରୁ ବିଶ୍ୱନାଥଙ୍କ ପାଖକୁ ଖଣ୍ଡିଏ ପତ୍ର ଆସିଲା । ପାଟନାରେ ଯେଉଁ ବ୍ରାହ୍ମସମ୍ମିଳନୀ ଅକ୍ଟୋବର ମାସରେ ବସିବାର କଥା, ତାର ପୂର୍ବାୟୋଜନରେ ସହାୟତା କରିବାପାଇଁ ବିଶ୍ୱନାଥଙ୍କର ଉପସ୍ଥିତି ଅପରିହାର୍ଯ୍ୟ ବୋଲି ଚିଠିରେ ଲିଖିତ ଥିଲା । ତେଣୁ କଟକର ସମସ୍ତ କାର୍ଯ୍ୟକ୍ରମ ପଛକୁ ପକାଇ ତୁରନ୍ତ ପାଟନା ଯିବା ଏକାନ୍ତ ଜରୁରୀ ହୋଇଉଠିଲା । ସମ୍ମିଳନୀକାର୍ଯ୍ୟ ସାରି କଟକ ଫେରିବାକୁ ମାସାଧିକ ଲାଗିଯିବା ଅସମ୍ଭବ ନୁହେଁ ।

ପତିଗତପ୍ରାଣା ଜାନକୀ ସେତେବେଳେ ଆସନ୍ନପ୍ରସବା । ଏକ ଦିଗରେ ଆଶୁକର୍ତ୍ତବ୍ୟର ଆହ୍ୱାନ, ଅନ୍ୟ ଦିଗରେ ପତ୍ନୀଙ୍କର ଆସନ୍ନ ପ୍ରସବସଂକଟ । ଚିଦାନନ୍ଦାର୍ପିତଚିତ୍ତ ବିଶ୍ୱନାଥ ପତ୍ନୀଙ୍କ ଭାର ବିଶ୍ୱପିତାଙ୍କଠାରେ ସମର୍ପଣ କରି ଦୂରପଥ-ଯାବାପାଇଁ ପ୍ରସ୍ତୁତ ହୋଇପଡ଼ିଲେ । ଭୟାତୁରା ଜାନକୀ ଏ ଅବସ୍ଥାରେ ତାଙ୍କୁ ଅସହାୟ କରି ଗୃହ ନ ଯିବାକୁ ସାଶ୍ରୁଲୋଚନରେ କେତେ କାକୁତିମିନତି କଲେ । କିନ୍ତୁ ବିଶ୍ୱନାଥ ତାହାଙ୍କୁ ସାନ୍ତ୍ୱନା ଦେଇ କହିଲେ :

"ନିଜକୁ ଅସହାୟ ମନେ କର ନାହିଁ—ଶରଣପଞ୍ଜର ଭଗବାନ୍ ତୁମର ସହାୟ ଅଛନ୍ତି । ଭୟରେ ମନକୁ ଦୁର୍ବଳ କରିପକାଅ ନାହିଁ—

ସର୍ବଭୟହାରୀ ବିଧାତା ତୁମ ମନରେ ବଳ ସଂଗ୍ରହ କରିବେ । ନିଜକୁ କେବେହେଲେ ନିଃସଙ୍ଗ ଭାବ ନାହିଁ—ଅନ୍ତର୍ଯ୍ୟାମୀ ଜଗଦୀଶ୍ୱର ସର୍ବଦା ତୁମ ପାଖେ ପାଖେ ରହିଛନ୍ତି । ଅନ୍ତର ଭରି ତାଙ୍କୁ ଧ୍ୟାନ କର, ଅନାବିଳ ଗଭୀର ବିଶ୍ୱାସର ସହିତ ସର୍ବସଂକଟହର ଅଭୟାଶ୍ରୟ ସେହି ଦୟାମୟଙ୍କ ପାଦପଦ୍ମରେ ନିଜର ସର୍ବସ୍ୱ ଢାଳିଦିଅ । ତାହାହେଲେ ବେଶ୍ ବୁଝିପାରିବ, ମୋର ରହିବା ଓ ନ ରହିବା ଉଭୟ ସମାନ ।”

ପତିଙ୍କର ଏହି ସାନ୍ତ୍ୱନାବାଣୀରେ ଚିନ୍ତମତିକା ଜାନକୀଙ୍କ ମନରୁ ଭୟଭ୍ରାନ୍ତି ଓ ବିପଦବିଭୀଷିକାର ଘନାୟମାନ ଛାୟା ସହସା ଅପସାରିତ ହୋଇଗଲା । ନିଜ କଥା ସଂପୂର୍ଣ୍ଣ ପାସୋରିଦେଇ କଠୋରକର୍ତ୍ତବ୍ୟଶୀଳ ସ୍ୱାମୀଙ୍କର ସୁଦୂର ଯାତ୍ରାକୁ ଶୁଭଙ୍କର କରିବାପାଇଁ ସର୍ବମୟ ବିଭୁଙ୍କ ଚରଣାରବିନ୍ଦରେ କରୁଣ ନିବେଦନ ଜଣାଇ ସାଧ୍ୱୀ ଆଶ୍ୱସ୍ତି ଲାଭ କଲେ ।

୧୮୯୨ ଅକ୍ଟୋବର ୧୨ ତାରିଖ ଦିନ ରତ୍ନଗର୍ଭା ଜାନକୀଙ୍କର କୋଳ ମଣ୍ଡନ କଲା କମନୀୟ-କାନ୍ତିଧରା ଆନନ୍ଦଚନ୍ଦ୍ରମା ପ୍ରଥମା ଦୁହିତା—ବିଶ୍ୱନାଥଙ୍କ ଅଖଣ୍ଡ ଚିନ୍ମୟ ବିଶ୍ୱାସର ମୂର୍ତ୍ତିମନ୍ତ ପ୍ରତିମା । ତାର ଯୋଗେ ସ୍ୱାମୀଙ୍କ ପାଖକୁ କନ୍ୟାଜନ୍ମର ଶୁଭବାର୍ତ୍ତା ଗଲା—‘ମହିମାମୟଙ୍କର ଅପାର ମହିମା, ସବୁ ନିରାପଦ, ସବୁ ନିର୍ବିଘ୍ନ’ । ସେତେବେଳକୁ ସନ୍ଧିଜମିର କାର୍ଯ୍ୟ ଶେଷପ୍ରାୟ । ତେଣୁ ବିଶ୍ୱନାଥଙ୍କ ବିଜୟବାହୁଡ଼ା ହେଲା ଆନନ୍ଦମୟ । ସେହି ପରମ ଆନନ୍ଦମଧ୍ୟରେ ଦୁହିତାର ନାମ ରଖାଗଲା ‘ନର୍ମଦା’—ଡାକନାମ ‘ନମ’ । ବିଶ୍ୱନାଥଙ୍କ ହିତାକାଂକ୍ଷୀମାନେ ଏପରି ନାମକରଣର ମୂଳରେ ଥିବା ତାତ୍ପର୍ଯ୍ୟର ଏକ ଚମତ୍କାର ବିଶ୍ଳେଷଣ କରିଥିଲେ । ବିନ୍ଧ୍ୟଗିରିଶିଳାସ୍ତୂପନିଃସୃତା ନର୍ମଦା ତଟିନୀ ଶସ୍ୟସଂପଦସଂବର୍ଦ୍ଧନ ସଲିଳସମ୍ଭାର ଘେନି ମାଟିମାଆ-କୋଳକୁ ବହିଆସିଲା ପରି ଅମିତୋଦ୍ୟମ ବିଶ୍ୱନାଥଙ୍କ ସମ୍ମୁଖରେ ଅଭାବ-ଅନଟନ, ଦୁଃଖ-ଜଞ୍ଜାଳର ସ୍ତୂପୀକୃତ ଶିଳାରାଶି ଯେତେବେଳେ ପ୍ରବଳ ପ୍ରତିରୋଧ ସୃଷ୍ଟି କରୁଥିଲା, ସେହି ଦୁଃସମୟରେ ପିତାଙ୍କ ସାଫଲ୍ୟର ଶୁଭସନ୍ଦେଶବାହିକା କନ୍ୟାରତ୍ନଟି ଜନ୍ମ ପରିଗ୍ରହ କରିଥିବାରୁ ତାର ସଂକେତଧର୍ମୀ ଏହି ‘ନର୍ମଦା’ ନାମଟି ସର୍ବଥା ଯଥାର୍ଥ ଓ ସାର୍ଥ ।

● ● ●

# ବ୍ରାହ୍ମଧର୍ମବିରୋଧରେ
# ଗ୍ରାମ୍ୟ ସମାଜଗୋଷ୍ଠୀର ଉଗ୍ର ପ୍ରତିକ୍ରିୟା

## ନନ୍ଦକିଶୋର ଓ ବଳଭଦ୍ରଙ୍କର ବ୍ରାହ୍ମଦୀକ୍ଷା ଗ୍ରହଣ

ଏଠାରେ ନନ୍ଦକିଶୋରଙ୍କ ପଠନ୍ତକାଳୀନ ଧର୍ମବିଶ୍ୱାସ ପ୍ରଥମେ ଉଲ୍ଲେଖନୀୟ । ମୂଳବସନ୍ତର ନିକଟବର୍ତ୍ତୀ କୁସୁପୁର ଗ୍ରାମ ନନ୍ଦକିଶୋରଙ୍କର ପୈତୃକ ଜନ୍ମସ୍ଥାନ । ତାଙ୍କର ମୂଳ ନାମ ଥିଲା ରସାନନ୍ଦ ଜେନା । ପାଞ୍ଚ ମାଇଲ ଦୂରସ୍ଥ ଆଲମଗିର ଗଡ଼ର 'ବଳ' ବଂଶୀୟ ଜମିଦାରଙ୍କ ଗୃହକୁ ଶୈଶବରେ ପୋଷ୍ୟପୁତ୍ର ହୋଇଯିବାଫଳରେ ତାଙ୍କର ପରିବର୍ତ୍ତିତ ନାମ ହେଲା ନନ୍ଦକିଶୋର ବଳ । ସେ ପନ୍ଦର ବର୍ଷ ବୟସରେ ଅପର ପ୍ରାଇମେରୀ ପରୀକ୍ଷାରେ ବୃତ୍ତି ଲଭ କରି ୧୮୯୦ ମସିହାରେ କଟକ ଆସିଥିଲେ । ବିଶ୍ୱନାଥ ଟାଉନ୍ ସ୍କୁଲର ପ୍ରଧାନଶିକ୍ଷକ ଥିବାରୁ ନନ୍ଦକିଶୋର ସେହିଠାରେ ନାମ ଲେଖାଇ ମାଇନର ପଢ଼ିଲେ ଏବଂ ନିଜର ମେଧାବତ୍ତ୍ୱ ଯୋଗୁଁ ଅଳ୍ପ କେତୋଟି ଦିନମଧ୍ୟରେ ବିଶ୍ୱନାଥଙ୍କର ପରମପ୍ରିୟ ଓ ସ୍ନେହଭାଜନ ହୋଇଉଠିଥିଲେ । ଗୁରୁଙ୍କର ଶୁଚି-ଶୁଦ୍ଧ ବ୍ରାହ୍ମନିଷ୍ଠା ଓ ଆଦର୍ଶ ମତିମତି କ୍ରମେ ନନ୍ଦକିଶୋରଙ୍କ ହୃଦୟରେ ଗଭୀର ରେଖାପାତ କଲା । ଏହାଫଳରେ ନନ୍ଦକିଶୋରଙ୍କର ଧର୍ମଧାରଣାର ଦିଗ ସଂପୂର୍ଣ୍ଣ ପରିବର୍ତ୍ତିତ ହୋଇଗଲା । ସେ ବ୍ରାହ୍ମଧର୍ମର ମତିପ୍ରତି ଆକୃଷ୍ଟ ହୋଇ 'ବ୍ରାହ୍ମସମାଜ'କୁ ପ୍ରାୟ ପ୍ରତ୍ୟହ ଯିବାକୁ ଲଗିଲେ ।

ଏହି ଧର୍ମାନୁରାଗ କିନ୍ତୁ ନନ୍ଦକିଶୋରଙ୍କ ବିଦ୍ୟାନୁରାଗରେ ଆଦୌ ଆଞ୍ଚ ଆଣି ନ ଥିଲା । ସର୍ବୋତ୍ତମ ସ୍ଥାନର ଗୌରବ ସହ ମାଇନର ଉତ୍ତୀର୍ଣ୍ଣ ହୋଇ ସେ ଏକସଙ୍ଗେ ଦୁଇଟି ବୃତ୍ତି ଲଭ କଲେ । ଟାଉନ୍ ସ୍କୁଲ ସେତେବେଳକୁ ଉଚ୍ଚଇଂରାଜୀ ବିଦ୍ୟାଳୟରେ ପରିଣତ ହୋଇ ନ ଥିବାରୁ ତାଙ୍କୁ ୧୮୯୨ ମସିହାରେ କଲେଜିଏଟ୍ ସ୍କୁଲରେ ନାମ ଲେଖାଇବାକୁ ହେଲା । ସେଠାରେ ହେଡ୍‌ମାଷ୍ଟରଙ୍କର

ଥାଆନ୍ତି ବିଶ୍ୱନାଥଙ୍କ ଧର୍ମଗୁରୁ ପୂଜ୍ୟପାଦ ମଧୁସୂଦନ ରାଓ । ତାଙ୍କର ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିବାଫଳରେ ନନ୍ଦକିଶୋରଙ୍କର ବ୍ରାହ୍ମଧର୍ମାସକ୍ତି ପ୍ରବଳଭାବରେ ଉଦ୍ଦୀପିତ ହେଲା । ସେ ମୂଳବସନ୍ତ ଶାସନର ଅଧିବାସୀ କଲେଜ-ଅଧ୍ୟାୟୀ ବଳଭଦ୍ର କରଙ୍କୁ ସହପ୍ରାଣିତ କରି ଏକସଙ୍ଗେ ବ୍ରାହ୍ମଦୀକ୍ଷା ଗ୍ରହଣ କଲେ ।

## ଧର୍ମତ୍ୟାଗୀଦ୍ୱୟଙ୍କୁ ସ୍ୱଧର୍ମକୁ ଫେରାଇଆଣିବାରେ କୋଠପଦା ମଠ ମହନ୍ତଙ୍କ ଗୁରୁତ୍ୱପୂର୍ଣ୍ଣ ଭୂମିକା

କୁସୁପୁର ଓ ମୂଳବସନ୍ତରେ ଏହି ଦୁଃଖଦାୟକ ସମ୍ବାଦ ପ୍ରଚାରିତ ହୋଇଯିବାମାତ୍ରେ ଉଭୟ ଗ୍ରାମର ରକ୍ଷଣଶୀଳ ଅଧିବାସୀମାନେ ସଂଘବଦ୍ଧ ଭାବରେ କୋଠପଦା ମଠାଧିକାରୀ ମହନ୍ତ ମହାରାଜ ରଘୁନାଥ ପୁରୀ ଗୋସ୍ୱାମୀଙ୍କ ନିକଟକୁ ଯାଇ ଏହି ଧର୍ମସଙ୍କଟର ପ୍ରତିକାରପାଇଁ ନିବେଦନ କଲେ । ମହନ୍ତ ମହୋଦୟ ଜଣେ ସ୍ୱଧର୍ମରକ୍ଷକ ଓ ସଦାଚାରୀ ପୁରୁଷ ଥିଲେ । ତାଙ୍କ ସୁଚିନ୍ତିତ ନିର୍ଦ୍ଦେଶମତେ ମଠର କେତେ ଜଣ ଚତୁର କର୍ମଚାରୀ ଦଳେ ଶବାର-କାନ୍ଧିଆ ଓ ପର୍ଯ୍ୟାପ୍ତ-ପରିମିତ ଖାଦ୍ୟସମ୍ଭାର ସହ ଯୋଗ୍ରା ଆନିକଟ୍‌ର ଉତ୍ତର ପାର୍ଶ୍ୱକୁ ପ୍ରେରିତ ହେଲେ । ମହାନଦୀର ଏହି ତଟଦେଶ ସେତେବେଳେ ଦୀର୍ଘ ତରୁଲତାଶ୍ରେଣୀରେ ଜଙ୍ଗଲପ୍ରାୟ ହୋଇଥିଲା । ତାହାରି ମଧ୍ୟରେ ମିଶ୍ର ସଙ୍କ୍ଷାଧାରୀ ଜମିଦାର ଭେଣ୍ଟା ଚୌଧୁରୀଙ୍କର ଗୋଟିଏ କୋଠାଘର ଥାଏ । ଚୌଧୁରୀ ବଂଶର କେହି କଟକ ଗଲେ ଏହି ଘରେ ରହନ୍ତି । ଏଠାରେ ଖଣ୍ଡିଏ ଶବାରି ବରାବର ରଖା ହୋଇଥାଏ । ଚୂଙ୍ଖାରି, ରୂପକର, ଜଗୁଆଳ ଓ ଛଅ ସାତ ଜଣ କାନ୍ଧିଆ ମଧ୍ୟ ସଦାବେଳେ ରହିଥାନ୍ତି । ଚୌଧୁରୀ ବଂଶୀୟମାନେ ସେହି ଶବାରିରେ ସହରକୁ ଯିବାଆସିବା କରନ୍ତି । କୋଠପଦା ମହନ୍ତଙ୍କ ପ୍ରେରିତ ଲୋକଦଳଟି ସେହି କୋଠାଘରେ ରହିଲେ ।

ସେତେବେଳର କଟକନଗରୀ ଆଜିକାଲି ପରି ସୌଧ-କିରୀଟିନୀ ନ ଥିଲା କି ବିଦ୍ୟୁତ୍‌ଝଟକମୟୀ ନ ଥିଲା । କୋଠାଘରର ସଂଖ୍ୟା ଆଙ୍ଗୁଠିଅଗରେ ଗଣି ହୋଇଯାଉଥିଲା । ଖପରଘର ଯାହା ଥାଏ, ସବୁ ଛଡ଼ା-ଛଡ଼ା । କୌଣସି ବସ୍ତି ଘନସନ୍ନିବିଷ୍ଟ ନୁହେଁ । ସୂର୍ଯ୍ୟାସ୍ତପରେ ଗୃହଆଡ଼ ଅନ୍ଧାରମୟ । କାଁ-ଭାଁ କେଉଁଠି ଗୋଟାଏ ଗୋଟାଏ ମିଞ୍ଜିମିଞ୍ଜିଆ ଅଲୁଅ । ରାସ୍ତା ଜନବିରଳ । ଏକୁଟିଆ ଯିବାକୁ ଡର ମାଡ଼େ । ଆଜି ଯେଉଁଠି ଗୌରୀଶଙ୍କର ପାର୍କ ବଜାର-ଆଲୁଅରେ ଝଟକୁଛି, ସେଇଠା ସେକାଳେ ଥିଲା ମାରଣ୍ଡ ବାଉଁଶବଣ—ହେଟା-ଫେରୁଙ୍କ ବସାଘର ।

ମହନ୍ତଙ୍କଦ୍ୱାରା ଆଦିଷ୍ଟ ମଠ-କର୍ମଚାରୀମାନେ ପ୍ରତ୍ୟହ ମହାନଦୀ ପାର ହୋଇ ସହରଭିତରକୁ ଗଲେ ଏବଂ ବିଭିନ୍ନ ସ୍ଥାନରେ ବୁଲି ନନ୍ଦକିଶୋର ଓ ବଳଭଦ୍ରଙ୍କ ଯାତାୟାତର ସନ୍ଧାନ ପାଇବାକୁ ପାରୁପର୍ଯ୍ୟନ୍ତ ଚେଷ୍ଟା କଲେ । କିଛି ଦିନ ଧରି ଖୋଜିବା କାମ ଚାଲିଲା । ଦିନେ ସଞ୍ଜ ବୁଡ଼ିଲାପରେ ଦୁହେଁଯାକ ସାଙ୍ଗ ହୋଇ କାଠଯୋଡ଼ି-ବନ୍ଧ ଆଡ଼ୁ ବାଲୁବଜାର ଆଡ଼କୁ ଆସୁଥିଲେ । ଦୂରରୁ ତାହା ଲକ୍ଷ୍ୟ କରି ସନ୍ଧାନୀମାନେ ଗୋଟିଏ ଅନ୍ଧାରି ଜାଗାରେ ଛକିରହିଲେ ।

ସଦ୍ୟୋଦୀକ୍ଷିତ ଗୁରୁଭାଇଦୁହେଁ ନିକଟତର ହୋଇଯାନ୍ତେ ସନ୍ଧାନୀ ଦଳ ତାଙ୍କୁ ଫୁସୁଲାଇ ଆଣି ବାଲୁବଜାର ଛକମୁଣ୍ଡରେ ଥିବା ଦ୍ୱିତଳ ଘରଟିର ଉପର ପ୍ରକୋଷ୍ଠରେ ଆବଦ୍ଧ କରି ରଖିଲେ । ସନ୍ଧାନୀମାନଙ୍କମଧ୍ୟରୁ ଦୁଇ ତିନି ଜଣ ନିଷ୍ଠ-ସେପାରିକ ଧାଇଁଲେ ତୁରନ୍ତ ଶିବାରି ଅଣାଇବାକୁ । ଅନ୍ୟମାନେ ଅଟକବନ୍ଦୀଦୁହିଙ୍କୁ ଜଗିରହିଲେ । ଏ ଛୋଟିଆ ଓ ଅପ୍ରଶସ୍ତ ଦୋତାଲା କୋଠାଟିର ତଳମହଲା କହିଲେ ଗୋଟିଏ ବଖରା ଏବଂ ଉପରମହଲା ସେହିପରି ଗୋଟିଏ ବଖରା । ବୋଧ ହୁଏ କମ୍ପାନୀ ସରକାର ରାଜତିରେ ଏଇଟି ଥିଲା ପହରାଘର । ତଳ ଘରଟାରେ ସିପାହୀ ଜଗୁଥିଲେ, ଆଉ ଉପର ଘରଟିକୁ ଜେଲ ଭାବରେ ବ୍ୟବହାର କରୁଥିଲେ । ଏବେ ମଧ୍ୟ ଏହି ଐତିହାସିକ ଅନୁଚ୍ଚ କୋଠାଟି ଅତୀତର ମୂକସାକ୍ଷୀରୂପେ ପୂର୍ବବତ୍ ବିରାଜିତ ରହିଛି । ସଦର ରାସ୍ତାରେ ଠିଆ ହୋଇ ଉପର ପ୍ରକୋଷ୍ଠର କାନ୍ଥପ୍ରତି ଦୃଷ୍ଟି ନିକ୍ଷେପ କଲେ ଦେଖିବାକୁ ମିଳେ ତିନୋଟି ପୂର୍ଣ୍ଣାବୟବ ଉଦ୍‌ଗତ ମୂର୍ତ୍ତି; ସମସ୍ତେ ସାମରିକ ପୋଷାକରେ ସଜ୍ଜିତ ଓ ଦଣ୍ଡାୟମାନ—ମଝିରେ ବିଜୟଗର୍ବିତ ଲର୍ଡ଼୍ କ୍ଲାଇଭ୍ ଓ ଦୁଇ ପାର୍ଶ୍ୱରେ ତାଙ୍କର ଦେହରକ୍ଷିଦ୍ୱୟ । ଏହିପରି, ବିନୋଦବିହାରୀ ଲେନ୍ ପଟ ଉର୍ଦ୍ଧ୍ୱ କାନ୍ଥରେ ମଧ୍ୟ ଉଦ୍‌ଗତ ରହିଛି ଦଣ୍ଡାୟମାନ ଅବସ୍ଥାର ଦୁଇଜଣ ପୋଷାକଧାରୀ ସୈନିକଙ୍କ ମୂର୍ତ୍ତି । ଲକ୍ଷ୍ୟ କରିବାର କଥା—ଏହି ଦେହରକ୍ଷୀ ଓ ସୈନିକ, ଚାରିହେଁଯାକ ଭାରତୀୟ ଏବଂ ସେମାନଙ୍କ କର୍ଣ୍ଣ କୁଣ୍ଡଳଶୋଭିତ । ପ୍ରାଚୀନ ରୀତି ଅନୁଯାୟୀ ସେପର୍ଯ୍ୟନ୍ତ ଯେ ଯୋଦ୍ଧାମାନେ, ବିଶେଷତଃ ଉଚ୍ଚକୁଳୀୟ ଯୋଦ୍ଧୃବୃନ୍ଦ କୁଣ୍ଡଳ ପରିଧାନ କରୁଥିଲେ, ଏହି ମୂର୍ତ୍ତିମାନଙ୍କରୁ ତାହାର ପ୍ରତ୍ୟକ୍ଷ ପ୍ରମାଣ ମିଳେ ।

ନିଶାର୍ଦ୍ଧ ବେଳକୁ ବାହକମାନେ ଶିବାରି ଘେନି ନିର୍ଦ୍ଦିଷ୍ଟ ସ୍ଥାନରେ ଉପସ୍ଥିତ ହେଲେ । ନନ୍ଦକିଶୋର ଓ ବଳଭଦ୍ରଙ୍କୁ ଘେନି କିଛିବାଟ ଶିବାରି

ଜନ୍ମାନ୍ତର

ଗତାଗତ୍ ଗ୍ଭଲିଲା କୋଠପଦାମଠ ଅଭିମୁଖେ । ମହାନଦୀର ବାଲୁକାବକ୍ଷ ଉତ୍ତୀର୍ଣ୍ଣ ହେବାପର୍ଯ୍ୟନ୍ତ ବାହକମାନଙ୍କ ମୁଖ ହିବୋଲ୍ ରବିରେ ପୂର୍ଣ୍ଣଥିଲା । ତେଣିକି ସେମାନଙ୍କ କ୍ଷିପ୍ରତା ବଢ଼ିଲା ଏବଂ ମୁଖର ନୀରବତା ଭଙ୍ଗ ହେଲା । ସଫଳକାମ ପୂର୍ଣ୍ଣ ଦଳଟି ଧର୍ମତ୍ୟାଗିଦ୍ୱୟଙ୍କୁ ଆଣି ପରଦିନ ପୂର୍ବାହ୍ନରେ କୋଠପଦାମଠ-ପ୍ରାଙ୍ଗଣରେ ପହଞ୍ଚାଇଦେବାମାତ୍ରେ ଗ୍ରାମେ ଗ୍ରାମେ ଆନନ୍ଦର ବନ୍ୟା ଖେଳିଗଲା ।

ମହନ୍ତ ମହାରାଜଙ୍କ ଆୟୋଜନକ୍ରମେ ମଠ-ପରିସରରେ ଏକ ବିରାଟ ଧର୍ମସଭା ଆହୂତ ହେଲା । ଓଡ଼ିଶା ତଥା ଓଡ଼ିଶା ବାହାରର ଗଣ୍ୟମାନ୍ୟ ବିଶିଷ୍ଟ ଶାସ୍ତ୍ରବିତ୍‌ମାନେ ଆମନ୍ତ୍ରିତ ହୋଇ ସେହି ସଭାରେ ଯୋଗଦାନ କଲେ । ଦୀର୍ଘ ଆଲୋଚନା ଓ ଧର୍ମଶାସ୍ତ୍ରସମୂହର ଆଲୋଡ଼ନ-ବିଲୋଡନପରେ ସିଦ୍ଧାନ୍ତ ହେଲା ଯେ, ବିଧର୍ମୀ(ଅନ୍ୟ ଧର୍ମାବଲମ୍ବୀ)ମାନଙ୍କର ହିନ୍ଦୁଧର୍ମକୁ ପ୍ରବେଶ ପୂର୍ବାପୂର୍ବ ଶାସ୍ତ୍ରନିଷିଦ୍ଧ ହେଲେହେଁ ବିଧର୍ମୀ(ହିନ୍ଦୁଧର୍ମତ୍ୟାଗୀ)ମାନଙ୍କର ସ୍ୱଧର୍ମ(ହିନ୍ଦୁଧର୍ମ)କୁ ପ୍ରତ୍ୟାବର୍ତ୍ତନ ସଂପୂର୍ଣ୍ଣ ଶାସ୍ତ୍ରସମ୍ମତ । ସନାତନ ହିନ୍ଦୁ ଜଗତର ଉଦାର ଦ୍ୱାର ଏପ୍ରକାର ଦିଗ୍‌ଭ୍ରାନ୍ତ ହିନ୍ଦୁ ସନ୍ତାନମାନଙ୍କୁ ନିଜ କୋଡ଼ରେ ପୁଣି ଆଶ୍ରୟ ଦେବାପାଇଁ ଚିର ଉନ୍ମୁକ୍ତ ।

'ହିନ୍ଦୁ ସମାଜର ସଙ୍କଟ ଓ ସମସ୍ୟା' ଉପରେ ଆଧାରିତ ଶାସ୍ତ୍ରଜ୍ଞ-ପଣ୍ଡିତମଣ୍ଡଳୀମଣ୍ଡିତ ଏହି ସଭାହିଁ ଊନବିଂଶ ଶତାବ୍ଦୀର ଉତ୍କଳରେ ସର୍ବବୃହତ୍ ଧର୍ମସମ୍ମିଳନୀ । ଏହାର ମୀମାଂସାମୂଳକ ନିର୍ଦ୍ଦେଶ ସେହିପରି ଗୁରୁତ୍ୱପୂର୍ଣ୍ଣ ଓ ସର୍ବଜନଗ୍ରହଣୀୟ । ଉପସ୍ଥିତ କ୍ଷେତ୍ରରେ ଶଂସିତ ଧର୍ମତ୍ୟାଗୀ ଯୁବକଦ୍ୱୟଙ୍କର ଯେଉଁ ପ୍ରଶ୍ନ ଜଡ଼ିତ ଥିଲା, ତାହାର ସମାଧାନ ହେଲା ଆହୁରି ତାତ୍ପର୍ଯ୍ୟପୂର୍ଣ୍ଣ । ଅପରିଣତ ବୟସ ଓ ଅପରିପକ୍ୱ ଧର୍ମଜ୍ଞାନ ଯୋଗୁଁହିଁ ସେଦୁହେଁ ଯେ ଅନ୍ୟଦ୍ୱାରା ସହଜରେ ପ୍ରଭାବିତ ହୋଇ ଧର୍ମତ୍ୟାଗ କରିଥିଲେ, ଏଥିରେ ସମସ୍ତଙ୍କର ପୂର୍ଣ୍ଣ ହୃଦ୍‌ବୋଧ ହେଲା । ଏଣୁ ବୈଦିକ ସଂସ୍କାରଦ୍ୱାରା ନନ୍ଦକିଶୋର ମାଳ ଧାରଣ କଲେ ଏବଂ ଆଉ ଥରେ ଉପନୀତ ହୋଇ ବଳଭଦ୍ର ଉପବୀତ ଧାରଣ କଲେ । ଏହି ଶାସ୍ତ୍ରୀୟ ପ୍ରକ୍ରିୟାରେ ଉଭୟେ ପୁଣି ହିନ୍ଦୁ ସମାଜକୁ ଫେରିଆସିଲେ ।

ଏହାପରେ ନନ୍ଦକିଶୋରଙ୍କ ପିତା ଭଜନାନନ୍ଦ ପୁତ୍ରକୁ କଲେଜିଏଟ୍ ସ୍କୁଲରୁ କାଢ଼ିଆଣିଲେ ଏବଂ ନିଜ ପାଖରେ ରଖି କେନ୍ଦ୍ରାପଡ଼ା ହାଇସ୍କୁଲରେ ପଢ଼ାଇଲେ । ୧୮୯୫ ମସିହାରେ ନନ୍ଦକିଶୋର ପ୍ରବେଶିକା(ଏଣ୍ଟ୍ରାନ୍‌ସ୍) ପରୀକ୍ଷାରେ

ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ବୃତ୍ତି ଲାଭ କଲାପରେ କଟକ ରେଭେନ୍ସା କଲେଜରେ ପଢ଼ିବାକୁ ଗଲେ । ଭଜନାନନ୍ଦ ଏଥିରେ ଆପାତ-ଆନନ୍ଦ ଅନୁଭବ କରିବା ସଙ୍ଗେ ସଙ୍ଗେ ତାର ଅନ୍ତରାଳରେ ଏକ ଅଶୁଭ ସଂକେତର ପ୍ରଚ୍ଛନ୍ନ ରୂପ ଦେଖିବାକୁ ପାଇଲେ । କଟକରେ ରହିବାଫଳରେ ବିଶ୍ୱନାଥ ଓ ମଧୁସୂଦନଙ୍କ ସମ୍ପର୍କରେ ଆସି ପୁଣି କାଳେ ପୁଅ ବ୍ରାହ୍ମ ହୋଇଯିବ, ଏପ୍ରକାର ଆଶଙ୍କା ତାଙ୍କ ମନକୁ ବାତ୍ୟାବିକ୍ଷୁବ୍ଧ କରିପକାଇଲା । ତେଣୁ ନନ୍ଦକିଶୋରଙ୍କୁ ବିବାହ-ବାନ୍ଧୁଣିରେ ବଳ୍‌ଗାଯୁକ୍ତ କରିଦେଇ ଚତୁର ପିତା ସେହି ଆଶଙ୍କିତ ବିପଦ-କବଳରୁ ମୁକ୍ତି ଲାଭ କଲେ ।

ପିତାଭ୍ରାତାଦି ଗୁରୁଜନଙ୍କ ପ୍ରାଣରେ ଆଘାତ ଦେଇ ସେମାନଙ୍କର ଅଶ୍ରଦ୍ଧାଭାଜନ ହେବାକୁ ବିବେକୀ ନନ୍ଦକିଶୋର ଶ୍ଳାଘ୍ୟ ମନେ କଲେ ନାହିଁ ଏବଂ ସେଥିପାଇଁ ବିଶ୍ୱନାଥଙ୍କ ସହିତ ଧର୍ମଗୁରୁର ସମ୍ପର୍କ ତୁଟାଇଦେଲେ ସତ, କିନ୍ତୁ ଶିକ୍ଷାଗୁରୁର ସମ୍ପର୍କ ଛିନ୍ନ କରିବା ତାଙ୍କ ପକ୍ଷରେ ଅସମ୍ଭବ ହେଲା । ବରଂ କଲେଜ-ଜୀବନଠାରୁ ସେ ବିଶ୍ୱନାଥଙ୍କୁ ନିଜ ସାହିତ୍ୟସାଧନାର ପରମାରାଧ୍ୟ-ଗୁରୁରୂପେ ବରଣ କରିଥିଲେ ଏବଂ ମୃତ୍ୟୁପର୍ଯ୍ୟନ୍ତ ସେହି ପବିତ୍ର ସମ୍ପର୍କକୁ ଅକ୍ଷତ ଅଚ୍ଛିନ୍ନ ରଖିଥିଲେ ।



# ‘ଉତ୍କଳସାହିତ୍ୟ’ର ଆତ୍ମପ୍ରକାଶ : ସଂପାଦକ ବିଶ୍ୱନାଥ

ବିଶ୍ୱନାଥଙ୍କର ସାହିତ୍ୟିକ ପ୍ରତିଭା ତାଙ୍କ ସ୍କୁଲ ମହଲରେ ସ୍ୱୀକୃତି ଲାଭ କରିଥିବା କଥା ଆଗରୁ ସୂଚିତ ହୋଇସାରିଛି । ନବଯୁଗୀୟ ସାହିତ୍ୟସୃଜନର ସେହି ଉନ୍ମେଷକାଳରେ ଖଣ୍ଡିଏ ସୁରୁଚିସଂପନ୍ନ ଆଦର୍ଶ ସାହିତ୍ୟପତ୍ରିକାର ଅଭାବ ପ୍ରତ୍ୟେକେ ଅନୁଭବ କରୁଥିଲେ । ତତ୍ପୂର୍ବରୁ କେତେ ଖଣ୍ଡି ପତ୍ରିକା ଜନ୍ମ ଲାଭ କରିଥିଲେହେଁ କୌଣସିଟି ଦୀର୍ଘାୟୁ ହୋଇପାରିଲା ନାହିଁ—ଶୈଶବ ଅତିକ୍ରମ କରିବାପୂର୍ବରୁ ସେଗୁଡ଼ିକର ଅକାଳମୃତ୍ୟୁ ଘଟିଲା । ମୃଗାଙ୍କଧର ରାୟଚୌଧୁରୀ ଓ ଶରଚ୍ଚନ୍ଦ୍ର ମୁଖାର୍ଜୀ ପ୍ରମୁଖ ବିଦ୍ୟୋତ୍ସାହୀ କଲେଜଛାତ୍ର ମହାସମାରୋହରେ ଯେଉଁ ଅଖଣ୍ଡ ‘ପ୍ରଦୀପ’ ପ୍ରଜ୍ୱଳିତ କରିଥିଲେ, ତାହା ତେଲ ବିହୁନେ ନିର୍ବାଣ ପାଇ ଖଣ୍ଡବିଖଣ୍ଡ ହୋଇଗଲା । ଲଳିତମୋହନ ଚକ୍ରବର୍ତ୍ତୀଙ୍କ ଘର୍ଘରନାଦୀ ‘ସାମ୍ୟବାଦୀ’ ଭାରସାମ୍ୟଦୋଷରୁ ଅମଡ଼ା ମାଡ଼ିଯାଇ ଚକାଭଙ୍ଗା ଅବସ୍ଥାରେ ଅତଳ ଗହ୍ୱରଗର୍ଭରେ ମୁହଁମଡ଼ା ସମାଧି ପାଇଲା । ଅଭିନ୍ନ ନାୟକ ଓଗେରଙ୍କ ‘ମଧୁପ’ ମଧୁର ସନ୍ଧାନ ନ ପାଇ ଝାଙ୍କର ମୁଣ୍ଡି ଆରେ କଂସକଚଡ଼ା ଖାଇଲା । ସାଧୁଚରଣ ରାୟଙ୍କ ‘ଆଶା’ କେତେ କା ସରଣୀ-କଳୁଭକୁ ଚୁହିଁ ଚୁହିଁ ନିରାଶାରେ ଶେଷକୁ ଗଳାରେ ଫାଶ ଗଳାଇଲା ।

ପୂର୍ବବର୍ତ୍ତୀ ପତ୍ରପତ୍ରିକାର ଏବଂବିଧ ଶୋଚନୀୟ ପରିଣତିର ନୈରାଶ୍ୟମୟ କରୁଣ ଚିତ୍ର ଆଖିଆଗରେ ଥୋଇ ମଧ୍ୟ ଦିବ୍ୟଦର୍ଶନ ମଧୁସୂଦନ ରାଓ ଖଣ୍ଡିଏ ସ୍ଥାୟୀ ସାହିତ୍ୟ ପତ୍ରିକାର ଆଶୁପ୍ରକାଶପାଇଁ ବ୍ୟାକୁଳ ହୋଇଉଠିଲେ । ହତାଶାହିଁ ନୂତନ ଆଶାର ଜନୟିତ୍ରୀ । ଅବଶେଷରେ ମଧୁସୂଦନ ରାଓ, ଫକୀରମୋହନ ସେନାପତି, ସାଧୁଚରଣ ରାୟ, ଚନ୍ଦ୍ରମୋହନ ମହାରଣା, କୃଷ୍ଣପ୍ରସାଦ ଚୌଧୁରୀ ଓ ବିଶ୍ୱନାଥ କରଙ୍କ ସଂଗଠିତ ଯୌଥ ଉଦ୍ୟମରେ

ପତ୍ରିକାପ୍ରକାଶର ସମ୍ପୂର୍ଣ୍ଣ ଯୋଜନା ସ୍ଥିର ହୋଇଗଲା । ସର୍ବସମ୍ମତିଭାବରେ ବିଶ୍ୱନାଥଙ୍କ ହସ୍ତରେ ସମ୍ପାଦନାର ଗୁରୁ ଦାୟିତ୍ୱ ଅର୍ପିତ ହେଲା । କୃଷ୍ଣପ୍ରସାଦ ମେନେଜରରୂପେ ନିଯୁକ୍ତ ହେଲେ ।

ଯୋଜନାନୁଯାୟୀ ୧୮୯୭ ମସିହାରେ ଓଡ଼ିଆ ନବବର୍ଷାରମ୍ଭରେ ବିପୁଳ ସମ୍ଭାବନାର ଉଜ୍ଜ୍ୱଳ ଭବିଷ୍ୟତ୍ ଘେନି ସମଗ୍ର ପ୍ରାକୃତିକ ଓଡ଼ିଶାର ସର୍ବଶ୍ରେଷ୍ଠ ସାହିତ୍ୟିକ ମୁଖପତ୍ର ତଥା ନବ୍ୟ ଓଡ଼ିଆସାହିତ୍ୟର ଏକମାତ୍ର ପ୍ରତିନିଧି 'ଉତ୍କଳସାହିତ୍ୟ' ମାସିକ ପତ୍ରିକା ବିଶ୍ୱନାଥଙ୍କ ସମ୍ପାଦକତ୍ୱରେ ଆତ୍ମପ୍ରକାଶ କଲା । ୧୩୦୪ ସାଲ ବୈଶାଖ ପହିଲା (ପଣାସଂକ୍ରାନ୍ତି) ଏହାର ଶୁଭ ଜନ୍ମତିଥିରୂପେ ଓଡ଼ିଆସାହିତ୍ୟ-ଜଗତରେ ଚିରସ୍ମରଣୀୟ ତଥା ଓଡ଼ିଆ ସାହିତ୍ୟପତ୍ରିକାର ଇତିହାସରେ ଚିରଭାସ୍ୱର । ସେହି ଦିନ ଏହାର ପ୍ରଥମ ସଂଖ୍ୟା ପ୍ରକାଶିତ ହୋଇଥିଲା ।

ଏହି ପତ୍ରିକାର ପ୍ରକାଶରେ ବିଶ୍ୱନାଥଙ୍କୁ ଯେ କି ସାଧ୍ୟସାଧନା କରିବାକୁ ହୋଇଛି, କେତେ ଯେ ଦିହଗଞ୍ଜି ହେବାକୁ ପଡ଼ିଛି, ତାହା କଳନାତୀତ । ପ୍ରାରମ୍ଭାବସ୍ଥାରେ ରାଧାନାଥ, ମଧୁସୂଦନ, ଫକୀରମୋହନ, କୃଷ୍ଣପ୍ରସାଦ, ସଦାଶିବ, ଭୋଳାନାଥ, ରମାନାଥ, ଏହି ମୁଷ୍ଟିମେୟ କେତେ ଜଣ ମାତ୍ର ସାହିତ୍ୟିକଙ୍କର ପ୍ରବନ୍ଧ ଓ କବିତା ପ୍ରଧାନ ସମ୍ବଳ ଥିଲେହେଁ ବିଶ୍ୱନାଥଙ୍କ ବିଚକ୍ଷଣ ସମ୍ପାଦନାଫଳରେ ଉକ୍ତ ଲେଖାଗୁଡ଼ିକରୁ 'ଉତ୍କଳସାହିତ୍ୟ'ର ଉଚ୍ଚ ଆଦର୍ଶ ପରିସ୍ଫୁଟ ହୋଇଉଠିଥିଲା । ଏହି ଆଦର୍ଶକୁ ଅକ୍ଷତ ଅକ୍ଷୁଣ୍ଣ ରଖିବାକୁ ସମ୍ପାଦକ ନିଜ ନିକଟରେ ଶପଥବଦ୍ଧ ହୋଇଥିଲେ । ସତ୍ୟ ସତ୍ୟରେ ତାଙ୍କ ଜୀବନକାଳ-ମଧ୍ୟରେ କେବେହେଲେ ସେହି ସଙ୍କଳ୍ପିତ ଆଦର୍ଶରେ ସାମାନ୍ୟ ସୁଦ୍ଧା ମାଳିନ୍ୟ ଆସି ନାହିଁ କିଂବା ପତ୍ରିକାଟିର ପ୍ରତିଷ୍ଠିତ ମାନ ଅଣୁମାତ୍ର ଖର୍ବିତ ହୋଇ ନାହିଁ ।

ପ୍ରଥମ ବର୍ଷଟି ଖୁବ୍ ସୁରୁଖୁରୁରେ ପତ୍ରିକା ଚଳିଲା—ପ୍ରତି ମାସର ନିର୍ଦ୍ଧାରିତ ଦିବସରେ ନିୟମିତ ପ୍ରକାଶିତ ହେବାରୁ କ୍ରମଶଃ ଅଧିକ ଜନପ୍ରିୟ ହେବାକୁ ଲାଗିଲା, ଶିକ୍ଷିତ ଯୁବକଙ୍କ ମଧ୍ୟରୁ କେହି କେହି ଲେଖନୀ ଧରିବାକୁ ମଧ୍ୟ ପ୍ରେରଣା ପାଇଲେ । ମାତ୍ର ଦ୍ୱିତୀୟ ବର୍ଷର ଦ୍ୱିତୀୟାର୍ଦ୍ଧ ବେଳକୁ ପତ୍ରିକା-ପ୍ରକାଶରେ ଅନିୟମିତତାର ଦୁର୍ଦ୍ଦିନ ଦେଖା ଦେଲା । ଏହାର ପ୍ରଧାନ କାରଣ ହେଲା—ପରିଚାଳନା ସଂସ୍ଥାର ସଭ୍ୟମାନଙ୍କ ମଧ୍ୟରୁ ଅନେକଙ୍କର ଉଦାସୀନ

ମନୋଭାବ ଏବଂ ତନ୍ନିବନ୍ଧନ ଅର୍ଥାଭାବ ଓ ମୁଦ୍ରଣଗତ ଅସୁବିଧା । ଉପସ୍ଥିତ ଦୁର୍ଗତିର ଦୂରୀକରଣୋପାୟ ଚିନ୍ତା କରିବା ବାଟରେ ସମସ୍ତେ ନିଦ୍ରାବିଷ୍ଟ ପାଲଟିଲେ ଏବଂ ‘ଏପରି ଅନିଷ୍ଟପୂତା ମଧ୍ୟ ଦେଇ ଗତି କରିବା ଅପେକ୍ଷା ବରଂ ପତ୍ରିକା ବନ୍ଦ କରିଦେବା ବୁଦ୍ଧିମତ୍ତାର କାର୍ଯ୍ୟ ହେବ’ ବୋଲି ଅଧିକାଂଶ ସଭ୍ୟ ମତ ଦେଲେ । ବିଶ୍ୱନାଥ କିନ୍ତୁ ଏଭଳି ପଶ୍ଚାତ୍ପଦୀୟ ପ୍ରସ୍ତାବର ସମର୍ଥକ ତାଲିକାରେ ନିଜ ନାମ ଯୋଡ଼ିବାକୁ ଆଦୌ ସମ୍ମତ ହୋଇପାରିଲେ ନାହିଁ ବିବେକର ଦାରୁଣ ଦଂଶନରେ ।

ଥରେ ଦାଣ୍ଡକୁ ଗୋଡ଼ କାଢ଼ିସାରିଲାପରେ ପୁଣି ଘରକୁ ଡାକିଆଣିବା ନିତାନ୍ତ କ୍ଲୀବତାର ପରିଚାୟକ । ପଶ୍ଚାତ୍ପଦତା ପରାଜୟର ଅପମାନଠାରୁ ଆହୁରି ଗ୍ଲାନିକର ଓ ହୀନତର । ବୀରର ଅଭିଧାନରେ ପଛଘୁଞ୍ଚା ଶବ୍ଦର ସ୍ଥାନ ନାହିଁ । ‘ଉତ୍କଳସାହିତ୍ୟ’ ବନ୍ଦ କରି ବାହାରେ ମୁହଁ ଦେଖାଇବାର ଅର୍ଥ ହେବ ନିର୍ଲଜ୍ଜତାର ମଜ୍ଜାଚର୍ବଣ । ବସ୍ତୁତଃ ଏହାର ଅବାଞ୍ଛନୀୟ ପରିଣାମପାଇଁ ଅଗଣିତ ପାଠକ ଓ ଗ୍ରାହକଙ୍କ ବାଗ୍‌ବାଣର ଏକମାତ୍ର ଶରବ୍ୟ ହେବେ ପତ୍ରିକା-ସଂପାଦକ—ସ୍ୱୟଂ ବିଶ୍ୱନାଥ ।



## 'ଉତ୍କଳସାହିତ୍ୟ'ର ସ୍ଥାୟିତ୍ୱକଳ୍ପେ 'ଉତ୍କଳସାହିତ୍ୟ ପ୍ରେସ୍' ସ୍ଥାପନ

ପୁରୁଷସିଂହ ବିଶ୍ୱନାଥ ନବଜାତ ଓଡ଼ିଆସାହିତ୍ୟର ସ୍ୱଚ୍ଛ ଦର୍ପଣରୂପୀ 'ଉତ୍କଳସାହିତ୍ୟ'ର ଜୀବନକୁ ନିଜ ଜୀବନଠାରୁ ଢେର୍ ବେଶୀ ମୂଲ୍ୟବାନ୍ ମଣି ତାକୁ କିପରି ଜୀବିତ ରଖିବେ ଏବଂ ତାର ମାନ କ୍ରମଶଃ ଉନ୍ନତରୁ ଉନ୍ନତତର କରି ଓଡ଼ିଆସାହିତ୍ୟକୁ ବିଶ୍ୱସାହିତ୍ୟର ଦରବାରରେ ପହଞ୍ଚାଇବା ଭଳି ଅଧିକ ଗତିଶୀଳ କରାଇବେ, ଏଥିପାଇଁ କୃତସଂକଳ୍ପ ହେଲେ ।

ଏହି ସଂକଳ୍ପକୁ କାର୍ଯ୍ୟରେ ପରିଣତ କରାଯିବାର ଉପାୟ କଣ— କଃ ପନ୍ଥାଃ ? ଉଦ୍‌ଯୋଗୀ ବିଶ୍ୱନାଥଙ୍କୁ ପନ୍ଥା ଦେଖାଗଲା । ସେ ସ୍ଥିର କଲେ— ନିଜର ଏକକ ପ୍ରଚେଷ୍ଟାରେ ବିଭିନ୍ନ ସୂତ୍ରରୁ ଅର୍ଥ ସଂଗ୍ରହ କରି ପ୍ରେସଟିଏ ସ୍ଥାପନ କରିବାକୁ ହେବ, ତାହାହେଲେ ପତ୍ରିକାପ୍ରକାଶର ପ୍ରଧାନ ଅନ୍ତରାୟ ଅର୍ଥାଭାବ ଓ ତଜ୍ଜନିତ ମୁଦ୍ରଣବିଳମ୍ବ ଆପେ ଆପେ ସୁଧୁରିଯିବ । ଏହି ଚରମ ସିଦ୍ଧାନ୍ତରେ ଉପନୀତ ହେବାମାତ୍ରେ ତାଙ୍କୁ ନିଜ ସଂସାରଗୁଜୁରାଣ-ମେଣ୍ଟଣର ଏକମାତ୍ର ଅବଲମ୍ବନ ଟାଉନ୍ ସ୍କୁଲର ହେଡ୍‌ମାଷ୍ଟର ନକିରିରେ ଗୁଡ଼ବାକୁ ପଡ଼ିଲା । ସେହି ଦିନଠାରୁ ବିଶ୍ୱନାଥ ହେଲେ ମୁକ୍ତ ପଥର ସ୍ୱାଧୀନ ଯାତ୍ରୀ— ଦେଶହିତାୟ ଉତ୍ସର୍ଜିତପ୍ରାଣ ।

ଅତରେ ଅର୍ଥାଗମର ଆଶା ଉଜ୍ଜ୍ୱଳ ଦିଶିଲା । 'ଉତ୍କଳସାହିତ୍ୟ'ର ସ୍ଥାୟିତ୍ୱକଳ୍ପେ କେତେକ ବନ୍ଧୁ, ସହମାର୍ଗୀ ଓ ସାହିତ୍ୟାନୁରାଗୀଙ୍କର ଅକୁଣ୍ଠିତ ସାହାଯ୍ୟ ହେଲା ତାଙ୍କ ଅଭିଯାନର ପ୍ରଥମ ପାଥେୟ । ଅର୍ଥସଂଗ୍ରହ ଅଭିଯାନର ଦ୍ୱିତୀୟ ପର୍ଯ୍ୟାୟରେ ସାହିତ୍ୟୋତ୍ସାହୀ ଦୁଇ ତିନି ଜଣ ରାଜା ଓ ଜମିଦାରଙ୍କର ଦ୍ୱାରସ୍ଥ ହେବାପାଇଁ କିଛି ଦିନ କଟକ ଗୁଡ଼ବାକୁ ପଡ଼ିଲା । ଆଶାନୁଯାୟୀ ପ୍ରଚୁର ନ ହେଲେହେଁ ସେମାନଙ୍କ ସ୍ୱେଚ୍ଛାକୃତ ସୀମିତ ଦାନ ଲକ୍ଷ୍ୟସାଧନରେ

ବାଉନ

ଯଥେଷ୍ଟ ସହାୟକ ହେଲା । ଏହିପରି ନାନା ଉପାୟରେ ଯେଉଁ ସମ୍ବଳତକ ସଂଗୃହୀତ ହେଲା, ତାହା ପ୍ରୟୋଜନପୂରଣରେ ଅସମର୍ଥ ହେବାରୁ ଶେଷକୁ ବିଶ୍ୱନାଥ ନିଜ ବନ୍ଧୁବର୍ଗଙ୍କ ମତାଙ୍କରରେ ଋଣ କରି ନଅଣ୍ଟ ଅର୍ଥ ଭରଣା କଲେ । ଏଣେ କିନ୍ତୁ ଧାରଉଧାର-କାଳବାଙ୍କଦ୍ୱାରା ପତ୍ରିକାଟିକୁ ଯେତେବେଳେ ଯେଉଁ ପ୍ରେସରେ ସୁବିଧା ହୁଏ ସେଠାରେ ଛପାଇ କୌଣସିମତେ ବଞ୍ଚାଇ ରଖିଥାନ୍ତି । ଭୀଷଣ ଅର୍ଥସଙ୍କଟମଧ୍ୟରେ ଏହାହିଁ ତାଙ୍କୁ ପରମ ଆନନ୍ଦ ଓ ଆଶ୍ୱାସନା ଦେଉଥାଏ ।

ଯେତେ ଶ୍ରେଷ୍ଠକାଠର ହେଉ ପଛେ, ନୂଆ କରି ମୁଦ୍ରଣାଳୟଟିଏ ସ୍ଥାପନ କରିବା ସେକାଳର ଜଣେ ନିଃସ୍ୱ ଯୁବକ ପକ୍ଷରେ କେତେ ଆୟାସସାଧ୍ୟ ଥିଲା, ଆଜିକା ଯୁବକର ତାହା ଅନୁମାନାତୀତ । ଯାହାହେଉ, ନାନା ପ୍ରତିକୂଳତାମଧ୍ୟରେ ବର୍ଷାଧିକ କାଳର କଠୋର ସଂଗ୍ରାମପରେ ବିଶ୍ୱନାଥଙ୍କର ଦୀର୍ଘପୋଷିତ ଆଶା ସଫଳ ହେଲା । ସ୍ୱପ୍ନକୁ ବାସ୍ତବତାରେ ପରିଣତ କରି ୧୯୦୦ ମସିହା ଜାନୁଆରି ୧° ତାରିଖ ଦିନ 'ଉତ୍କଳସାହିତ୍ୟ ପ୍ରେସ' ବାଲୁବଜାରରେ ପ୍ରତିଷ୍ଠିତ ହେଲା । ଏଥିପାଇଁ ସଦର ରାସ୍ତାଉପରେ ଥିବା ଏକ ବୃହତ୍ ପକ୍କା ଗୃହ ଭଡ଼ା ନିଆଯାଇଥିଲା । ସେହି ଦିନ ମଧ୍ୟ 'ଉତ୍କଳସାହିତ୍ୟ' ମାସିକ ପତ୍ରିକାର କମ୍ପୋଜ କାମଦ୍ୱାରା ଆନୁଷ୍ଠାନିକଭାବରେ ପ୍ରେସକାର୍ଯ୍ୟର ଶୁଭାରମ୍ଭ ହେଲା ।

ମୂଳତଃ 'ଉତ୍କଳସାହିତ୍ୟ'ର ନିୟମିତ ପ୍ରକାଶନପାଇଁ 'ଉତ୍କଳସାହିତ୍ୟ ପ୍ରେସ'ର ଜନ୍ମ ହୋଇଥିଲେହେଁ ଏବେ ଏହାର ଧାର୍ଯ୍ୟ ମୁଖ୍ୟ ଲକ୍ଷ୍ୟ ହେଲା—ଏହି ପତ୍ରିକାର ମାଧ୍ୟମରେ ନୂତନ ନୂତନ ସୃଜନଶୀଳ ଲେଖକ ଓ ସାହିତ୍ୟିକ ତିଆରି କରିବା ଏବଂ ବିବିଧ ସାହିତ୍ୟିକ ଗ୍ରନ୍ଥର ମୁଦ୍ରଣଦ୍ୱାରା ଶୁଦ୍ଧ ସୁଷ୍ଠୁ ଭାଷାର ପ୍ରଚୁର ପ୍ରସାର ସଙ୍ଗେ ସଙ୍ଗେ ରାଧାନାଥ-ମଧୁସୂଦନ ନବ୍ୟ ଓଡ଼ିଆ-ସାହିତ୍ୟ ଶୈଳୀର ଯେଉଁ ଭିତ୍ତି ପକାଇଥିଲେ ତାହାଉପରେ ଅଭିନବ ପ୍ରାସାଦ ନିର୍ମାଣ କରି ଆଧୁନିକ ମାର୍ଜିତ ସାହିତ୍ୟର ଶ୍ରୀବୃଦ୍ଧି ସାଧନ କରିବା ।

ଏହିସବୁ କାରଣରୁ ବିଶ୍ୱନାଥହିଁ ନବ୍ୟଯୁଗର ଭାଷା ଓ ସାହିତ୍ୟର ସଂସ୍କାରକ ଏବଂ ଗଣଗ୍ରାହ୍ୟ ଗୁଣସଂପନ୍ନ ଶକ୍ତିଶାଳୀ ଆଦର୍ଶ ଗଦ୍ୟସାହିତ୍ୟର ସ୍ରଷ୍ଟା ବୋଲି ଅବିସମ୍ବାଦିତଭାବରେ କୁହାଯାଏ ।

ଏଣିକି 'ଉତ୍କଳସାହିତ୍ୟ'ପାଇଁ ବିଶ୍ୱନାଥଙ୍କର ମୁଣ୍ଡବ୍ୟଥା ଆଉ ରହିଲା ନାହିଁ । ସେ ପ୍ରତିଜ୍ଞା କରିଥିଲେ :

"ମୋ ଅଦୃଷ୍ଟେ ଯାହା ହେଉ ପଛେ, ମୁଁ ବଞ୍ଚିଥିବାଯାଏ, ମୋ ହାତରେ ଶେଷ କପର୍ଦ୍ଦକର ସଂସ୍ଥାନ ଥିବାଯାଏ 'ଉତ୍କଳସାହିତ୍ୟ' କଦାପି ବନ୍ଦ ହେବ ନାହିଁ ।"

ତାଙ୍କର ଏହି ଘୋଷଣା ଯେ ଅକ୍ଷରେ-ଅକ୍ଷରେ ମାତ୍ରାଏ-ମାତ୍ରାଏ ସତ୍ୟ ହୋଇଅଛି, ଏହା ସର୍ବଜନବିଦିତ ।

## ଅସଂଖ୍ୟ ଲେଖକ ଗଢ଼ିବାରେ ଅଦ୍ୱିତୀୟ ଶିଳ୍ପୀ

ସାହିତ୍ୟାନୁଶୀଳନ କ୍ଷେତ୍ରରେ କାହାରିଠାରେ ଶକ୍ତିର ଅଙ୍କୁର ଲକ୍ଷ୍ୟ କଲାମାତ୍ରେ ବିଶ୍ୱନାଥ ଅତି ଆଦର-ସ୍ନେହରେ ତାହାକୁ ପରିପୁଷ୍ଟ ତରୁରେ ପରିଣତ କରିବାପାଇଁ ଆପ୍ରାଣ ଲାଗିପଡ଼ିଥିବାର ଭୂରି ଭୂରି ଦୃଷ୍ଟାନ୍ତ ଦେଖାଯାଇଛି । ତାହା ନ ହୋଇଥିଲେ ବହୁ ତରୁଣ ଜୀବନର ସାହିତ୍ୟ-ପ୍ରୀତି ସେହି ଅଙ୍କୁର ଅବସ୍ଥାରୁ ଯେ ମରୁଡ଼ିଝଡ଼ା ହୋଇଥାନ୍ତା, ଏହା ସ୍ୱତଃସିଦ୍ଧ । ବସ୍ତୁତଃ, ପରବର୍ତ୍ତୀ ଜୀବନରେ ଯେଉଁମାନେ ପ୍ରତିଷ୍ଠିତ ସାହିତ୍ୟିକରୂପେ ପରିଚିତ ହୋଇଛନ୍ତି, ସେମାନଙ୍କମଧ୍ୟରୁ କାହାକୁ ବିଶ୍ୱନାଥ କଲମ ଧରିବା ଶିଖାଇଛନ୍ତି ତ କାହାର ବଙ୍କା-ତେଡ଼ା କଲମକୁ ସିଧାସଳଖ କରାଇଛନ୍ତି, କେଉଁ ଅମଣିଆର କାନ୍ଧରେ ଯୁଆଳି ଭିଡ଼ି ତାକୁ ମଣି କରାଇ ଗୃହରେ ଲଗାଇଛନ୍ତି ତ ଆଉ କାହାର ଅଜ୍ଞାନ-ତିମିରାନ୍ଧ ଚକ୍ଷୁକୁ ଜ୍ଞାନାଞ୍ଜନଶଳାକାରେ ଉନ୍ମୀଳିତ କରାଇଛନ୍ତି, ପୁଣି କେହି କେହି ଅଳସୁଆ ମାଧିଆଙ୍କୁ ପେଧେଇ ପେଧେଇ ବନାକେତେପରେ ବାଗଲା ଘୋଡ଼ା ବନେଇଛନ୍ତି—ଅଥଚ କେବେହେଲେ ତାଙ୍କ ବ୍ୟବହାରରେ ଉନ୍ନାସିକତାର ମୁଣ୍ଡୁନ୍ଥ ରେଖାପାତ ହୋଇ ନାହିଁ । ଏହା ନିରାଟ ସତ ଯେ ବିଶ୍ୱନାଥଙ୍କର ଅତି ନିକଟ ସଂସ୍ପର୍ଶରେ ଆସି ନ ଥିଲେ ଓ ତାଙ୍କଠାରୁ ପ୍ରୋତ୍ସାହନା, ପ୍ରେରଣା, ଅଭୟ ପାଇବା ସଙ୍ଗେ ସଙ୍ଗେ ତାଙ୍କ ଅବଧାରିତ ଗ୍ରନ୍ଥର ସୁଆଦ ଚାଖି ନ ଥିଲେ ପ୍ରହରାଜଙ୍କ କଲମ ବଳମପ୍ରାପ୍ତ ଏତେ ଜୋର୍‌ଦାର ହୋଇ ଲୋକଭାଷାର ମନୋଜ୍ଞ ସମନ୍ୱୟରେ ଏକ ଅନନୁକରଣୀୟ ସରଳ ଶୈଳୀର ମାହାତ୍ମ୍ୟ ପିଟାଇପାରି ନ ଥାନ୍ତା କିମ୍ବା ସେହି କଲମରୁ ଶରସ୍ରୋତା ସ୍ୱଚ୍ଛୋଦ ଗିରିନିର୍ଝର ପରି ଅବିଶ୍ରାନ୍ତ ସ୍ୱଚ୍ଛନ୍ଦ ଗତିରେ ଖେଦାପରେ ଖେଦା ପଇଦା ହୋଇପାରି ନ ଥାନ୍ତା—ନନ୍ଦକିଶୋରଙ୍କ ପଲ୍ଲିଶ୍ରୀପ୍ରିୟ

ଲେଖନୀ ଏତେ ପ୍ରଖର ହୋଇ ତାଙ୍କୁ ‘ପଲ୍ଲୀକବି’ ଆଖ୍ୟାରେ ଯଶଃଶ୍ରୀମଣ୍ଡିତ କରିପାରି ନ ଥାନ୍ତା—ମୃତ୍ୟୁଞ୍ଜୟ ସାହିତ୍ୟିକ ଗବେଷଣା କ୍ଷେତ୍ରରେ ମୃତ୍ୟୁଜୟୀ ହୋଇପାରି ନ ଥାନ୍ତେ କି କୁନ୍ତଳକୁମାରୀ ବାଗ୍‌ଦେବୀଙ୍କର କୋଳମଣି ହେବାର ସୌଭାଗ୍ୟ ପାଇପାରି ନ ଥାନ୍ତେ । କେବଳ ଏତିକି ନୁହେଁ, ବିଶ୍ୱନାଥଙ୍କଠାରୁ ଘନଘନ ଉତ୍ସାହ, ଅନୁପ୍ରାଣନା ଓ ତାଗିଦା ପାଇ ନ ଥିଲେ ଫକୀରମୋହନ, ଶଶିଭୂଷଣ, ଗୋପବନ୍ଧୁଙ୍କର, ଭିକାରିଚରଣ, ବାଙ୍କନିଧି, ଜଳନ୍ଧର, ବଳଭଦ୍ର, ଗଙ୍ଗାଧର, ଚିନ୍ତାମଣି, ପଦ୍ମଚରଣ, ନାରାୟଣମୋହନ, ହରିନାରାୟଣ, ମଦନ-ମୋହନ, କୁନ୍ତଳାକୁମାରୀ ପ୍ରଭୃତି ମଧ୍ୟ ଲେଖକ, ସମାଲୋଚକ ଓ କବିରୂପେ ଏତେ ଯଶସ୍ୱିତା ଅର୍ଜନ କରିପାରି ନ ଥାନ୍ତେ ।

ଏ-ଯୁଗୀୟ ଅଗ୍ରଗଣ୍ୟ ସରସ କବି, ପ୍ରାବନ୍ଧିକ ଓ ପର୍ଯ୍ୟାଲୋଚକ ଡକ୍ଟର୍ ମାୟାଧର ମାନସିଂହ ତାଙ୍କ ‘ଓଡ଼ିଆ ସାହିତ୍ୟର ଇତିହାସ’ ପୁସ୍ତକରେ ସ୍ୱାନୁଭୂତିପୁଷ୍ଟ ମତ ପ୍ରକାଶ କରିଯାଇଛନ୍ତି, “କବି ଓ ଶିଳ୍ପୀ ଦରକାର କରନ୍ତି ପ୍ରଚାରକ । ଯୁଗେ ଯୁଗେ ଏମାନେ ଧରାଧରି ହୋଇ ଆସିଥାନ୍ତି ବୋଲି ମନେ ହୁଅନ୍ତି । ଓଡ଼ିଆସାହିତ୍ୟର ଆଧୁନିକ ଯୁଗର କବି ଓ ଲେଖକମାନେ ଏହି-ପ୍ରକାର ଦୁଇଟି ପ୍ରଚାରକଙ୍କ ନିକଟରେ ବିଶେଷଭାବରେ ଋଣୀ । ଏମାନଙ୍କର ନିଜର କୌଣସି ସାହିତ୍ୟିକ ଅହମିକା ନ ଥିଲା । ଏମାନଙ୍କର ଜୀବନବ୍ରତ ଥିଲା ନୂତନ କବି-ଲେଖକମାନଙ୍କୁ ବାହାରକୁ ଆଣିବା ଓ ସେମାନଙ୍କ ରଚନାବଳୀକୁ ସାଧାରଣ ପାଠକସମାଜରେ ଥୋଇବା । ଏହି ଦୁହେଁ ହେଲେ ବିଶ୍ୱନାଥ କର ଓ ନୀଳମଣି ବିଦ୍ୟାରତ୍ନ ।”



# ବାଗ୍ମୀ ବିଶ୍ୱନାଥ

ଇତିମଧ୍ୟରେ ବିଶ୍ୱନାଥଙ୍କର ପାରିବାରିକ ପରିସର ବୃଦ୍ଧିପ୍ରାପ୍ତ ହୋଇଯାଇଥାଏ—ପ୍ରଥମା କନ୍ୟା ନର୍ମଦାଙ୍କ ପରେ ଦୁଇ ପୁତ୍ର (ମହାନନ୍ଦ, ପୂର୍ଣ୍ଣାନନ୍ଦ) ଓ ଦୁଇ କନ୍ୟା(ପ୍ରତିଭା, ସୁପ୍ରଭା)ଙ୍କର ଜନ୍ମ ଯୋଗୁଁ । ଏହି ଚାରି ସନ୍ତାନଙ୍କ ଜନ୍ମତିଥି ହେଲା ଯଥାକ୍ରମେ ୧୮୯୩ ଅଗଷ୍ଟ ୨୫ ତାରିଖ, ୧୮୯୬ ଜାନୁଆରି ୧୦ ତାରିଖ, ୧୮୯୮ ନଭେମ୍ବର ୧୭ ତାରିଖ ଓ ୧୯୦୧ ମଇ ୨ ତାରିଖ । କଳହାସ୍ୟ ପାଞ୍ଚ ପୁତ୍ରକନ୍ୟାଙ୍କୁ ଘେନି ବିଶ୍ୱନାଥଙ୍କର ଗୃହସଂସାରଟି ପରିପୂର୍ଣ୍ଣ ଆନନ୍ଦର ଏକ ମର୍ତ୍ତ୍ୟ-ବୈକୁଣ୍ଠରେ ପରିଣତ ହେଲା । ନର୍ମଦାଙ୍କର 'ନମ' ନାମ ପରି ପ୍ରତିଭା ଓ ସୁପ୍ରଭାଙ୍କର ଗେହ୍ଲାନାମ ହେଲା 'ପତି' ଓ 'ଚନି', ଆଉ ମହାନନ୍ଦ ଓ ପୂର୍ଣ୍ଣାନନ୍ଦଙ୍କର ଯଥାକ୍ରମେ 'ଚୁଇଁ' ଓ 'ନନ୍ଦୁ' ।

ପ୍ରେସଜୀବନର ଠିକ୍ ଷଷ୍ଠ ବର୍ଷ ୧୯୦୫ ମସିହା ଅକ୍ଟୋବର ୧୬ ତାରିଖ ଦିନ ଭାରତ-ରାଜପ୍ରତିନିଧି ଲର୍ଡ୍ କର୍ଜନ୍ ପୂର୍ବବଙ୍ଗକୁ ପଶ୍ଚିମବଙ୍ଗରୁ ବିଚ୍ଛିନ୍ନ କରିଦେଲେ ଏବଂ ସେହି ପୂର୍ବବଙ୍ଗ ସହିତ ଆସାମ ପ୍ରଦେଶକୁ ମିଶାଇ ଜଣେ ଲେଫ୍‌ଟେନାଣ୍ଟ୍ ଗଭର୍ଣ୍ଣର୍‌ଙ୍କ ଶାସନାଧୀନ ରଖିଲେ; ପୁଣି ପଶ୍ଚିମବଙ୍ଗ, ବିହାର, ଓଡ଼ିଶା ଓ ଛୋଟନାଗପୁରର ଶାସନଭାର ଅନ୍ୟ ଏକ ଲେଫ୍‌ଟେନାଣ୍ଟ୍ ଗଭର୍ଣ୍ଣର୍‌ଙ୍କ ହସ୍ତରେ ନ୍ୟସ୍ତ କଲେ । ଅଖଣ୍ଡ ବଙ୍ଗ ଦ୍ୱିଖଣ୍ଡ ହୋଇ ଦୁଇଟି ବିଭିନ୍ନ ଶାସନ ବିଭାଗର ଅନ୍ତର୍ଭୁକ୍ତ ହେଲା । ଭାରତ ଇତିହାସରେ ଏହା 'ବଙ୍ଗବ୍ୟବଚ୍ଛେଦ' ବା 'ବଙ୍ଗଭଙ୍ଗ' ନାମରେ ଅଭିହିତ । ଏହା-ବିରୁଦ୍ଧରେ ବଙ୍ଗରେ ଯେଉଁ ତୁମୁଳ ରାଜନୀତିକ ଆନ୍ଦୋଳନ ମୁଣ୍ଡ ଟେକିଲା, ତାହାର ପ୍ରଧାନ ନାୟକ ଥିଲେ ସ୍ୱନାମ-ଧନ୍ୟ ବାଗ୍ମୀ ସୁରେନ୍ଦ୍ରନାଥ ବନ୍ଦ୍ୟୋପାଧ୍ୟାୟ ଓ ସ୍ୱଦେଶଭକ୍ତ ବିପିନଚନ୍ଦ୍ର ପାଲ୍ ।

ବିଶ୍ୱନାଥଙ୍କ ଧମନୀରେ ଥିଲା ସ୍ୱଦେଶପ୍ରିୟତାର ଉଷ୍ଣ ଶୋଣିତଧାରା । ବଙ୍ଗୀୟ ରାଜନୀତି କ୍ଷେତ୍ରର 'ମୁକୁଟହୀନ ରାଜା' ସୁରେନ୍ଦ୍ରନାଥଙ୍କ ଉତ୍ତେଜନାମୟୀ ବକ୍ତୃତାରେ ବଙ୍ଗଭୂମି ଉତ୍କ୍ଷିପ୍ତ ହେଉଥିଲାବେଳେ ସ୍ୱାଦେଶିକତାର ପରମଭକ୍ତ 'ଉତ୍କଳର ସୁରେନ୍ଦ୍ରନାଥ' ବିଶ୍ୱନାଥ ସ୍ଥିର ରହିପାରିଲେ ନାହିଁ । ବଙ୍ଗଭଙ୍ଗ ଆନ୍ଦୋଳନକୁ ସେ ପୂର୍ଣ୍ଣପ୍ରାଣରେ ସମର୍ଥନପୂର୍ବକ କଟକର ବିଭିନ୍ନ ସ୍ଥାନରେ ଘଣ୍ଟାଘଣ୍ଟାବ୍ୟାପୀ ବକ୍ତୃତା ଦେଇ ଆନ୍ଦୋଳନର ଗତିକୁ ଓଡ଼ିଶାରେ ପ୍ରଖର କରିଦେଲେ । ତାଙ୍କ ଜ୍ୱାଳାମୟୀ ଭାଷାର ଅଗ୍ନିସ୍ଫୁଲିଙ୍ଗ କଟକର ପଥେ ପଥେ ବିକ୍ଷିପ୍ତ ହୋଇଗଲା । ପୁଞ୍ଜୀଭୂତ ଜନତା ମନ୍ତ୍ରମୁଗ୍ଧ ହେଲେ ତାଙ୍କର ଶାଟାଫୁଲ ସିଂହମୂର୍ତ୍ତି ଦେଖି ଓ ଗୁରୁଗମ୍ଭୀର କଣ୍ଠର କମାଣ-ଗର୍ଜନ ଶୁଣି । ବିଶ୍ୱନାଥଙ୍କର ଅନର୍ଗଳ ବକ୍ତୃତାମାନଙ୍କରେ ଯେଉଁ ଅଗ୍ନି ଓ ଆବେଗ ଏକାଧାରରେ ସନ୍ନିବିଷ୍ଟ ଥିଲା, ତାହାର ପଟାନ୍ତର ନାହିଁ । କଟକର ପ୍ରକାଶ୍ୟ ରାଜଦାଣ୍ଡ ଉପରେ ଠିଆ ହୋଇ 'କର୍ଜନ' ଘୋଷଣାକୁ ତର୍ଜମା ଦେଖାଇ ସେ ଯେପରି ତର୍ଜନ କରୁଥିଲେ, ଫିରିଙ୍ଗୀ ଯମଦୂତମାନଙ୍କର ରକ୍ତଚକ୍ଷୁ କିପରି ସେ ତାହା ବରଦାସ୍ତ କରୁଥିଲା, ବିସ୍ମୟର ବିଷୟ । ଉତ୍ତପ୍ତ ହୃଦୟର ବହ୍ନିୋଦ୍‌ଗିରଣମୁଖୀ ଭାଷାରେ ବକ୍ତୃତା ଶେଷ କରି ସେ ଯେ ଅକ୍ଷତ କଳେବରରେ ଗୃହକୁ ଫେରିପାଇପାରିବେ, କାହାରି ମନରେ ଏ ବିଶ୍ୱାସ ନ ଥାଏ ।

ବଙ୍ଗଭଙ୍ଗ ଆନ୍ଦୋଳନଜନିତ ପ୍ରବଳ ଜନଅସନ୍ତୋଷଫଳରେ ୧୯୧୧ ମସିହା ଡିସେମ୍ବର ୧୨ ତାରିଖର ଦିଲ୍ଲୀ ଦରବାରରେ ଭାରତସମ୍ରାଟ୍ ପଞ୍ଚମଜର୍ଜ ଯେଉଁ ଘୋଷଣା ପ୍ରଚାର କଲେ, ତଦନୁଯାୟୀ ୧୯୧୨ ମସିହା ଅପ୍ରେଲ ପହିଲାଠାରୁ ଆସାମ ପ୍ରଦେଶ ଜଣେ ଚିଫ୍ କମିସନର୍‌ଙ୍କର, ପୂର୍ବବଙ୍ଗ ଓ ପଶ୍ଚିମବଙ୍ଗ ପୁନର୍ମିଳିତ ହୋଇ ଜଣେ ଗଭର୍ଣ୍ଣର୍‌ଙ୍କର ଏବଂ ବିହାର, ଓଡ଼ିଶା ଓ ଛୋଟନାଗପୁର ଜଣେ ଲେଫ୍‌ଟେନାଣ୍ଟ ଗଭର୍ଣ୍ଣର୍‌ଙ୍କର ଶାସନକର୍ତ୍ତୃତ୍ୱାଧୀନ ହେଲା । କିଛି ସମୟପରେ ବିହାର-ଓଡ଼ିଶା କାଉନ୍‌ସିଲ୍ (ବ୍ୟବସ୍ଥା ସଭା) ମଧ୍ୟ ଗଠନ କରାଗଲା । ବଙ୍ଗବ୍ୟବଚ୍ଛେଦ ଆନ୍ଦୋଳନର ଅଦ୍ୱିତୀୟ ବାକ୍‌ଶକ୍ତିଧାରୀ ଅଗ୍ନିବର୍ଷୀ ଉତ୍କଳୀୟ ନେତା ବିଶ୍ୱନାଥଙ୍କୁ ସରକାର ପାଞ୍ଚ ବର୍ଷପାଇଁ ଉକ୍ତ କାଉନ୍‌ସିଲ୍‌ର ସଦସ୍ୟରୂପେ ବରଣ କଲେ ।

ବିଶ୍ୱନାଥ ପ୍ରଥମେ ଯେଉଁ ଦିନ ଭାଷଣ ଦେବାପାଇଁ ସଭାରେ ଦଣ୍ଡାୟମାନ ହେଲେ, ସେଦିନର ଅଧିବେଶନଟି ବିହାର-ଓଡ଼ିଶା କାଉନ୍‌ସିଲ୍‌ର ଇତିହାସରେ

ଚିରସ୍ମରଣୀୟ । ସେକାଳର ବ୍ୟବସ୍ଥା ସଭାରେ କେବଳ ଇଂରାଜୀରେ ଭାଷଣ ଦେବାର ରୀତି ପ୍ରଚଳିତ ଥିଲା । ବିଶ୍ୱନାଥ କିନ୍ତୁ ସେହି ପ୍ରଚଳିତ ରୀତିକୁ ସାହସର ସହିତ ଭଙ୍ଗ କରି ନିଜ ମାତୃଭାଷା ଓଡ଼ିଆରେ ବକ୍ତୃତା ଦେବାକୁ ବାହାରିଲେ । ତାଙ୍କ ମୁଖରୁ କେତୋଟିମାତ୍ର ପଦ ନିର୍ଗତ ହେଉ ନ ହେଉଣୁ ଅଣଓଡ଼ିଆ ସଭ୍ୟମହଲରୁ ପ୍ରବଳ ପ୍ରାତିବାଦ ହେଲା, "ମାନ୍ୟବର ସଭ୍ୟ ଓଡ଼ିଆରେ କହିପାରିବେ ନାହିଁ, ତାଙ୍କୁ ଅଲବତ୍ ଇଂରାଜୀରେ କହିବାକୁ ହେବ ।"

ବିଶ୍ୱନାଥ ଦୃଢ଼ତାର ସହିତ ଏପ୍ରକାର ଅହେତୁକ ପ୍ରତିବାଦର ଶାଣିତ ଉତ୍ତର ଦେଲେ :

"ଓଡ଼ିଆ ଏକ ସ୍ୱୀକୃତ ପ୍ରାଚୀନ ଭାଷା; ମୁଁ ଓଡ଼ିଆ, ମୋର ଭାଷା ଓଡ଼ିଆ, ମୋର ଓଡ଼ିଆ ଜିଭକୁ କାଟିଦେବାର ଅଧିକାର ଏଠାରେ କୌଣସି ମାନ୍ୟବର ସଭ୍ୟଙ୍କର ନାହିଁ । ମୋତେ ଓଡ଼ିଆ ଭାଷାରେ କୁହାଇ ନ ଦେବାକୁ ଅପଚେଷ୍ଟା କରିବାର ପରୋକ୍ଷ ଅର୍ଥ ଯେ ମୋର ଚରମାରାଧ୍ୟା ଉତ୍କଳମାତା ଓ ଉତ୍କଳଭାରତୀଙ୍କପ୍ରତି ଉପେକ୍ଷା ଓ ଅସମ୍ମାନ ପ୍ରଦର୍ଶନ ଛଡ଼ା ଆଉ କିଛି ନୁହେଁ, ଏହା ବିରୋଧକାରୀ ସଭ୍ୟବନ୍ଧୁମାନେ ଶୀତଳ ମସ୍ତିଷ୍କରେ ହୃଦୟଙ୍ଗମ କରିବା ଉଚିତ ।"

ସ୍ୱୟଂ ଲାଟସାହେବଙ୍କୁ ଏହି ବିବାଦୀୟ ପ୍ରଶ୍ନର ତାତ୍‌କ୍ଷଣିକ ସମାଧାନ କରିବାକୁ ହେଲା । ସେ ନିର୍ଦ୍ଦେଶ ଦେଲେ :

"ଗୃହର ସୁବିଧା ଦୃଷ୍ଟିରୁ ଇଂରାଜୀ ଭାଷାରେ ଭାଷଣ ଦେବାର ପରଂପରା ରହିଆସିଥିଲେହେଁ ଏହା ବିଧିଗତ ବାଧ୍ୟବାଧକତାଦ୍ୱାରା ନିୟନ୍ତ୍ରିତ ନୁହେଁ । କେହି ମାନ୍ୟବର ସଭ୍ୟ ନିଜ ମାତୃଭାଷାରେ ଭାଷଣ ଦେବାକୁ ଇଚ୍ଛା କଲେ ସେଥିପାଇଁ କୌଣସି ବୈଧାନିକ ବାଧା ନାହିଁ ।"

ଅସାମାନ୍ୟ ବାଗ୍ମିତାପଟୁ ବିଶ୍ୱନାଥ ଓଡ଼ିଆରେ ବକ୍ତୃତା ଆରମ୍ଭ କରିଦେଲେ । ତାଙ୍କର ଓଜସ୍ୱିନୀ ଭାଷାପୂର୍ଣ୍ଣ ବିରାମହୀନ ଭାଷଣ ସଭାଗୃହର ପ୍ରତ୍ୟେକ ବ୍ୟକ୍ତିକୁ ସ୍ତବ୍ଧ ଚମକିତ କରିଦେଲା । ଓଡ଼ିଶାରେ ଯେ ଏପରି ଅନର୍ଗଳ ବକ୍ତା ଅଛନ୍ତି, ସମୁଚିତ ଭାବଭାବନାରାଶି ପ୍ରାଞ୍ଜଳଭାବରେ ଓ ମନୋଜ୍ଞ ଭଙ୍ଗୀରେ ପ୍ରକାଶ କରିବାକୁ ଓଡ଼ିଆ ଭାଷାର ଯେ ଏତେ ବିପୁଳ ଶବ୍ଦସମ୍ଭାର ରହିଛି, ସେହି ଦିନହିଁ ଉପସ୍ଥିତ ସଦସ୍ୟବୃନ୍ଦ ପ୍ରଥମେ ଧାରଣା କରିପାରିଲେ ।

ବ୍ୟାସକବି ଫକୀରମୋହନ ବିଶ୍ୱନାଥଙ୍କ ବାଗ୍ମିତା ସମ୍ବନ୍ଧରେ ସ୍ୱରଚିତ ('କେନଚିତ୍ ଉତ୍କଳପୁତ୍ରେଣ ବିରଚିତଂ' ବୋଲି ମୁଦ୍ରିତ) 'ଉତ୍କଳଭ୍ରମଣଂ' ପୁସ୍ତକରେ ତାଙ୍କର ସ୍ୱଭାବସୁନ୍ଦର ଭାଷାରେ ଯେପରି ବର୍ଣ୍ଣନା କରିଥିଲେ, ତାହା ଏଠାରେ ଉଦ୍ଧାର କରାଗଲା :

"ତେର ଦିନ ଭାବି ଭାବି ବୁଝିଛୁ ମନରେ
ଲୋକ ପରି ଲୋକଟାଏ ବିଶ୍ୱନାଥ କରେ ।
ସଭାସମିତିରେ ଯେବେ ଦେବ ତାଙ୍କୁ ଗୁଣ୍ଡ
ବକ୍ତୃତାଟା ବଡ଼ିପାଣି ପରି ଯିବ ମାଡ଼ି ।
ବାଟୁଳି ବାଜିବ ନାହିଁ କଥା ଗଲେ ଜଣ୍ଟି
ଉଗୁଡ଼ା ମାଠିଆ-ମୁହଁ ପାଣି ପରି ବହି ।"

କେବଳ ବଙ୍ଗଭଙ୍ଗକାଳୀନ ସ୍ୱଦେଶୀ ଆନ୍ଦୋଳନରେ ଓ ପ୍ରାଦେଶିକ ବ୍ୟବସ୍ଥା ସଭାରେ ବିଶ୍ୱନାଥଙ୍କ ବାଗ୍ମିତା ପର୍ଯ୍ୟବସିତ ନ ଥିଲା । ଓଡ଼ିଶାର ବହୁ ସରକାରୀ ବେସରକାରୀ ସଂସ୍ଥା, ଜାତୀୟ ଅନୁଷ୍ଠାନ ଓ ସାଧାରଣ ସଭାସମିତି ମଧ୍ୟ ତାଙ୍କ ଅନନ୍ୟସୁଲଭ ବକ୍ତୃତାର ଥିଲା ପ୍ରଶସ୍ତ ମଞ୍ଚ । ସେ କଟକର ରେଭେନ୍‌ସା କଲେଜ, ଟ୍ରେନିଂ କଲେଜ, ନର୍ମାଲ୍ ସ୍କୁଲ, ମେଡ଼ିକାଲ୍ ସ୍କୁଲ, ଇଂଜିନିୟରିଂ ସ୍କୁଲ, ପ୍ୟାରୀମୋହନ ଏକାଡ଼େମୀ, ମୋସ୍‌ଲେମ୍ ସେମିନାରୀ, ଭିକ୍ଟୋରିଆ ସ୍କୁଲ ଆଦି ଅନେକ ବିଦ୍ୟାପୀଠର ମ୍ୟାନେଜିଂ କମିଟିର ଏବଂ ଜିଲ୍ଲା ବୋର୍ଡ଼୍, ମ୍ୟୁନିସିପାଲିଟି ଓ ବିହାର-ଓଡ଼ିଶା ପାଠ୍ୟପୁସ୍ତକ ସଭା ( B. & O. Textbook Committee )ର ସଦସ୍ୟ ଥିଲେ । ଉତ୍କଳ ସାହିତ୍ୟସମାଜ ଓ ବ୍ରାହ୍ମସମାଜର ଯଥାକ୍ରମେ ସେ ଥିଲେ ସହକାରୀ ସଭାପତି ଓ ସଭାପତି । ଏହାଛଡ଼ା ଓଡ଼ିଆ ଜାତିର ମିଳନପୀଠ ଉତ୍କଳ ସମ୍ମିଳନୀର ଥିଲେ ଅନଳସ ପଣ୍ଡକର୍ମୀ ଓ ଉଦ୍‌ଗାତା, ପ୍ରବକ୍ତା । ଏସମସ୍ତ କ୍ଷେତ୍ରରେ ସ୍ୱୟଂସିଦ୍ଧ ବିଶ୍ୱନାଥଙ୍କ ମୁଖରୁ ଯେଉଁ ସ୍ୱତଃସ୍ଫୂର୍ତ୍ତ ବକ୍ତୃତାଧାରା ବହିଆସୁଥିଲା, ତାହା ଶ୍ରୋତୃମଣ୍ଡଳୀର କର୍ଣ୍ଣରେ କେତେବେଳେ ଅମୃତ ଢାଳିଦେଉଥିଲା, କେତେବେଳେ ପୁଣି ଭୂମାନନ୍ଦ ବିଭୂତିର ଅନାହତ ପରମଧ୍ୱନି ଝଙ୍କାରିତ କରୁଥିଲା । ମଞ୍ଚପ୍ରକମ୍ପନକାରୀ ଅନନ୍ୟପ୍ରତିଭାଧାରୀ ଏହି ପୁରୁଷବର୍ଯ୍ୟଙ୍କୁ ତେଣୁ ଗୁଣମୁଗ୍ଧ କୋଟିଜନମୁଖ ଅଭିନନ୍ଦନ କଲା 'ବାଗ୍ମୀ' ଆଖ୍ୟାର ଶ୍ରଦ୍ଧାଞ୍ଜଳି ଢାଳି । ସେହି ଦିନୁଁ ସ୍ୱଦେଶରେ ତଥା ସ୍ୱଦେଶବାହାର

ବଙ୍ଗ, ବିହାରରେ ତାଙ୍କୁ ଅଧିକ ପରିଚିତ କରାଇଥିଲା ଜନତାପ୍ରଦତ୍ତ ଏହି 'ବାଗ୍ମୀ ବିଶ୍ୱନାଥ' ନାମ ।

ସେସମୟରେ ବଙ୍ଗମାତାର ବରପୁତ୍ର ସୁରେନ୍ଦ୍ରନାଥ ବନ୍ଦ୍ୟୋପାଧ୍ୟାୟ ଅପ୍ରତିଦ୍ୱନ୍ଦ୍ୱୀ ବକ୍ତାରୂପେ ଭାରତରେ ସୁଖ୍ୟାତି ଅର୍ଜନ କରିଥାନ୍ତି । ବଙ୍ଗୀୟ ସାହିତ୍ୟ କ୍ଷେତ୍ରର ଅନ୍ୟତମ ଦିକ୍‌ପାଳ ସ୍ୱନାମଧନ୍ୟ ରାମାନନ୍ଦ ଚଟ୍ଟୋପାଧ୍ୟାୟ ଓ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ବାଗ୍ମିବର ବିଶ୍ୱନାଥଙ୍କର ବଙ୍ଗଭଙ୍ଗକାଳୀନ ଆନ୍ଦୋଳନରେ ଓ ବିହାର-ଓଡ଼ିଶା କାଉନ୍‌ସିଲ୍‌ରେ ପ୍ରଦତ୍ତ ଓଜସ୍ୱିନୀ ବକ୍ତୃତା ଶୁଣି ତାଙ୍କୁ 'ଉତ୍କଳର ସୁରେନ୍ଦ୍ରନାଥ' ପଦବୀରେ ଅଭିନନ୍ଦିତ କରିଥିଲେ ।

ପୁସ୍ତକମାନ ରଚନା କରି ଲେଖକଯଶ ଅର୍ଜନ କରିବାର କଳ୍ପନା ବା ସ୍ପୃହା ବିଶ୍ୱନାଥଙ୍କର ଆଦୌ କେବେ ନ ଥିଲା । ବରଂ, ନୂତନ ନୂତନ ଲେଖକ ସୃଷ୍ଟି କରି ସେମାନଙ୍କ ରଚନାଦ୍ୱାରା ଉତ୍କଳଭାରତୀଙ୍କ ରତ୍ନଭଣ୍ଡାରକୁ ଅଧିକତର ଋଦ୍ଧିମନ୍ତ ଓ ଶ୍ରୀମନ୍ତ କରିବାହିଁ ତାଙ୍କର ଥିଲା ଆଜୀବନ ଲକ୍ଷ୍ୟ । କେତେକ ଆଲୋଚନାଚକ୍ର ଓ ସାହିତ୍ୟସଭାରେ ସେ ଯେଉଁ ସ୍ୱତଃସ୍ଫୂର୍ତ୍ତ (extempore) ବକ୍ତୃତା ଦେଇଥିଲେ, ସେହିଗୁଡ଼ିକହିଁ ଲିପିଆକାରରେ ସଂକଳିତ ହୋଇ 'ବିବିଧ ପ୍ରବନ୍ଧ' ପୁସ୍ତକରୂପେ ପ୍ରକାଶିତ ହୋଇଥିଲା ।



# ଜାତୀୟତାବାଦୀ ବିଶ୍ୱନାଥ

ଦେଶାତ୍ମବୋଧ ଓ ଜାତୀୟତାବୋଧ ପରସ୍ପର ଅଙ୍ଗାଙ୍ଗୀ । ଏ ଦୁଇଟିଯାକ ଗୁଣ ବିଶ୍ୱନାଥଙ୍କଠାରେ ପୂର୍ଣ୍ଣମାତ୍ରାରେ ବିଦ୍ୟମାନ ଥିଲା । ସର୍ବୁମନ୍ତେ ଜାତୀୟତାରକ୍ଷା ଯେ ଜାତିସମ୍ମାନବୃଦ୍ଧିର ମୂଳ ମନ୍ତ୍ର, ଏହା ଥିଲା ତାଙ୍କର ସାର୍ବଜନୀନ ଘୋଷଣା । ସ୍ୱଦେଶୀ ଆନ୍ଦୋଳନରେ ଯୋଗ ଦେବା ଦିନଠାରୁ ସେ ହାତବୁଣାମର ବ୍ୟବହାର ଆରମ୍ଭ କରିଥିଲେ ଏବଂ ଜୀବନର ଶେଷ ମୁହୂର୍ତ୍ତ-ପର୍ଯ୍ୟନ୍ତ ସେହି ଅଭ୍ୟାସ ଅବ୍ୟାହତ ରଖିଥିଲେ । ପରିଧାନରେ ତାଙ୍କର ଆଦୌ ଆଡ଼ମ୍ବର ବା ଅଳଙ୍କରଣ ନ ଥିଲା । ପରିଚ୍ଛଦ ଥିଲା ସଂପୂର୍ଣ୍ଣ ସାଦାସିଧା ଓ ଜାତୀୟତାର ଦ୍ୟୋତକ ଅର୍ଥାତ୍ ଧୋତି, ଚଦର ଓ ଖଣ୍ଡିଏ କୁର୍ତ୍ତା ଲମ୍ବା ଅଙ୍ଗି । ସେହି ପୋଷାକ ପିନ୍ଧି ସେ ସରକାରୀ ଅଣସରକାରୀ ସବୁ ସ୍ଥଳକୁ ଗମନ କରୁଥିଲେ । ଏପରି କି ମହାମାନ୍ୟ ଲାଟଙ୍କୁ ଦେଖା କରିବାକୁ ଗଲାବେଳେ କିଂବା ଲାଟଭବନର ନିମନ୍ତ୍ରଣ ରକ୍ଷା କରି ଚାଭୋଜ (tea-party) ବା ନୈଶଭୋଜ (dinner-party)ରେ ଯୋଗ ଦେଲାବେଳେ ମଧ୍ୟ ଠିକ୍ ସେଇ ସ୍ୱଦେଶୀ ପୋଷାକ । ବ୍ୟବସ୍ଥା ସଭାରେ ତାଙ୍କର ଏହି ଖାଣ୍ଟି ଓଡ଼ିଶୀ ବେଶ ସବୁରି ଦୃଷ୍ଟିର ଏକ ମହାନ୍ ଆକର୍ଷଣ ହୋଇଥାଏ ।

କେହି ଜଣେ ବନ୍ଧୁ ଥରେ ବିଶ୍ୱନାଥଙ୍କୁ ପଚାରିଲେ, "ସମସ୍ତେ ତ ଦାମିକା କୋଟ୍ ପ୍ୟାଣ୍ଟ ପିନ୍ଧି, ବେକରେ 'ଟାଇ' (tie) ଭିଡ଼ି ଫିଟ୍‌ଫାଟ୍‌ରେ ଲାଟଭବନକୁ ଆସୁଛନ୍ତି, ଆପଣଙ୍କ ବେଶରେ ଏପରି ଦାରିଦ୍ର୍ୟ କାହିଁକି ? ଆପଣ କଣ ବିଦେଶୀ ପୋଷାକକୁ ଘୃଣା କରନ୍ତି ?"

ବିଶ୍ୱନାଥ ଉତ୍ତରରେ କହିଲେ :

"ବନ୍ଧୁ, ଆପଣଙ୍କୁ ବିଦେଶୀ ଢାଞ୍ଚାର ଚାକଚକ୍ୟ ଯେ ବିଭ୍ରାନ୍ତ କରି-ପକାଇଛି, ଏ ପ୍ରଶ୍ନଟିହିଁ ତାର ସୂଚନା ଦିଏ । ମୋ ପୋଷାକରେ ଆପଣଙ୍କ ଚକ୍ଷୁ ଦାରିଦ୍ର୍ୟର ଆଭାସ ପାଇଲା; କିନ୍ତୁ ମୋ ଚକ୍ଷୁରେ ଏହା ମହା ମୂଲ୍ୟ-ବାନ୍, କାରଣ ଏ ପୋଷାକ ମୋ ଜାତୀୟତାର ପ୍ରତୀକ । ଯେଉଁ ବ୍ୟକ୍ତି ନିଜ ଜାତୀୟତାକୁ ଯଥାର୍ଥ ସମ୍ମାନ ଦେଇଜାଣେ, ସେ କେବେହେଲେ ଅନ୍ୟର ଜାତୀୟ ପୋଷାକକୁ ଅସମ୍ମାନ ପ୍ରଦର୍ଶନ କରିପାରେ ନାହିଁ, ଘୃଣା କରିବା ତ ଦୂରର କଥା ! ସାହେବମାନଙ୍କ ଜାତୀୟ ପ୍ରୀତି ଅତି ପ୍ରବଳ । ଆମର ସେହି ଗୁଣଟିକୁ କେବଳ ଅନୁକରଣ କରିବାର କଥା, ସେମାନଙ୍କ ପୋଷାକକୁ ନୁହେଁ । ସେ ପୋଷାକ ଶୀତପ୍ରଧାନ ଦେଶର ପୋଷାକ; ତଥାପି ସେମାନେ ନିଜ ଜାତୀୟତା ରକ୍ଷା କରିବାକୁ ଯାଇ ଭାରତ ଭଳି ଗ୍ରୀଷ୍ମପ୍ରଧାନ ଦେଶରେ ସୁଦ୍ଧା ତାହା ଛାଡ଼ିପାରୁ ନାହାନ୍ତି । ଏଥିରୁ କଣ ଆପଣ କିଛି ଶିକ୍ଷା କରିପାରୁ ନାହାନ୍ତି ? ମୁଁ ଯେ କାହିଁକି ଗୋଡ଼ମୁଣ୍ଡା ନ ପିନ୍ଧି, ଗଳାବନ୍ଧା ନ ବାନ୍ଧି ଧୋତି-ଚଦର-ଅଙ୍ଗିକା ପରିଧାନ କରିଛି, ଏବେ ବୁଝିପାରିଲେ ତ ?"

ଅପ୍ରତିଭ ପ୍ରଶ୍ନକର୍ତ୍ତା ନିଜର ଭ୍ରମ ବୁଝିପାରିଲେ ଏବଂ ବନ୍ଧୁଙ୍କ ଗଭୀର ଜାତୀୟତାବୋଧ ଓ ନିବିଡ଼ ଜାତୀୟ ପ୍ରୀତିର ପରିଚୟ ପାଇ ଅବାକ୍ ହୋଇଗଲେ । ତାଙ୍କର ଆଖି ଫିଟିଲା ।



# ସମାଜସଂସ୍କାର : ଗ୍ରାମାଞ୍ଚଳର ଉନ୍ନୟନ

'ଉତ୍କଳସାହିତ୍ୟ', ଉତ୍କଳସାହିତ୍ୟ ପ୍ରେସ, ଅପ୍ରତିଦ୍ୱନ୍ଦ୍ୱୀ ବାଗ୍ମିତା ଓ ଜନକଲ୍ୟାଣକର କାର୍ଯ୍ୟାବଳି ଯୋଗୁଁ ବିଶ୍ୱନାଥ ଏବେ ସାହିତ୍ୟ କ୍ଷେତ୍ରରେ ତଥା ସର୍ବସାଧାରଣ କ୍ଷେତ୍ରରେ ଉତ୍କଳମାତାର ବରପୁତ୍ରରୂପେ ଆତ୍ମପ୍ରତିଷ୍ଠ । କେବଳ ଦୁଃଖର କଥା, କୁଳକୌସ୍ତୁଭ ପୁତ୍ରର ଏହି ଯଶସ୍ୱୀ ଜୀବନର ମୂର୍ତ୍ତିମାନୀ ଦେଖିବାକୁ ପିତା ନାରାୟଣଚନ୍ଦ୍ର ଓ ପିତୃବ୍ୟ ମାଧବଚନ୍ଦ୍ର ସେତେବେଳେ ଇହଲୋକରେ ନ ଥିଲେ ।

ପତ୍ନୀ ଜାନକୀଙ୍କୁ ଆବର୍ଜନାବହୁଳ ଗ୍ରାମ୍ୟ ପରିବେଶରୁ ଉଦ୍ଧାର କରି କଟକ ଆଣିବା ଦିନଠାରୁ ଏହାମଧ୍ୟରେ ବହୁ ବର୍ଷ ଅତିକ୍ରାନ୍ତ ହୋଇଯାଇଛି । ଏହି ଦୀର୍ଘ ସମୟ ସୁତ୍ରକ ସେ ନିଜ ଗ୍ରାମ ଓ ପରିବାରର ପ୍ରତ୍ୟକ୍ଷ ସମ୍ପର୍କରୁ ପ୍ରାୟ ବିଚ୍ଛିନ୍ନ ହୋଇ ରହିଥାନ୍ତି । କିନ୍ତୁ ଅଜୀବ ସୁନ୍ଦର କଥା, ଏଥିଭିତରେ ତାଙ୍କ ଧର୍ମତ୍ୟାଗଜନିତ ଆନ୍ଦୋଳନର ଝଡ଼ ଗ୍ରାମରେ ପୂରି ଥମିଯାଇଥାଏ । ସମୟର ଯାଦୁକରୀ ଶକ୍ତିରେ ସ୍ଥାନୀୟ ଅଧିବାସୀମାନଙ୍କ ମନରୁ ପୂର୍ବ ଅମର୍ଷ, ଅସୂୟା ଓ ଅସହିଷ୍ଣୁତା ସଂପୂର୍ଣ୍ଣ ପାସୋର ଯାଇଥାଏ । ଯେଉଁମାନଙ୍କ ମୁଖ ଦିନେ ବିଶ୍ୱନାଥଙ୍କର ନିନ୍ଦାରଟନାରେ ଶତଜିହ୍ୱ ହୋଇଯାଇଥିଲା, ଏବେ ସେହିମାନଙ୍କ ମୁଖ ତାଙ୍କର ଅଜସ୍ର ଗୁଣଗାନରେ ବିଦ୍ୟୁଜ୍ଜିହ୍ୱ ହୋଇଉଠିଛି । ଏହାଫଳରେ କଟକବାସୀ ବିଶ୍ୱନାଥ-ପରିବାର ଓ ଗ୍ରାମବାସୀ ନରନାରୀଙ୍କ ମଧ୍ୟରେ ଅବାଧ ମିଳାମିଶାର ସୂତ୍ରପାତ ହେଲା । ପରିବର୍ତ୍ତିତ ସାମାଜିକ ପରିସ୍ଥିତିର ଏହି ଶୁଭ ଶକୁନହିଁ ବିଶ୍ୱନାଥଙ୍କୁ ତାଙ୍କ ଜନ୍ମସ୍ଥାନ ଓ ପାରିପାର୍ଶ୍ୱିକ ପଲ୍ଲିସମୂହର ଆଧୁନିକୀ-କରଣପାଇଁ ସ୍ୱତଃପ୍ରଣୋଦିତ କଲା ।

ଯେପର୍ଯ୍ୟନ୍ତ ଆଧୁନିକ ସଭ୍ୟତା ଗାଁଗହଳର ଅନ୍ଧସନ୍ଧିରେ ପ୍ରବେଶ ନ କରିଛି, ପଲ୍ଲିଜନତାର ନିରକ୍ଷରତା ଦୂର ନ ହୋଇଛି, ଦେଶର ଭବିଷ୍ୟତ୍ ଆଶାଭରସା ଆମ ଗ୍ରାମ୍ୟ ପୁଅଝିଏ ନବ୍ୟ ଶିକ୍ଷାର ଆଲୋକ-ସ୍ରୋତରେ ସନ୍ତରଣ ନ କରିଛନ୍ତି, କେବଳ ସହରୀ ଶିକ୍ଷା-ସଭ୍ୟତା ଉତ୍କଳର ତଥା ଭାରତର ଭାଗ୍ୟ ବଦଳାଇଦେଇପାରିବ ନାହିଁ—ଏହି ବିଶ୍ୱାସ ବିଶ୍ୱନାଥଙ୍କ ମନରେ ଦୃଢ଼ୀଭୂତ ହୋଇଥାଏ । ଏଥିପାଇଁ ସେ ନିଜ ଗ୍ରାମାଞ୍ଚଳକୁ ପହିଲେ ପରୀକ୍ଷାକ୍ଷେତ୍ରରୂପେ ବାଛିନେଲେ ଏବଂ ସେଠାରେ ଏକ ଉନ୍ନୟନମୂଳକ ଯୋଜନା କାର୍ଯ୍ୟକାରୀ କରିବାକୁ ଯାଇ ପ୍ରଥମ ପର୍ଯ୍ୟାୟରେ ଶିକ୍ଷାପ୍ରସାରକୁ ଅଗ୍ରାଧିକାର ଦେଲେ । ତାହାର ମାଧ୍ୟମରେ ସାକ୍ଷରତା ଅଭିଯାନ ଓ ଅସ୍ପୃଶ୍ୟତା-ନିବାରଣର ମୂଳଦୁଆ-ଗଠନ ମଧ୍ୟ ଆନୁଷଙ୍ଗିକ ଲକ୍ଷ୍ୟ ରହିଲା । କାରଣ ବିଶ୍ୱନାଥ ପୂର୍ବରୁ ବହୁ ବକ୍ତୃତାରେ କହିଆସିଥିଲେ ଯେ, ନାରୀଶିକ୍ଷାର ପ୍ରସାର ଓ ଜାତିଭେଦ ପ୍ରଥାର ଉଚ୍ଛେଦ ସର୍ବାଦୌ କରଣୀୟ । ଭାରତର ଜନସଂଖ୍ୟାର ଅର୍ଦ୍ଧେକ ହେଉଛନ୍ତି ନାରୀ । ଏମାନଙ୍କୁ ସର୍ବବିଧ ଜାଗତିକ ସୁବିଧାରୁ ବଞ୍ଚିତ କରିବାଦ୍ୱାରା ପରୋକ୍ଷରେ ଦେଶମାତାଙ୍କୁ ମୁକ୍ତ ହେବାରୁ ବଞ୍ଚିତ କରାଯାଉଛି । ପୁଣି ଜାତିଭେଦ-ଜନିତ ଜାତିଅଭିମାନ ବା ସାଂପ୍ରଦାୟିକ ବିଦ୍ୱେଷ ଦେଶର ଅଗ୍ରଗତିକୁ ଦିନକୁ ଦିନ ପଛେଇଦେଉଛି । ଏଣୁ ନାରୀସଂପ୍ରଦାୟର ଅନଗ୍ରସରତା ଓ ଜାତି-ଜାତି ମଝିରେ ସଂଘର୍ଷ ଜନ୍ମଭୂମିର ସ୍ୱାଧୀନତା-ପଥରେ ଅଲଙ୍ଘ୍ୟ କଣ୍ଟକପ୍ରାଚୀର ହୋଇ ରହିଛି ।

ସେତେବେଳପର୍ଯ୍ୟନ୍ତ ମୂଳବସନ୍ତ ଭଳି ଗ୍ରାମରେ ସୁଦ୍ଧା ପ୍ରାଥମିକ ବିଦ୍ୟାଳୟ ସ୍ଥାପିତ ହୋଇ ନ ଥିଲା । ବଡ଼ ବଡ଼ ଗ୍ରାମରେ କେବଳ ଗୋଟିଏ ଗୋଟିଏ ଘରୋଇ ଚାଟଶାଳୀ ରହିଥାଏ । ସମଗ୍ର ଅଞ୍ଚଳପାଇଁ ଗୋଟିଏମାତ୍ର ମଧ୍ୟଇଂରାଜୀ ବିଦ୍ୟାଳୟ ଥାଏ କୋଠପଦାରେ । ସେଥିରେ ପ୍ରଥମ ଶ୍ରେଣୀଠାରୁ ସପ୍ତମ ଶ୍ରେଣୀପର୍ଯ୍ୟନ୍ତ ଶିକ୍ଷାର ସୁବିଧା ଥିଲେହେଁ ପାଖ ଗାଁ କେତୋଟିର ପିଲାଙ୍କ ଛଡ଼ା ଅନ୍ୟ ଗାଁଗୁଡ଼ିକର ଛୋଟ ଶିଶୁମାନଙ୍କ ପକ୍ଷରେ ଏତେ ଦୂରକୁ ଯାଇ ତଳ ଶ୍ରେଣୀରୁ ପଢ଼ା ଆରମ୍ଭ କରିବା ସମ୍ଭବପର ହେଉ ନ ଥିଲା । ଫଳରେ ସେମାନଙ୍କ ଶିକ୍ଷା ଚାଟଶାଳୀପାଠପରେହିଁ ଇତିଶ୍ରୀ ହେଉଥିଲା ଏବଂ ସେହି କାରଣରୁ କୋଠପଦା ସ୍କୁଲର ଛାତ୍ରସଂଖ୍ୟା ଆଦୌ ଆଶାନୁରୂପ ହୋଇପାରୁ ନ ଥିଲା ।

## ବାଳକ ବିଦ୍ୟାଳୟ

ବିଶ୍ୱନାଥଙ୍କର ପ୍ରଥମ ପଦକ୍ଷେପ ହେଲା ଆଞ୍ଚଳିକ କେନ୍ଦ୍ର ମୂଳବସନ୍ତରେ ବାଳକମାନଙ୍କପାଇଁ ଗୋଟିଏ ଉଚ୍ଚପ୍ରାଥମିକ ବିଦ୍ୟାଳୟ ପ୍ରତିଷ୍ଠା । ଜିଲ୍ଲା ବୋର୍ଡ଼୍‌ର ମେମ୍ବର ଥିବାରୁ ସରକାରୀ ସାହାଯ୍ୟ ମଞ୍ଜୁର କରାଇବା ତାଙ୍କ ପକ୍ଷରେ କଷ୍ଟକର ହେଲା ନାହିଁ । ସ୍କୁଲଟି ବେଶ୍ ଚାଲିଲା । ଢେର୍ ପିଲା ହେଲେ । ଶିଶୁ ଶ୍ରେଣୀଠାରୁ ପଞ୍ଚମ ଶ୍ରେଣୀପର୍ଯ୍ୟନ୍ତ ଶିକ୍ଷାଦାନର ବ୍ୟବସ୍ଥା ଥିବାରୁ ପାଖ ଗାଁର ପିଲାଏ ଏଠାକୁ ଆସି 'ଅ ଆ' ଆରମ୍ଭ କଲେ ଏବଂ ଦୂର ଗାଁର ପିଲାଏ ଚାହାଳିପାଠ ସାରି ଏଠାରେ ନାଁ ଲେଖାଇଲେ । ବସ୍ତୁତଃ ଏହି ଉ. ପ୍ରା. ବିଦ୍ୟାଳୟଟି ଛାତ୍ରଯୋଗାଣ ଦିଗରେ କୋଠପଦା ମି. ଇଂ. ସ୍କୁଲର ସହାୟକ ସ୍କୁଲ(feeder school)ରୂପେ ଖୁବ୍ ସୁନାମ ଅର୍ଜିଲା ।

## ବାଳିକା ବିଦ୍ୟାଳୟ

ପୂର୍ବେଦୃଷ୍ଟିହୀନ ରକ୍ଷଣଶୀଳ ସମାଜର ତତ୍କାଳୀନ ସ୍ଥିତିରେ ସୁଧୀନ୍ଦ୍ର ବିଶ୍ୱନାଥ ସହଶିକ୍ଷାର ପକ୍ଷପାତୀ ନ ଥିଲେ । ତେଣୁ ଝିଅମାନଙ୍କପାଇଁ ସ୍ୱତନ୍ତ୍ର-ଭାବରେ ସେ ଗୋଟିଏ ଉ. ପ୍ରା. ବିଦ୍ୟାଳୟ ବସାଇଲେ । 'ଝିଅଙ୍କ ଜୀବନ ଚୁଲିମୁଣ୍ଡିକୁ' ଯୁଗରେ ବିଶ୍ୱନାଥଙ୍କ ପ୍ରୋତ୍ସାହନରେ ମୂଳବସନ୍ତ ଓ ଚତୁପାର୍ଶ୍ୱବର୍ତ୍ତୀ ଗ୍ରାମଗୁଡ଼ିକର ଯେତେ ଝିଅ ଏହି ବାଳିକା ବିଦ୍ୟାଳୟକୁ ଆଗ୍ରହସହକାରେ ପଢ଼ିବାକୁ ଆସିଲେ, ସେମାନଙ୍କ ସଂଖ୍ୟା ନିଶ୍ଚିତଭାବରେ ଅତ୍ୟଧିକ ବୋଲି କୁହାଯିବ ।

**ଅସବର୍ଣ୍ଣ ଓ ସବର୍ଣ୍ଣ ପିଲାଙ୍କର ସହଶିକ୍ଷା**—ଉପରବର୍ଣ୍ଣିତ ଦୁଇଟିଯାକ ସ୍କୁଲରେ ଯେଉଁ ବୈପ୍ଳବିକ ଅଭିନବ ପଦ୍ଧତି ପ୍ରବର୍ତ୍ତିତ ହୋଇଥିଲା, ତାହା ବିଶେଷ ଉଲ୍ଲେଖଯୋଗ୍ୟ । ତଥାକଥିତ ଅସ୍ପୃଶ୍ୟ ଜାତିର ପୁଅ ଓ ଝିଅଙ୍କୁ ଉପର୍ଯ୍ୟୁକ୍ତ ଦୁଇ ବିଦ୍ୟାଳୟରେ ସ୍ପୃଶ୍ୟ ଜାତିର ପୁଅ ଓ ଝିଅଙ୍କ ସହିତ ଏକତ୍ର ଶିକ୍ଷା ଦିଆଯାଉଥିଲା । ଅବଶ୍ୟ ପ୍ରଥମୋକ୍ତ ପିଲାଙ୍କପାଇଁ ସ୍ୱତନ୍ତ୍ର ପଙ୍‌କ୍ତି ନିର୍ଦ୍ଦିଷ୍ଟ ଥିଏ । ଯେଉଁ ଅସ୍ପୃଶ୍ୟତାର ନିବାରଣ ଗାନ୍ଧିଜୀଙ୍କର ଚରମଧ୍ୟେୟ ଥିଲା ଏବଂ ଯାହାର ପାତାଳଭେଦୀ ଚେର ଏ ଦେଶର ମାଟିରୁ ସବାପୋଛ ହେବାପାଇଁ ଶତାବ୍ଦୀ ପାହିଯିବ, ବିଶ୍ୱନାଥ ଯେ ତାର ଗୋଟିଏ ହାଣିବା ଲାଗି ବିଂଶ ଶତାବ୍ଦୀର ପ୍ରାକ୍‌କାଳରେ କିଶୋରସେନା-ଡିଆରିର ସ୍ୱପ୍ନ ଦେଖିସାରିଥିଲେ, ଏହା ତାଙ୍କର କମ୍ ଦୂରଦର୍ଶିତାର ପରିଚ୍ୟାୟକ ନୁହେଁ ।

## ସାକ୍ଷରତା-ପ୍ରସାରପାଇଁ ନୈଶ ବିଦ୍ୟାଳୟ

ନିରକ୍ଷର-ନିରକ୍ଷରୀମାନଙ୍କପାଇଁ ନୈଶ ପାଠଶାଳାଟିଏ ମଧ୍ୟ ଘରୋଇ-ଭାବରେ ପରିଚାଳିତ ହେଲା । ଏଥିପାଇଁ ଜିଲାବୋର୍ଡ଼ର ସାହାଯ୍ୟ ମଗାଗଲା ନାହିଁ । କର୍ଣ୍ଣଜ୍ଞାନହୀନ ପୁରୁଷ-ସ୍ତ୍ରୀ, ଚାକର-ଚାକରାଣୀ, ମୂଲିଆ-କୋଠିଆ, ଏଇମାନେ ହେଲେ ଏ ରାତ୍ରି ବିଦ୍ୟାଳୟର ଛାତ୍ରଛାତ୍ରୀ । ଏମାନଙ୍କୁ ଅକ୍ଷରଶିକ୍ଷା ଦେଲେ ବାରମାସି ଗ୍ରାମରେ ରହୁଥିବା କେତେ ଜଣ ଅଧାପାଠୁଆ ଲୋକ । ଯେଉଁ ଅପାଠୋଇ ଝିଏ ଏହି ଗ୍ରାମକୁ ବୋହୂ ହୋଇ ଆସିଲେ, ସେମାନେ ଘରର ପଢ଼ୁଆ ପିଲାଙ୍କ ସାହାଯ୍ୟରେ ମଧ୍ୟ ଅକ୍ଷରମାଳା ସହିତ ପରିଚିତ ହୋଇଗଲେ । ଅନ୍ୟ ଦୁଇଟି ସ୍କୁଲ ଅପେକ୍ଷା ଏହି ରାତ୍ରି ପାଠଶାଳାଟି ବିଶ୍ୱନାଥଙ୍କର ଅଧିକ ଆନନ୍ଦଦାୟକ ହେଲା । କାରଣ କେତେଟା ମାସପରେ ଦେଖାଗଲା, ଗାଈଆଳ ଟୋକାଏ ପଡ଼ିଆ-ବାଡ଼ିରେ ଗୋଧନ ଚରାଇଲାବେଳେ ବୈଷ୍ଣବ ପାଣିଙ୍କ ସୁଆଙ୍ଗ ବହି ଧରି ସୁନ୍ଦର ସ୍ୱରରେ ଗୀତ ଗାଇବାକୁ ଲାଗିଲେ । ବୋହୂ-ଭୁଅସୁଣୀମାନେ ଫୁରୁସତବେଳେ ବହି ଧରି ପଢ଼ିବସିଲେ, ଆଉ ଦରବୁଢ଼ା-ଦରବୁଢ଼ୀଏ ସଞ୍ଜବେଳେ ଖଡ଼ମାରେ ପୁରାଣ ଥୋଇ ଅଧାକୁ ଅଧା ଭାଗବତ, ରାମାୟଣ ବୋଲିବସିଲେ ।

ନିରକ୍ଷରତା-ଦୂରୀକରଣରେ ଏ ଉପାୟଟି ଅଦ୍ଭୁତ ସାଫଲ୍ୟ ଦେବାରୁ ପାର୍ଶ୍ୱବର୍ତ୍ତୀ କେତେକ ଗ୍ରାମରେ ପଛକୁ ପଛ ଏଇ ଧରଣର ନୈଶ ପାଠଶାଳା-ମାନ ଆରମ୍ଭ ହୋଇଗଲା ଏବଂ ଦୂର ଗାଁମାନଙ୍କୁ କ୍ରମେ କ୍ରମେ ବ୍ୟାପିଲା । ଏଠାରେ କହିବାର କଥା ଏତିକ ଯେ, ବହୁତର ବର୍ଷପରେ ସରକାରୀ ଉଦ୍ୟମରେ ଯେଉଁ ସାକ୍ଷରତା ଅଭିଯାନ ଓ ପ୍ରୌଢ଼ଶିକ୍ଷା କାର୍ଯ୍ୟକ୍ରମଦ୍ୱୟର ସୂତ୍ରପାତ ହେଲା, ବିଶ୍ୱନାଥ ଉକ୍ତ ଦୁଇଟିଯାକର ସମନ୍ୱିତ ଯୋଜନାକୁ ନିଜ ଗ୍ରାମର ନୈଶ ପାଠଶାଳାରେ ବାଙ୍କଚାର ସହିତ ବିନା ଖର୍ଚ୍ଚରେ କାର୍ଯ୍ୟକାରୀ କରି ସରକାର ତଥା ଦେଶବାସୀଙ୍କର ଆଖି ଖୋଲିଦେଇଥିଲେ ।

## ଲାଇବ୍ରେରି ସ୍ଥାପନ

'କର ବଂଶ ଗ୍ରନ୍ଥାଗାର' (Kar Family Library) ତାଙ୍କର ଅନ୍ୟ ଏକ ଅବଦାନ । ଲୋକମାନଙ୍କର ପଠନସ୍ପୃହା ବଢ଼ାଇ ସେମାନଙ୍କୁ ବିଭିନ୍ନ ସଦ୍‌ଗ୍ରନ୍ଥ-ପାଠପ୍ରତି ଆକୃଷ୍ଟ କରାଇବାହିଁ ଏହି ଗ୍ରନ୍ଥାଗାର ସ୍ଥାପନର ପ୍ରଧାନ ଲକ୍ଷ୍ୟ ଥିଲା । ଲୋକେ ଯେତେ ବେଶୀ ଉଚ୍ଚକୋଟିର ପୁସ୍ତକ ପଢ଼ିବେ, ସେମାନଙ୍କ ଜ୍ଞାନପରିସର

ସେତେ ବେଶୀ ବଢ଼ିବ, ରୁଚି ମାର୍ଜିତ ହେବ, ମନରେ ନବ ନବ ଚିନ୍ତା ଓ ଉଚ୍ଚ ଆକାଂକ୍ଷାର ସ୍ଫୁରଣ ହେବ—ଏହି କଥା ଲାଇବ୍ରେରି ଉନ୍ମୋଚନ ଅବସରରେ ବିଶ୍ୱନାଥ ସମବେତ ଜନମଣ୍ଡଳୀଙ୍କୁ ତଥା ଛାତ୍ରଛାତ୍ରୀଗଣଙ୍କୁ ବୁଝାଇଦେଇଥିଲେ । ସମଗ୍ର ଅଞ୍ଚଳର ସବୁ ଶ୍ରେଣୀୟ ଲୋକଙ୍କପାଇଁ ଲାଇବ୍ରେରିଟି ଉଦ୍ଦିଷ୍ଟ ଥିଲା । ରାଧାନାଥ, ମଧୁସୂଦନ, ଫକୀରମୋହନ, ଗୋପାଳଚନ୍ଦ୍ର, ନନ୍ଦକିଶୋରଙ୍କଠାରୁ ଆରମ୍ଭ କରି ରାମଶଙ୍କର ରାୟ, ଜଗବନ୍ଧୁ ସିଂହ, ଶଶିଭୂଷଣ ରାୟ, ଭିକାରିଚରଣ ପଟ୍ଟନାୟକ, ଚିନ୍ତାମଣି ଆଚାର୍ଯ୍ୟ, ଗଙ୍ଗାଧର ମେହେର, କୁନ୍ତଳାକୁମାରୀ ସାବତ, ଚକଟି ରାଜା, ସୋନପୁର ମହାରାଜା, ଜୟପୁର ମହାରାଜା ପ୍ରଭୃତି ଓଡ଼ିଶାର ସେତେ ଲେଖକ-ଲେଖିକା, ସମସ୍ତେ ନିଜ ନିଜ ଗ୍ରନ୍ଥମାନ ଏହି ଲାଇବ୍ରେରିକୁ ଦାନ କରିଥିଲେ । ଏହାଛଡ଼ା ବଙ୍ଗ ଭାଷା ଓ ଇଂରାଜୀ ଭାଷାର ରାଶି ରାଶି ଗ୍ରନ୍ଥ ଏଥିରେ ଗଚ୍ଛିତ ଥିଲା । ପ୍ରତ୍ୟହ ସକାଳ ଓ ସନ୍ଧ୍ୟାରେ ସ୍ଥାନୀୟ ପାଠକମାନେ ଲାଇବ୍ରେରି ହଲ୍‌ରେ ବସି ପଢୁଥିଲେ ଏବଂ ଦୂର ଗ୍ରାମର ପାଠକମାନେ ନିୟମାନୁଯାୟୀ ପୁସ୍ତକସବୁ ଘରକୁ ନେଇପାରୁଥିଲେ ।

## ଡଜନେଟି ହାତଲେଖା ମାସିକ ପତ୍ରିକା

ବିଶ୍ୱନାଥଙ୍କ ଆଞ୍ଚଳିକ ଉନ୍ନୟନ ଯୋଜନାର ପ୍ରଥମ ପର୍ଯ୍ୟାୟଭୁକ୍ତ ଶ୍ରେଷ୍ଠ କୃତି ହେଲା ମାଇନର ସ୍ତରର ଛାତ୍ରଛାତ୍ରୀ ମହଲରେ ଗଦ୍ୟ ଓ ପଦ୍ୟ ରଚନାର ପ୍ରତିଯୋଗିତାମୂଳକ ବାତାବରଣ ସୃଷ୍ଟି । ତାଙ୍କ ନିର୍ଦ୍ଦେଶ ଓ ପ୍ରେରଣାରେ କୋଠପଦା ସ୍କୁଲରେ ପଢୁଥିବା ମୂଳବସନ୍ତ ଓ ଅନ୍ୟାନ୍ୟ ଗ୍ରାମର ଛାତ୍ରଛାତ୍ରୀମାନେ ଖଣ୍ଡିଏ ହାତଲେଖା ମାସିକପତ୍ର ବାହାର କରୁଥିଲେ । ସ୍ୱୟଂ ବିଶ୍ୱନାଥ ପତ୍ରିକାଟିର ନାମ ଦେଇଥିଲେ 'ଆଲୋକ' । ପର୍ଯ୍ୟାୟକ୍ରମେ ଜଣେ ଜଣେ ଉପର ଶ୍ରେଣୀର ଛାତ୍ର ତାର ସମ୍ପାଦକ ହେଉଥିଲେ । ସେ ପତ୍ରିକାଟିର ପ୍ରତି ସଂଖ୍ୟାକୁ ନିୟମିତରୂପେ ବିଶ୍ୱନାଥଙ୍କ ପାଖକୁ ପଠାଉଥିଲେ । ବିଶ୍ୱନାଥ ତଦନ୍ତର୍ଗତ ଲେଖାଗୁଡ଼ିକୁ ସଂଶୋଧନ କରି ମାର୍ଜିତ କରିଦେଉଥିଲେ ଏବଂ ପ୍ରତ୍ୟେକ ଲେଖାଉପରେ ନିଜର ମନ୍ତବ୍ୟ ଦେଇ ଆହୁରି ଭଲ ଲେଖିବାକୁ ପିଲାଙ୍କୁ ଉତ୍ସାହିତ କରୁଥିଲେ ।

ପୁଣି, ସେହି ଅଞ୍ଚଳର ଯେଉଁ ଛାତ୍ରମାନେ କଟକରେ ଶିକ୍ଷା ପାଉଥିଲେ, ସେମାନେ ବି ଏହି ରୀତିରେ ଯୋଡ଼ିଏ ହାତଲେଖା ମାସିକପତ୍ରିକା ବାହାର କରୁଥିଲେ । ବିଶ୍ୱନାଥ ହାଇସ୍କୁଲ ସ୍ତରୀୟ ପତ୍ରିକାର ନାମ ଦେଇଥିଲେ

'ଜ୍ୟୋତ୍ସ୍ନା' ଓ କଲେଜ ସ୍କୁଲସ୍ଥ ପତ୍ରିକାର ନାମ 'କୌମୁଦୀ'। ଏ ଦୁଇଟି ମଧ୍ୟ ସଂଶୋଧନ ଓ ମାର୍ଜନପାଇଁ ବିଶ୍ୱନାଥଙ୍କ ହସ୍ତରେ ଅର୍ପିତ ହେଉଥିଲା ତତ୍ତତ୍ ସଂପାଦକଙ୍କଦ୍ୱାରା।

ଏତଦ୍ଦ୍ୱାରା ବିଶ୍ୱନାଥଙ୍କର ପ୍ରଚ୍ଛନ୍ନ ଅଭିପ୍ରାୟ କିୟଦଂଶରେ ପୂର୍ଣ୍ଣ ହେଲା। କେତେକ କଲେଜଛାତ୍ରଙ୍କ ରଚନା ଉତ୍ତରୋତ୍ତର ଉନ୍ନତ ହୋଇ 'ଉତ୍କଳସାହିତ୍ୟ'ରେ ପ୍ରକାଶ ପାଇବାର ନିକଟଯୋଗ୍ୟତା ହାସଲ କରିଥିବାର ଦେଖାଗଲା। ତେଣୁ ବିଶ୍ୱନାଥଙ୍କ ମନରେ ଆଶାର ସଞ୍ଚାର ହେଲା ଯେ, ଦିନେ ନିଶ୍ଚୟ ଏହି ଉତ୍ସାହୀ ତରୁଣମାନଙ୍କଦ୍ୱାରା 'ଉତ୍କଳସାହିତ୍ୟ'ର ଲେଖା-ଦାରିଦ୍ର୍ୟ କାଞ୍ଚନ୍ମାଳାରେ ହେଉ ପଛକେ ଦୂର ହୋଇପାରିବ। ସୁଖର କଥା, ତାଙ୍କର ଏହି ଆଶା ନିଷ୍ଫଳ ହୋଇ ନ ଥିଲା। ଅଚିରକାଳମଧ୍ୟରେ (ପ୍ରାୟ ୧୯୨୭ ମସିହାଠାରୁ) ଏକାଧିକ ଯୁବକ 'ଉତ୍କଳସାହିତ୍ୟ'ର ଲେଖକରୂପେ ଗୃହୀତ ହେଲେ।

ବୋଲିବା ବାହୁଲ୍ୟ ଯେ, ବର୍ଷ କେତୋଟିପରେ ଏହି ମଫସଲ ଅଞ୍ଚଳଟି, ବିଶେଷତଃ ସର୍ବାଧୁନିକତାସଂପନ୍ନ ବିଶାଳ ମୂଳବସନ୍ତ ଶାସନଟି ଶିକ୍ଷା ଦିଗରେ ଆଶାତୀତଭାବରେ ଅଗ୍ରଗତି କରିପାରିଲା। ସରକାରଙ୍କର ଯେତେ ବିଭାଗ ଓ ଦପ୍ତର ଥିଲା, ପ୍ରାୟ ସବୁଥିରେ ଏ ଅଞ୍ଚଳର ଶିକ୍ଷିତ ଯୁବକମାନେ ନିଜ ନିଜ ଯୋଗ୍ୟତାବଳରେ ଅବାଧ ପ୍ରବେଶ ଲାଭ କରିପାରିଲେ। ଯୋଜନାରମ୍ଭରେ ଏହା ମଧ୍ୟ ଥିଲା ବିଶ୍ୱନାଥଙ୍କ କାମ୍ୟ। ଗୋଟାଏମାତ୍ର ଦଶନ୍ଧିମଧ୍ୟରେ ମୂଳବସନ୍ତ ଯେ ଓଡ଼ିଶାର ସର୍ବୋଚ୍ଚ ଶିକ୍ଷାଲୋକପ୍ରାପ୍ତ ଗ୍ରାମରେ ପରିଣତ ହୋଇପାରିଲା, ଏହା ସେହି ପୁରୁଷପ୍ରବରଙ୍କ ବ୍ୟକ୍ତିଗତ ସଂକଳ୍ପିତ ପ୍ରଚେଷ୍ଟାରହିଁ ସଦ୍ୟୋଜାତ ଫଳ।

ଏହି ସମସ୍ତ ଗ୍ରାମୋନ୍ନତିକର କାର୍ଯ୍ୟର ଫଳାଫଳ ପ୍ରତ୍ୟକ୍ଷଭାବରେ ଜାଣିବାପାଇଁ ଓ ନିଜ ଜନ୍ମସ୍ଥାନ ଦେଖିବାପାଇଁ ବିଶ୍ୱନାଥ ବର୍ଷମଧ୍ୟରେ ଅନ୍ତତଃ ଥରଟିଏ ସପରିବାର ଗ୍ରାମକୁ ଯାଆନ୍ତି, ଖୁବ୍ ବେଶୀ ହେଲେ ସପ୍ତାହେ ଖଣ୍ଡେ ସେଠାରେ ରହନ୍ତି। କଟକର ଦାୟିତ୍ୱବହୁଳ କର୍ମଜଞ୍ଜାଳମଧ୍ୟରୁ ବାହାରିବା ଆଉ ଅଧିକ ଥର ସମ୍ଭବପର ହୁଏ ନାହିଁ। ସାଧାରଣତଃ ଗ୍ରୀଷ୍ମାବକାଶ କିଂବା ପୂଜାବକାଶରେ ତାଙ୍କୁ ଗ୍ରାମଯାତ୍ରାପାଇଁ ଅବସର ସୃଷ୍ଟି କରିବାକୁ ହୁଏ। ଥରେ ଥରେ ନିମକହଲା ସେବକ-ଭୃତ୍ୟ ଆଦର୍ଶ ପ୍ରଭୁଭକ୍ତ ଲଚ୍ଛମନ ସିଂହ ମଧ୍ୟ ତାଙ୍କ ସଙ୍ଗରେ ଯିବାକୁ ଛାଡ଼େ ନାହିଁ। ଯେ କେତୋଟି ଦିନ ସେମାନେ ରହନ୍ତି,

ଗ୍ରାମଟିରେ ଆନନ୍ଦ-ଉଲ୍ଲାସର ଲହରି ଖେଳେ, ବିଶେଷତଃ ଝିଅ-ବୋହୂମାନଙ୍କ ପ୍ରାଣରେ ପୂର୍ଣ୍ଣିମାର ଜୁଆର ମାଡ଼ିଯାଏ । ପାଖ ଗାଁମାନଙ୍କରୁ କେତେ ନରନାରୀ ଧାଇଁଆସନ୍ତି ବିଶ୍ୱନାଥଙ୍କୁ ଓ ତାଙ୍କ ପୁତ୍ରକନ୍ୟାଙ୍କୁ ଥରେ ଆଖି ପୂରାଇ ଦେଖିବାକୁ । କି ଅପୂର୍ବ ଆଗ୍ରହ, କି ଉଚ୍ଛଳ ଔତ୍ସୁକ୍ୟ ! ଅନ୍ୟ ପକ୍ଷରେ, ବିଶ୍ୱନାଥଙ୍କ ଉଚ୍ଚ-ଶିକ୍ଷିତା କନ୍ୟାମାନେ ଘରେ ଘରେ ବୁଲି ଜଣ ଜଣ କରି ସମସ୍ତଙ୍କୁ ସମ୍ବୋଧନ୍ତି ଏବଂ ଶ୍ରଦ୍ଧାସିକ୍ତ ମିଷ୍ଟ, ମଞ୍ଜୁଳ ବାଣୀରେ ପ୍ରତ୍ୟେକଙ୍କୁ ମୁଗ୍ଧ କରନ୍ତି ।

ପୁରୁଖା ଲୋକଙ୍କ ମୁହଁରୁ ଶୁଣାଯାଉଛି, କଟକରେ ବିପୁଳ ଖ୍ୟାତିର ଅଧିକାରୀ ହୋଇ ବିଶ୍ୱନାଥ ଦୀର୍ଘ କାଳର ବ୍ୟବଧାନପରେ ଯେଉଁ ଦିନ ପ୍ରଥମ ବାର ଗ୍ରାମସୀମାରେ ପଦାର୍ପଣ କଲେ, ଅଗଣିତ ନରନାରୀ ତାଙ୍କୁ ପାଛୋଟି ଆଣିବାପାଇଁ ଗ୍ରାମସୀମାନ୍ତ ଦାଣ୍ଡରେ ସତୃଷ୍ଣ ନୟନରେ ଅପେକ୍ଷା କରି ରହିଥିଲେ । ସେଠାରେ ତୋରଣଦ୍ୱାର ନ ଥିଲା କି ଫୁଲତୋଡ଼ା ଗଜରାହାର ନ ଥିଲା—ବାଦ୍ୟ ଆଟୋପରେ ସଂବର୍ଦ୍ଧନା ଜ୍ଞାପନ କରିବାପାଇଁ । ସେକାଳରେ ବରେଣ୍ୟ ବ୍ୟକ୍ତିଙ୍କୁ ଅଭିନନ୍ଦିତ କରାଯାଉଥିଲା ମାନସିକ ଅର୍ଘ୍ୟରେ, ହାର୍ଦ୍ଦିକ ପୂଜାରେ । ବିଶ୍ୱନାଥ ସେଥର ଦୁଇ ତିନ ଦିନର ମାତ୍ର କାର୍ଯ୍ୟକ୍ରମ ନେଇ ଆସିଥିଲେ । ଏହି ବାର୍ତ୍ତା ପ୍ରଚାରିତ ହୋଇଯିବାମାତ୍ରେ ଆଖପାଖ ଲୋକ ଭିଡ଼ଆଡ଼ି ଛୁଟିବାକୁ ଲାଗିଲେ ମୂଳବସନ୍ତ ଅଭିମୁଖରେ । ଗାଆଁ ଦାଣ୍ଡ ଉଚ୍ଛୁଳିଉଠିଲା ସେଦିନ ଭେଳା ଭେଳା ଲୋକଙ୍କ ମେଳାରେ । ଏହା ଦେଖି ପାକଳ-ବୟସୀ ବୃଦ୍ଧାମାନଙ୍କ ମନ ସବୁଠାରୁ ବେଶୀ ଖୁସି, କାରଣ ଗାଆଁ ବାଲାଙ୍କ ଯୁଗେ ଦିନର ଫଟା ମନ ଏବେ ଯୋଡ଼ି ହେଲାରୁ ବିଶ୍ୱନାଥ ପରି ଗାଆଁ ସେରା ପୁଅର ମୁହଁ ଗାଆଁରେ ଦେଖିବାକୁ ମିଳୁଛି । ଉଠିଯାଉଛି ସେ 'ସଦେଇ ଶରଣ ପାଟେରି', ତା ଜାଗାରେ ଆଜି 'ବିନୋଦ-ବିହାରୀ ଭୁଟେରି' ! 'ଓଳକଣା ମେଲଣ' କି 'ଆଳରାଜା ଝୁଲଣ' ଏ ମେଳା-ପାଖରେ ଜୁଲୁଜୁଳା ପରି ମଳିଣ !



# ସାହିତ୍ୟରେ ସଂକଟ : ନୂତନ ଯୁବପ୍ରତିଭାର ସନ୍ଧାନ

'ଉତ୍କଳସାହିତ୍ୟ'ର ଆବିର୍ଭାବ ଦିବସଠାରୁ ୧୯୨୦ ମସିହାପର୍ଯ୍ୟନ୍ତ ସାଧକାଗ୍ରଣୀ ବିଶ୍ୱନାଥଙ୍କର ସାହିତ୍ୟିକ ଜୀବନ କର୍ମପ୍ରାଚୁର୍ଯ୍ୟରେ ସର୍ବାଧିକ ଗୌରବମଣ୍ଡିତ ହେବା ସଙ୍ଗେ ସଙ୍ଗେ ସେହି ସମୟଟି ମଧ୍ୟ ଆଧୁନିକ ସାହିତ୍ୟାନୁଶୀଳନର ସର୍ବୋଜ୍ଜ୍ୱଳ ସ୍ୱର୍ଣ୍ଣ ଯୁଗରୂପେ ଅଭିହିତ ହେଲା । ମାତ୍ର ଶଂସିତ କାଳର ଶେଷାର୍ଦ୍ଧରେ ଓଡ଼ିଆସାହିତ୍ୟର ଦିନାଥଙ୍କର ଯୁଗପତ୍ ତିରୋଭାବ ସାରା ଉତ୍କଳମଣ୍ଡଳରେ ମହାଶୋକର ତାମସୀ ଛାୟା ବିସ୍ତାର କରିଦେଲା । ନବ୍ୟଛନ୍ଦୋବଦ୍ଧ 'ମହାଯାତ୍ରା' ମହାକାବ୍ୟକାର କବିବର ରାଧାନାଥ ୧୯୦୮ ମସିହାର ଚୈତ୍ରପୂର୍ଣ୍ଣିମା ଦିନ କାବ୍ୟକବିତା କ୍ଷେତ୍ରକୁ ଅଥାରା କରି ମହାପଥର ଯାତ୍ରୀ ହେଲେ । ଆଧୁନିକ ଗଦ୍ୟସାହିତ୍ୟର ପ୍ରଥମ ପ୍ରବର୍ତ୍ତକ ମହାପ୍ରାଣ ମଧୁସୂଦନ ୧୯୧୨ ମସିହା ଡିସେମ୍ବର ୨୮ ତାରିଖ ଦିନ ବ୍ରହ୍ମଲୋକକୁ ମହାପ୍ରୟାଣ କଲେ । ନିପୁଣତର ନର୍ମମର୍ମ ଚିତ୍ରକରେ ଗଳ୍ପୋପନ୍ୟାସର ଯୁଗସ୍ରଷ୍ଟା ଅନନ୍ତସମ୍ମ୍ୟ-ଲେଖମାଧର ଫକୀରମୋହନ ୧୯୧୮ ମସିହା ଜୁନ ୧୪ ତାରିଖ ଦିନ ମାତୃଭୂମିର କୋଳକୁ ଶୂନ୍ୟ ଶ୍ରୀହୀନ କରି ଅମରଧାମକୁ ଯାତ୍ରା କଲେ । ସାହିତ୍ୟ-ସୌଧର ମୁଖ୍ୟ ତିନି ବିଭାଗର ନବନିର୍ମାତା ଏହି ତିନି ବିଦ୍ଧାଣି-ଶିରୋମଣିଙ୍କୁ ହରାଇବା ଫଳରେ 'ଉତ୍କଳସାହିତ୍ୟ'ର ଯେଉଁ ଅପୂରଣୀୟ କ୍ଷତି ଘଟିଲା, ତଦ୍ଦ୍ୱାରା ଓଡ଼ିଆସାହିତ୍ୟର କ୍ରମବିକାଶ ବାଧାପ୍ରାପ୍ତ ହେବାର ଘୋର ଆଶଙ୍କା ହେଲା ।

'ଉତ୍କଳସାହିତ୍ୟ' ତଥା ବିକାଶମୁଖୀ ଓଡ଼ିଆସାହିତ୍ୟର ଏହି ସଂକଟ-ବେଳାରେ ଇତିକର୍ତ୍ତବ୍ୟଜ୍ଞାନୀ ବିଶ୍ୱନାଥ ସାହସର ସହିତ କମର କଷି ନ ଥିଲେ ଅବସ୍ଥା ଯେ ଅଣାୟତ୍ତ ଓ ଅହମ୍ମାକ ହୋଇଯାଇଥାନ୍ତା, ଏହା ନିଃସନ୍ଦେହ । ଯେଉଁ ରଚନା ଲିପିକୁଶଳତା ଓ ଭାଷା-ସୌଷ୍ଠବରେ ହୀନ, ଯାହା ଉଚ୍ଚଚିନ୍ତା ଓ

ବାସ୍ତବର

ଉଚ୍ଚଭାବର ବାହକ ନୁହେଁ କି ଉନ୍ନତ ରୁଚି ଓ ଆଦର୍ଶ ମାନର ଧାରକ ନୁହେଁ, ଯହିଁରେ ଜାତୀୟ ଆକାଙ୍‌କ୍ଷାର ଦ୍ୟୋତନା ନାହିଁ କି ଯୁଗ-ଆହ୍ୱାନର ବ୍ୟଞ୍ଜନା ନାହିଁ, ସେଭଳି ରଚନାକୁ ସଂପାଦକ ବିଶ୍ୱନାଥ କେବେହେଲେ 'ସାହିତ୍ୟ'ରେ ସ୍ଥାନ ଦିଅନ୍ତି ନାହିଁ । ତାଙ୍କ ସଂପାଦନାର ଶାଣିତ ଅସିଧାର-ମୁଖରୁ ବର୍ତ୍ତିଲେ ଯାଇ, କଷଟି-କଷା ପରଖରୁ ଉତ୍ତୀର୍ଣ୍ଣ ହେଲେ ଯାଇ ଲେଖାର ସାହିତ୍ୟିକ ଉତ୍କର୍ଷ ପ୍ରମାଣିତ ହୁଏ ଏବଂ ତାହାହିଁ 'ସାହିତ୍ୟ'ରେ ସ୍ଥାନ ପାଏ । ଯେଉଁ ନୂତନ ଲେଖକ ଧୈର୍ଯ୍ୟଶୀଳ ହୋଇ ଏହି କଠୋର ଅଗ୍ନିପରୀକ୍ଷାପାଇଁ ଆଗରୁ ନିଜକୁ ପ୍ରସ୍ତୁତ କରିଥାଏ, ତାହାରି ଲେଖା ପ୍ରାୟଶଃ ଆଦର ଲାଭ କରେ ଏବଂ ଏଭଳି ଲେଖକ-ମାନଙ୍କୁ ବିଶ୍ୱନାଥ ପୁତ୍ରସ୍ନେହରେ ଅଯାଚିତ ଉତ୍ସାହ ଦେଇ ସେମାନଙ୍କ ରଚନାକୁ ଅଧିକ ରୁଚିମନ୍ତ ଓ ମାର୍ଜିତ କରିବାରେ ଯତ୍ନପରାୟଣ ହୋଇ ଯତ୍ନ କରନ୍ତି ଓ ସେଥିପାଇଁ ଅକୁଣ୍ଠିତଚିତ୍ତରେ ସମୟ ମଧ୍ୟ ଦାନ କରନ୍ତି ।

ସୌଭାଗ୍ୟବଶତଃ ଏହି ସମୟରେ କେତେକ ଉତ୍ସାହୀ ତରୁଣ ସାହିତ୍ୟ-ସାଧନାର ଦୃଢ଼ ବ୍ରତ ନେଇ 'ଉତ୍କଳସାହିତ୍ୟ'ର ବୋଧିଦ୍ରୁମଚ୍ଛାୟାରେ ଆଶ୍ରୟ ନେଇଥିଲେ । ସଂସ୍କାରକ ବିଶ୍ୱନାଥ ଆଜୀବନ ନବଯୁଗର ଉପାସକ, ନୂତନତ୍ୱର ଆବାହକ । ସେ ସେହି ତରୁଣମାନଙ୍କ ରଚନାରେ ଗତାନୁଗତିକତାବର୍ଜିତ ସ୍ୱାଧୀନ ଭାବଧାରାର ଉଚ୍ଛ୍ୱାସ ଦେଖି ଓ ଗତଯୁଗ-ବନ୍ଧନମୁକ୍ତ ନୂତନ ଆଗାମୀର ସ୍ପନ୍ଦନ ଅନୁଭବ କରି ସେମାନଙ୍କ ସବୁଜ ଲେଖାକୁ ସ୍ୱାଗତ ଜଣାଇଲେ । ସେମାନେ ମଧ୍ୟ ବିଶ୍ୱନାଥଙ୍କ ଭଳି ଦୁର୍ଲଭ ସାହିତ୍ୟଗୁରୁଙ୍କୁ ପାଇ କୃତକୃତ୍ୟ ହେଲେ ଏବଂ ତାଙ୍କ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ନିଜ ନିଜର ସାହିତ୍ୟିକ ଜୀବନ ଚରିତାର୍ଥ କରିପାରିବେ ବୋଲି ଉଦ୍ଦାମ ଆଶା ପୋଷଣ କଲେ ।

ସେହି ଦିନୁଁ ପ୍ରକାଶ୍ୟଭାବରେ 'ଉତ୍କଳସାହିତ୍ୟ' ପ୍ରାଚୀନ ଓ ନବୀନ ଲେଖକଙ୍କର ମିଳନପୀଠରେ ପରିଣତ ହେଲା । ଦୁଃଖର କଥା, "ଉତ୍କଳସାହିତ୍ୟ'ର କେତେକ ରକ୍ଷଣଶୀଳ ବୋଧା ଲେଖକ ଏହି ତରୁଣ-ଆବାହନପ୍ରତି ତୀବ୍ର ନାସିକାକୁଞ୍ଚନ କଲେ ଏବଂ ଏହା 'ସାହିତ୍ୟ'ର ପ୍ରତିଷ୍ଠିତ ଗୌରବକୁ କ୍ଷୁଣ୍ଣ କରି ଉଚ୍ଛୃଙ୍ଖଳତାର ଜନ୍ମ ସୃଷ୍ଟି କରିବ ବୋଲି ଆକ୍ଷେପ-ବାଣ ନିକ୍ଷେପ କରିବାକୁ ଲାଗିଲେ । କିନ୍ତୁ ଦୂରଦ୍ରଷ୍ଟା ବିଶ୍ୱନାଥ ଏଭଳି ଅବିବେଚିତ ସମାଲୋଚନାପ୍ରତି ଅବଜ୍ଞା ପ୍ରଦର୍ଶନ କରି ନିଜ ସିଦ୍ଧାନ୍ତରେ ଅବିଚଳ ରହିଲେ ।

ତେଷ୍ଟିରି

ଏହାଫଳରେ ପ୍ରତିଭାର ଶ୍ରୋତପଥଧାରା ନୂଆ ନୂଆ କଲମଧର ଲେଖକଙ୍କର ଆବିର୍ଭାବ ହେଲା ଏବଂ ସେମାନଙ୍କ ପ୍ରଭାବମୟ କଲମଧରଣ-କଳଙ୍କରେ ପରାଭୂତ ହୋଇ 'ଉତ୍କଳସାହିତ୍ୟ'ର ଆଶଙ୍କିତ ଦୈନ୍ୟ ଆତଙ୍କରେ ଆତ୍ମାହୁତି ଦେଲା । ବସ୍ତୁତଃ, ଏହା ଅବିସମ୍ବାଦିତ ସତ୍ୟ ଯେ, ବିଶ୍ୱନାଥ ସେତେବେଳେ ତରୁଣ ଲେଖକଗୋଷ୍ଠୀର ଲେଖାଗୁଡ଼ିକୁ 'ଉତ୍କଳସାହିତ୍ୟ'ରେ ଧାରାବାହିକଭାବରେ ସ୍ଥାନ ନ ଦେଇଥିଲେ ସେହି ଦୃଷ୍ଟାନ୍ତର ଅବ୍ୟବହିତ ପରେ ସୁସାହିତ୍ୟସୃଜନୋତ୍ସାହୀ ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କଦ୍ୱାରା ସଂଗଠିତ 'ସାହିତ୍ୟ-ପ୍ରଚାର ସଂଘ' ପ୍ରକାଶନ-ପ୍ରତିଷ୍ଠାନ ଉଦୟମାନ ନବ ନବ ଲେଖନୀଧରଙ୍କ ଅବଦାନରେ ଏଡ଼େ ଶୀଘ୍ର ପରିପୁଷ୍ଟି ଲାଭ କରିପାରି ନ ଥାନ୍ତା । କିଂବା ଆମ ସାହିତ୍ୟକ୍ଷେତ୍ର ଆଜ ଏତେ ଉର୍ବର ହୋଇ ଫଳପୁଷ୍ପଭରା ବିବିଧ ଫସଲର ବର୍ଣ୍ଣାଢ଼୍ୟ ହିଲ୍ଲୋଳରେ ହସିଉଠି ନ ଥାନ୍ତା ।

ବିପଦ ଭଗବାନ୍‌ଙ୍କର ଏକ ମଙ୍ଗଳ ଆଶୀର୍ବାଦ—ମନୁଷ୍ୟର କର୍ମଚଞ୍ଚଳ ଜୀବନର ପ୍ରକୃତ ବନ୍ଧୁ ଓ ନୀରବ ଶିକ୍ଷାଦାତା । ଏହା ଅଦିନା ଝଡ଼ ପରି ଅତି ଅପ୍ରତ୍ୟାଶିତଭାବରେ ଆସେ ଏବଂ କିଛି ଶୁଭଫଳର ସଂକେତ ଦେଇ ସେହିପରି ଅପ୍ରତ୍ୟାଶିତଭାବରେ ଅପସରିଯାଏ । ବିପଦର ଅତର୍କିତ ସଂଘର୍ଷରେ ଜୀବନ ଘଟଣା-ସ୍ରୋତର ଲୋକେ ଉପରେ ହଠାତ୍ ହତବୁଦ୍ଧି ହୋଇଯାଇ ଏହାର ହିତକର ଶିକ୍ଷାକୁ ଗ୍ରହଣ କରିବାର ଶକ୍ତି ହରାଇବସନ୍ତି । 'ଦୁଃଖେଷ୍ୱନୁଦ୍‌ବିଗ୍ନମନାଃ ସୁଖେଷୁ ବିଗତସ୍ପୃହଃ' ବିଶ୍ୱନାଥଙ୍କର ଏହି ତାତ୍ପର୍ଯ୍ୟପୂର୍ଣ୍ଣ ଆତ୍ମବିଶ୍ୱାସ ସାହିତ୍ୟ-ସଂକଟର ତଥା 'ଉତ୍କଳସାହିତ୍ୟ'ସଂକଟର ସ୍ୱତଃ ଅପସରଣରେ କିପରି ସାର୍ଥକଭାବରେ ପ୍ରତିଫଳିତ ହୋଇଥିଲା, ତାହା ଉପରିବର୍ଣ୍ଣିତ ପ୍ରତ୍ୟକ୍ଷ ଘଟଣାରୁ ସହଜରେ ଅନୁମେୟ ।

# ବାରବର୍ଷବ୍ୟାପୀ ଧର୍ମଯୁଦ୍ଧ

କଟକର ସ୍କୁଲ-କଲେଜରେ ପଢ଼ୁଥିବା ନିଜ ଗ୍ରାମର ତଥା ପଡ଼ୋଶୀ ଗ୍ରାମଗୁଡ଼ିକର ପିଲମାନଙ୍କ ଉପରେ ବିଶ୍ୱନାଥ ସର୍ବଦା ଅଭିଭାବକର ତୀକ୍ଷ୍ଣ ଦୃଷ୍ଟି ରଖିଥାନ୍ତି—ସେମାନେ ଯେପରି ଅଯଥା ସମୟ ନଷ୍ଟ ନ କରି ଶିକ୍ଷାପ୍ରାପ୍ତ ହେବେ ଏବଂ ସଚ୍ଚରିତ୍ର ଓ ସଦ୍‌ଗୁଣବନ୍ତ ହୋଇ ନିଜ ନିଜ ଗ୍ରାମର ମୁଖ ଉଜ୍ଜ୍ୱଳ କରିବେ, ସେଥିପାଇଁ ମଧ୍ୟେ ମଧ୍ୟେ ଉପଦେଶ ଦେଉଥାନ୍ତି । ଛାତ୍ରମାନେ ସ୍କୁଲ ବା କଲେଜର ଦୈନନ୍ଦିନ ପାଠ୍ୟସମୟ ଶେଷ ହେବାକ୍ଷଣି ଅନ୍ୟ କୌଣସି ଆଡ଼େ ନ ଯାଇ ବହିପତ୍ରହସ୍ତରେ ସିଧାସଳଖ ପ୍ରେସସଂଲଗ୍ନ ବାସଭବନକୁ ପ୍ରତ୍ୟହ ଆସିବେ, ଏହା ଥିଲା ବିଶ୍ୱନାଥଙ୍କର ସସ୍ନେହ ନିର୍ଦ୍ଦେଶ । ସେମାନଙ୍କପାଇଁ ଘରେ ପ୍ରସ୍ତୁତ ସବ୍ୟଞ୍ଜନ ନିର୍ଦ୍ଦୋଷ ଜଳଖିଆ ଓ ଟେନିସ୍ ଆଦି ଖେଳର ସୁବ୍ୟବସ୍ଥା ହୋଇଥାଏ । ସୂର୍ଯ୍ୟାସ୍ତମାନେ ସମସ୍ତେ ଯେପରି ବହିପତ୍ର ଧରି ନିଶ୍ଚୟ ସ୍ୱ ସ୍ୱ ଡେରାକୁ ଫେରିବେ ଏବଂ ସଞ୍ଜଦୀପ ଲଗିବାବେଳକୁ ପଢ଼ାରେ ମନ ନିବେଶ କରିବେ, ତା ଉପରେ ମଧ୍ୟ କଡ଼ା କଟକଣା ରହିଥାଏ । ଯଦି ଏଥିରେ ସାମାନ୍ୟତମ ବ୍ୟତିକ୍ରମ ଦେଖାଯାଏ, ତାହେଲେ ସ୍ମୀରତ ପ୍ରଶାନ୍ତ ଗୃହାଣିର ଅଶବ୍ଦ ଭର୍ତ୍ସନା ଅଭିଭାବକୀ ଶାସନଠାରୁ ଅଧିକ ଫଳପ୍ରଦ ହୁଏ—ରୂଢ଼ ଭର୍ତ୍ସନା ବା କଟୁ ବାଣୀର ସର୍ବ ନିର୍ଷୀଯ୍ୟାନ୍ ବିଶ୍ୱନାଥଙ୍କ ମୁଖରେ କେବେହେଲେ ପ୍ରକଟିତ ହୁଏ ନାହିଁ ।

ବୟସ ଯେତିକି ବଢ଼ୁଥାଏ, କଟକରେ ରହୁଥିବା ଯୋଗୁଁ ଗ୍ରାମପ୍ରତି ମମତା ବିଶ୍ୱନାଥଙ୍କର ସେତିକି ବୃଦ୍ଧି ପାଉଥାଏ । ଗୁହୁଁ ଗୁହୁଁ କଳିଷଠୀ ଷାଠିଏକୁ ଗୋଡ଼ ବଢ଼େଇବାବେଳ ପାଖେଇଆସିଲା—ମାସ ସାତୋଟିମାତ୍ର ବାକି । ୧୯୬୩ ଗ୍ରୀଷ୍ମାବକାଶମଧ୍ୟର କଥା । ସ୍କୁଲକଲେଜପଢ଼ୁଆ ଓ କଟେରିଆପାକ ଘରକୁ ଯାଇଥିବାରୁ ଗ୍ରାମଟି ପ୍ରାଣବନ୍ତ ଓ ଚଞ୍ଚଳ ହୋଇଉଠିଥାଏ । ଜ୍ୟେଷ୍ଠ

ମାସର ପ୍ରଚଣ୍ଡ ସୂର୍ଯ୍ୟୋତ୍ତାପରେ ଘରଆଡ଼ର କୂଅପୋଖରି ସଂପୂର୍ଣ୍ଣ ଜଳଶୂନ୍ୟ— ଗାଁ-ଗାଁ ଘରେ-ଘରେ ପାଣିପାଇଁ ଚିତ୍କାର, ହାହାକାର । ମୂଳବସନ୍ତ 'ଗଣେଶଘାଟ'ର ବରୁପାଗଣ୍ଡିରେ କିନ୍ତୁ ଅକାତକାତ କଳାଘୁମର ପାଣି । ଆଖପାଖ କ୍ରୋଶାଧିକ ଅଞ୍ଚଳର ଗ୍ରାମବାସୀମାନଙ୍କପାଇଁ ଏଇ ସୁଗଭୀର ଜଳଭଣ୍ଡାରଟି ହୋଇଥାଏ ଏକମାତ୍ର ଜୀବନାଶ୍ରୟ । ଦୂର ଗ୍ରାମଗୁଡ଼ିକରୁ ଅସଂଖ୍ୟ ନରନାରୀ ଆସନ୍ତି ଗରା, ମାଠିଆ, ଟିଣଡବାର ଧରି ବରୁପାଗଣ୍ଡିରୁ ପାଣି ନେବା-ପାଇଁ ଓ ଗଣ୍ଡିଜଳରେ ସ୍ନାନ କରିବାପାଇଁ । ତେଣୁ ସୂର୍ଯ୍ୟୋଦୟର ପ୍ରାକ୍‌କାଳ-ଠାରୁ ରାତି ପହରେପର୍ଯ୍ୟନ୍ତ ଗ୍ରାମର ପ୍ରଶସ୍ତ ମଝିଦାଣ୍ଡଟା ଜନାକୀର୍ଣ୍ଣ ହୋଇରହେ ଜଳାର୍ଥୀମାନଙ୍କର ଅବିରାମ ଯାତାୟାତରେ । ଗ୍ରାମର ସୁନ୍ଦର ପରିବେଶଟି ଏମାନଙ୍କ କଳକାକଳିତ ଜଳାହରଣ-ପଟୁଆରରେ ଦୃଶ୍ୟମୟ ହୋଇଯାଏ ।

ଏହି ଆମୋଦଭରା ଦୃଶ୍ୟମଧ୍ୟରେ ମାୟାଧରଙ୍କ ବୃହତ୍ ଗୃହପରିସରଟି ମୁଖରିତ ହୋଇଉଠିଥାଏ ତରୁଣ, ବୟସ୍କ, ବୃଦ୍ଧ ବହୁ ନବାଗତ ବ୍ୟକ୍ତିଙ୍କ ଘନାୟମାନ ସମାବେଶରେ—ବନ୍ଧୁବାନ୍ଧବ, ଝିଅଝିଆଣି, ସୂର୍ଯ୍ୟମୈତ୍ର, ପ୍ରିୟାପ୍ରୀତି କେହି ହେଲେ ବାଦ୍ ପଡ଼ି ନ ଥାନ୍ତି, ସର୍ବୋପରି ବିଶ୍ବନାଥଙ୍କ କଟକାଗତ ପରିବାର-ପରିଜନବର୍ଗ । ଆତ୍ମିୟପଣସପକ୍ଷ ଖଇପୁଟା ଏ ନିବାଟ ଖରାତାତି ଦିନେ ଯେଉଁ ଚୁମ୍ବକ ଦୂରଦୂରାନ୍ତର ଏତେ ଆପଣା-ଲୋକଙ୍କୁ ଏକସମୟରେ ଟାଣିଆଣି ଏଠାରେ ମଧୁମେଳାର ହାଟ ବସାଇଛି, ତାହା ହେଉଛି ଘ-ର୍ଘଦିନ-ଅପେକ୍ଷିତ ଗୋଟିଏ ଆଡ଼ମ୍ବରମୟ ବ୍ରତୋପନୟନ ଉତ୍ସବ—ମାୟାଧରଙ୍କ ଜ୍ୟେଷ୍ଠପୁତ୍ର ଏଗାରବର୍ଷବୟସ୍କ କ୍ଷିତୀନ୍ଦ୍ରର ।

ଲୌକିକ ପ୍ରଥାନୁସାରେ ଗ୍ରାମର ପ୍ରତ୍ୟେକ ପରିବାରକୁ, ଆବାଳବୃଦ୍ଧ-ବନିତା ସମସ୍ତଙ୍କୁ ଉପନୟନକର୍ମରେ ଯୋଗଦାନ କରିବାପାଇଁ ଯଥାପୂର୍ବରୁ ନିମନ୍ତ୍ରଣ କରାଯାଇଥିଲା । ପ୍ରତ୍ୟେକ ଗୃହକର୍ତ୍ତା ସାଦରରେ ନିମନ୍ତ୍ରଣ ଗ୍ରହଣ କରିଥିଲେ । 'ବ୍ରତକର୍ମ'ର ପୂର୍ବରାତିପର୍ଯ୍ୟନ୍ତ ସାମାଜିକ ଆକାଶ ବେଶ୍ ନିର୍ମଳ ଓ ଶାନ୍ତ ଥିଲା—ପ୍ରତିବେଶିସୁଲଭ ସାହାଯ୍ୟ-ସହାନୁଭୂତିରେ ଅସ୍ୱାଭାବିକତାର ବିନ୍ଦୁମାତ୍ର ସୂଚନା ପାଇ ହୋଇ ନ ଥିଲା । କିନ୍ତୁ ଆଶ୍ଚର୍ଯ୍ୟର କଥା, ଗଣ୍ଠି ପ୍ରଭାତଲଗ୍ନରେ ଗ୍ରାମୀଣ ଜ୍ଞାତିସ୍ୱଜନମାନଙ୍କ ମଧ୍ୟରୁ ଜଣେ ହେଲେ କାହାରି ପାଦ ମାୟାଧରଙ୍କ ଖଞ୍ଜାରେ ପଡ଼ିଲା ନାହିଁ । ଯାହାହେଉ, ସେ ଦିଗରେ ମୁଣ୍ଡ ନ ଖେଳାଇ ଯଥାବିଧି 'ବ୍ରତକର୍ମ' କାର୍ଯ୍ୟ ଶେଷ କରିଦିଆଗଲା । 'ଉପନୟନ' ଦିନ

ମଧ୍ୟ ଠିକ୍ ଚଡ଼୍‌ବଡ଼୍ । ବ୍ରହ୍ମଗୃହର ସଙ୍କୋଚବାତଧାରଣପରେ ବେଶଭୂଷା ବେଳକୁ ସୁଦ୍ଧା କେହି ଆସିଲେ ନାହିଁ । ଶେଷକୁ ଆଶୀର୍ବାଦସଭା ଓ ଭୋଜନସଭାର ବେଳ ଆସନ୍ନ ହେଲା । ଚରାଚରିତ ଶାସନ-ବିଧିରେ ପ୍ରତ୍ୟେକ ଗୃହସ୍ଥଙ୍କ ଦ୍ୱାରକୁ କର୍ମକର୍ତ୍ତାଙ୍କ ଗୃହର ଲୋକେ 'ଅର୍ଚ୍ଚନା' କରିବାକୁ ଗଲେ । ଦେଖାଗଲା, ସମସ୍ତଙ୍କ ଦ୍ୱାର ଭିତରୁ କିଳା । କବାଟ ବାଡ଼େଇ ଡାକଲେହେଁ ବହୁ ବିଳମ୍ବରେ ଗୃହକର୍ତ୍ତାମାନଙ୍କ କଣ୍ଠରୁ କ୍ଷୀଣ ଆବାଜ ଆସିଲା—କିଏ କହିଲା 'ଶୋଇ ସାରିଲିଣି' ତ ଆଉ କିଏ କହିଲା 'ପେଟ ଭଲ ନାହିଁ', ପୁଣି କାହାର ଘରଣୀ ବୋଇଲା 'ଘରେ ନାହାନ୍ତି ସେ' ତ କାହାର ଚାକର ବୋଇଲା 'ଖାଉନ୍ତି ଭଣଜାର ବଡ଼ଘରକୁ ଯାଇଚନ୍ତି'—ଇମିତି କେତେ ବାହାନା, କେତେ ପେଖନା । ଏବେ ସ୍ପଷ୍ଟ ଜଣାଗଲା, ଆକାଶରେ ଅଦିନ କଳାବଉଦ ଘୋଟିଯାଇ ପବନ ରୁଦ୍ଧଦେଇଛି—ଯ୍ୱା ପଛକୁ ଗୋଟାଏ ବଡ଼ ଧରଣର ଝଡ଼ତୋଫାନ ମାଡ଼ିଆସିବ ନିଶ୍ଚୟ । ଭୋଜନ-ସାମଗ୍ରୀର ବାରଣା ନଷ୍ଟ ହେଲା—ବାସି ଜିନିସରୁ କିଛିମାତ୍ର ଭିକାରି, ମାଗଣା ଆଉ ଗାଈଗୋରୁଙ୍କ ପେଟରେ ସ୍ଥାନ ପାଇଲା ।

ନିମନ୍ତ୍ରିତଙ୍କର ଆଧାରମଧ୍ୟରୁ ଯେତିକ ଆନନ୍ଦ ତୋଳନ କରିହେବା ସମ୍ଭବ, ସେତିକମାତ୍ରକୁ ସମ୍ବଳ କରି ବନ୍ଧୁବାନ୍ଧବାଦି 'ସାତମଙ୍ଗଳା' ବାସି ହିଆସି ଯେ ଯାହା ଗ୍ରାମକୁ ବାହୁଡ଼ିଗଲେ । ହଠାତ୍ ଗାଁଟାସାରାର ଲୋକେ କାହିଁକି ଯେ ଅନନ୍ତ୍ରିତ ଏପରି ଅଡ଼ିବସିଲେ, ତାର ଗଭୀର ରହସ୍ୟ ଉତ୍ତୃାକୃତ ବହି ପ୍ରାପ୍ତ ତଥାପି ଅପ୍ରକଟ ରହିଲା । ପ୍ରାପ୍ତ ହପ୍ତାଏଖଣ୍ଡେର ଗୁମ୍‌ସୁମ୍‌ପରେ ହଠାତ୍ ଭାତଖିଆ ପହର ଗଡ଼ନ୍ତେ ଅରୁନକେ ଦାଣ୍ଡମଝିଟା ଦୁଲୁକିଉଠିଲା ପୁଞ୍ଜା ପୁଞ୍ଜା ମାର୍କାମରା ମାମଲତକାରିଆ, ସାଇ-ମୁରବିମୁଣ୍ଡିଆଳ ଓ ଫଡ଼ଫଡ଼ିଆ କଣ୍ଟକପତ୍ରିଆ ଟୋକାଙ୍କ ଦୁମ୍‌ଦୁମ୍‌ପାଦପ୍ରହାରିତ ସଦର୍ପ ପରେଡ୍ ଗୁଳରେ । ଏକମୁହାଁ ସମସ୍ତେ ଧପାଇଚନ୍ତି ନଈକୂଳ ଗଣେଶଚକଡ଼ା ଆଡ଼କୁ । ମାୟାଧରଙ୍କ ପରିବାର ଗୃହାନ୍ତରାଳରେ ଥାଇ ଘଟନାର ଗତିବିଧି ଲକ୍ଷ୍ୟ କରିବାକୁ ଲାଗିଲେ । ଲୋକେ ଯେତେବେଳେ ଠାକୁର-ଚକଡ଼ାରେ ରୁଣ୍ଡ ହୋଇ ତର୍କବିତର୍କରେ ମାତିଗଲେ, ମାୟାଧର ସ୍ପଷ୍ଟ ଜାଣିପାରିଲେ ଯେ, ଜମାଉଚଟା ଆଶଙ୍କିତ ଝଡ଼ତୋଫାନର ଅଗ୍ରଦୂତ ଛଡ଼ା ଆଉ କିଛି ନୁହେଁ ।

ସଭା ଖୁବ୍ ସରଗରମରେ ଚାଲିଲା ଘଣ୍ଟାଅଧଘାଏ । ଆଲୋଚନାର ବିଷୟବସ୍ତୁ ହେଲା—ମାୟାଧର ଓ ତାଙ୍କ ପିତୃବ୍ୟ କୃଷ୍ଣଚନ୍ଦ୍ର ଏ ଉଭୟଙ୍କ

ପରିବାରଲୋକେ ବିଧର୍ମୀ ବିଶ୍ୱନାଥ ବାବୁଙ୍କ ଘରକୁ ବରାବର ଯାଆନ୍ତି, ସେଠାରେ ରହନ୍ତି ଓ ତାଙ୍କ ରୋଷେଇରେ ଖାଆନ୍ତି । ଏଣୁ ଏମାନେ ସ୍ୱଧର୍ମରୁ ସ୍ଖଳିତ ହୋଇଛନ୍ତି ଓ ସେହି ପାପରୁ ଗ୍ରାମୀୟ ସମାଜମଧ୍ୟରେ ଚଳିବାର ଅଧିକାର ନିଜେ ନିଜେ ହରାଇଛନ୍ତି । ଏବେ ଏମାନଙ୍କପ୍ରତି କି କଠୋର ଶାସ୍ତି ବିଧାନ କରାଯିବ ?

ବିଚିତ୍ର କଥା ଯେ, ଯେଉଁ କଣ୍ଟକପଡ଼ୁଆ ଗାଁପିଲାଏ ନିତିଦିନ ବିଶ୍ୱନାଥଙ୍କ ଘରେ ଖାଆନ୍ତି ପିଅନ୍ତି, ଖେଳନ୍ତି ବୁଲନ୍ତି, ମଉଜମଜଲିସ କରନ୍ତି, ସେହି ତରୁଣମାନେହିଁ ହେଲେ ମାୟାଧର ଓ କୃଷ୍ଣଚନ୍ଦ୍ରଙ୍କ ବିରୁଦ୍ଧରେ ଅଣାଯାଇଥିବା ଅଭିଯୋଗକୁ ଏ ସଭାରେ ସପ୍ରମାଣ କରିବାର ସାକ୍ଷଲକ୍ଷ୍ୟପ୍ରତ୍ୟକ୍ଷଦ୍ରଷ୍ଟା ସାକ୍ଷୀ । ଯାହାହେଉ, ଏତିକିରେ ସଭା ମଉକୁଫ ରହି ପରବର୍ତ୍ତୀ ବୈଠକରେ ସିଦ୍ଧାନ୍ତ ନେବାର ସ୍ଥିର ହେଲା । ତେବେ ଯେଉଁ ସାକ୍ଷୀ ପିଲାମାନେ ନିଜେ ମଧ୍ୟ ବିଶ୍ୱନାଥଙ୍କ ଗୃହରେ ଅନ୍ନାଦି ଭକ୍ଷଣ କରିଥିବା କଥା ସଭାରେ ସ୍ୱୀକାର କଲେ, ଚତୁର ବ୍ୟବସ୍ଥାଦାତା କୋହଳ ମନୋବୃତ୍ତି ଧରି ଶାସ୍ତ୍ରସଂହିତାକୁ ଆଖିଠାର ମାରି ସେମାନଙ୍କପାଇଁ ପାପଛଡ଼ା ନାମକୁମାତ୍ର ପ୍ରାୟଶ୍ଚିତ୍ତ ବିଧାନ କଲେ; ତାହା ହେଲା—ଗ୍ରାମର ବିଶ୍ୱେଶ୍ୱର ମହାଦେବଙ୍କ ସନ୍ନିଧିରେ ନୂଆ ଲଇତା ପିନ୍ଧି ଶହେଆଠ ଥର 'ଗାୟତ୍ରୀ' ଜପ ଓ କିଛିଟା 'ପଞ୍ଚଗବ୍ୟ' ସେବା ।

ଦ୍ୱିତୀୟ ବୈଠକ ତିନି ଦିନପରେ ବସିଲା; କିନ୍ତୁ ଚୂଡ଼ାନ୍ତଭାବରେ ସିଦ୍ଧାନ୍ତଗ୍ରହଣ ତହିଁରେ ସମ୍ଭବପର ହୋଇପାରିଲା ନାହିଁ, କାରଣ କାହାର କାହାର ନିକଟତରଭଲ ନିରପେକ୍ଷ ମତ ହେଲା—ଯେଉଁ କଣ୍ଟକପଡ଼ୁଆ ପିଲାଏ ପ୍ରାୟ ପ୍ରତିଦିନ ବିଧର୍ମୀ ବିଶ୍ୱନାଥ ବାବୁଙ୍କ ଘରେ ଖାଇଛନ୍ତି, ସେମାନଙ୍କ ପାପ ତୁଳନାରେ ସାମୟିକ କେବେ କେମିତି କଟକ ଯାଇ ତାଙ୍କ ଘରେ ଖାଉଥିବା ମାୟାଧର ଓ କୃଷ୍ଣଚନ୍ଦ୍ରଙ୍କ ପରିବାରର ପାପ ନିଶ୍ଚୟ ଊଣା; ପିଲାଙ୍କ ପାପ-ମୋଚନପାଇଁ ନାମମାତ୍ର-ପ୍ରାୟଶ୍ଚିତ୍ତ ଯଦି ଯଥେଷ୍ଟ ବୋଲି ବିବେଚିତ ହେଲା, ତାହାହେଲେ ଏ ଦୁଇ ପରିବାରପ୍ରତି ମଧ୍ୟ ସେହି ନ୍ୟାୟରେ ଆନୁପାତିକ ଲଘୁତର ଶାସ୍ତିର ବ୍ୟବସ୍ଥା ଯଥେଷ୍ଟ ହେବ ନାହିଁ କାହିଁକି ?

ସହଜରେ ଏ ଦୁରୂହ ପ୍ରଶ୍ନଟିର ସମାଧାନ ହୋଇପାରିଲା ନାହିଁ । ବିଷୟବିଧୀନ ଥିବା ସିଦ୍ଧାନ୍ତର ତର୍ଜମା ଠିକ ଏଇଠି ମୋଡ଼ ଧରିଲା । ତେଣୁ ଉଦ୍ୟୋକ୍ତାମାନେ ସମୟାଭାବର ଆଳରେ ତୃତୀୟ ବୈଠକପର୍ଯ୍ୟନ୍ତ ସଭା ମୁଲତବି ରଖିବାକୁ ବାଧ୍ୟ ହେଲେ ।

ଅଠସ୍ତରି

ପରଦିନ ସକାଳେ ନିର୍ଦ୍ଦିଷ୍ଟ କେତୋଟି ପ୍ରତିନିଧିସ୍ଥାନୀୟ ଲୋକ ଗ୍ରାମର ଜଣେ ପ୍ରଭାବଶାଳୀ ବ୍ୟକ୍ତିଙ୍କ ଗୃହକୁ ଗଲେ । ସେଠାରେ ଘଣ୍ଟା ଘଣ୍ଟା କବାଟବନ୍ଦ ଗୁପ୍ତ ମନ୍ତ୍ରଣା ଚାଲିଲା । ଉକ୍ତ ବ୍ୟକ୍ତି (ବ୍ୟବହାରାଜୀବ) ଅତି କୌଶଳୀ ଓ କୂଟନୀତିରେ ଧୁରନ୍ଧର । ପରିକଳ୍ପିତ ସିଦ୍ଧାନ୍ତକୁ କାର୍ଯ୍ୟକାରୀ କରାଇବାର ବୁଦ୍ଧିକୌଶଳ ସେ ବତାଇଦେଲେ । ତଦନୁଯାୟୀ ଦିନକପରେ ସାହିର ତୁଣ୍ଡିଆ ବୈଠକ ବସିଲା ଏବଂ ମାୟାଧର ଓ କୃଷ୍ଣଚନ୍ଦ୍ରଙ୍କ ପରିବାର ସମାଜଚ୍ୟୁତ ହେଲେ ବୋଲି ସର୍ବସମ୍ମତିକ୍ରମେ ଘୋଷଣା କରାଗଲା । ଯେଉଁ ପର୍ବମେୟ କେତୋଟି ନ୍ୟାୟପର ଲୋକ ପୂର୍ବ ସଭାରେ ପ୍ରତିକ୍ରିୟା ପ୍ରକାଶ କରିଥିଲେ, ତାଙ୍କର ନିଷ୍ପକ୍ଷପାତ ମତ ବାଏଁ-ବାଏଁ ଉଡ଼ିଗଲା । 'ଦର୍ଦ୍ଦୁର-ରବ ଶୁଣି ନୀରବ ପିକ' ପ୍ରାୟ ସେମାନେ 'ମୂଢ଼ ଜନସଭାରେ ମୂକ ଧାର୍ମିକ'ରୂପେ ମାନେ-ମାନେ ମୁହଁରେ ତୁଣ୍ଡି ବାନ୍ଧି କେବଳ ବସିରହିଲେ—'ଦର୍ଦ୍ଦୁରାଃ ଯତ୍ର ବକ୍ତାରଃ ତତ୍ର ମୌନଂ ହି ଶୋଭନମ୍' ।

ଏହି କୃଷ୍ଣଚନ୍ଦ୍ର ହେଉଛନ୍ତି ନାରାୟଣଚନ୍ଦ୍ରଙ୍କର ଚତୁର୍ଥ ପୁତ୍ର ଓ ବିଶ୍ୱନାଥଙ୍କର ସର୍ବକନିଷ୍ଠ ସହୋଦର । ଗ୍ରାମ-ସୀମାର ସାମାନ୍ୟ ବ୍ୟବଧାନପରେ ଥିବା ଜଣେ ନିଃସନ୍ତାନ କରବଂଶୀୟଙ୍କ ଗୃହକୁ ସେ ପୋଷ୍ୟପୁତ୍ରରୂପେ ପିଲାଦିନୁଁ ଚାଲିଯାଇଥିବାରୁ ନାରାୟଣଙ୍କ ପାରିବାରିକ ପୀଢ଼ିରୁ ଆଇନଦୃଷ୍ଟିରେ ସିନା ବିଚ୍ଛିନ୍ନ ହୋଇଯାଇଥିଲେ, ବାସ୍ତବ କ୍ଷେତ୍ରରେ କିନ୍ତୁ ମାୟାଧରଙ୍କ ପରିବାରର ଥିଲେ ସ୍ଥାନୀୟ ମୁରବି ଓ ପରାମର୍ଶଦାତା ।

ସଭାର ହୁକୁମନାମା ସେହି ରାତିଠାରୁ ବଳବତ୍ତର ହେଲା । ଗାଆଁ ହୋଇଗଲା ଦୁଇ ଫାଙ୍କ—ଠିକ୍ କୌରବ ଓ ପାଣ୍ଡବ ଭ୍ରାତାମାନଙ୍କ ପରି । ତଫାତ୍ ଖାଲି ଏତିକି ଯେ, ସୂର୍ଯ୍ୟ-ଉଦୟବେଳକୁ ଦୁଇ ପକ୍ଷଙ୍କ ମୁହଁ ଦୁଇ ଆଡ଼କୁ ହୋଇଗଲେ, କେହି କାହାରିକି ଆଡ଼ଆଖିରେ ସୁଦ୍ଧା ଅନାଇଲେ ନାହିଁ—'ଉଇଁଲାବେଳକୁ ଦିନକର-ଶିଖା ରାହୁ କବା କଲା ଗ୍ରାସ' !

ମାୟାଧର ଓ କୃଷ୍ଣଚନ୍ଦ୍ର ଏକଘରିଆ ହୋଇ ରହିଲେ । ତାଙ୍କ ଦୁଇ ଘର ସହିତ ହେଳମେଳ, କଥାବାର୍ତ୍ତା, ନିଆଁ ପାଣି ଆଦି କୌଣସିପ୍ରକାର ପଡ଼ୋଶୀ ସଂପର୍କ କାହାରି ଆଉ ରହିଲା ନାହିଁ । ଠାକୁରଘର, ଠାକୁରଭୁଠ ତାଙ୍କୁ ମନା ହୋଇଗଲା । ପୁରୋହିତ, ଧୋବା, ଭଣ୍ଡାରି, ଗଉଡ଼, ମୂଲିଆ, କୋଠିଆ ଏମାନେ ଯେପରି ତାଙ୍କ ଦୁଇ ଘରେ କାମ କରିବା ପୁରାପୁରି ବନ୍ଦ କରିଦେବେ,

ସେଥିପାଇଁ ଆପ୍ରାଣ ଚେଷ୍ଟା ଚଳିଲା । ଗ୍ରାମର ମୁଣ୍ଡିଆଳମାନେ ପାଖ ବ୍ରାହ୍ମଣଶାସନ-ମାନଙ୍କୁ ଓ ଅନ୍ୟାନ୍ୟ ଜାତିର ବସ୍ତିଗୁଡ଼ିକୁ ଯାଇ ଏହି ଦୁଇ ପରିବାରଙ୍କୁ ସଂପୂର୍ଣ୍ଣ ବାଚ୍ଛନ୍ଦ କରାଯାଇଥିବା ଘଟନା ସେମାନଙ୍କ ଢେଙ୍ଗୁରାପିଟା ପାଟିରେ ହୁରହୁଲର କରିଦେଲେ । ପୁରୋହିତ, ବାରିକ ଓ ବେହେରାଏ ମୁଣ୍ଡିଆଳମାନଙ୍କ କଡ଼ା ଫର୍ମାନ୍‌କୁ ଉଚ୍ଚବାଚ୍ଚ ମାନିନେଲେ; କିନ୍ତୁ ନିର୍ଭୀକ ରଜକ 'ବାଉରି ସେଠି' ମାନିଲା ନାହିଁ କି ତା ସେବାକାମ ବନ୍ଦ କରିଦେବାକୁ ରାଜି ହେଲା ନାହିଁ । ତାର ଏ ସତ୍‌ସାହସ ଦେଖି ପାଣ, କଣ୍ଡରା, ବାଉରି ଜାତିର କୋଠିଆ, ମୂଲିଆମାନେ ମଧ୍ୟ ଦୁଇ ଗୋସେଇଁଘରର କ୍ଷେତ, ବାଡ଼ି, ଘରଗୁଆଣି ଆଦି ଯାବତୀୟ କାମ ପୂର୍ବପରି ବର୍ଷସାରା ଚଳାଇବେ ବୋଲି ଟେକ୍‌ଠୋକ୍ ଶୁଣାଇଦେଲେ । ଏହିସବୁ ଅସ୍ପୃଶ୍ୟ ଶ୍ରେଣୀର ଲୋକ ବହୁ ଦିନୁ ଅସ୍ପୃଶ୍ୟତାନିବାରଣପ୍ରୟାସୀ ବିଶ୍ୱନାଥଙ୍କୁ ଦେବତା ଭଳି ମାନିଆସିଥିଲେ । ମୁଣ୍ଡିଆଳମାନଙ୍କ ମନ୍ତ୍ରର କାଟପାଣି ଏମାନଙ୍କଠେଇଁ ମୋଟେ କାଟୁ ହୋଇପାରିଲା ନାହିଁ । ହେଲେ, 'ଭୁଣ୍ଡିବାଇଦ ସହସ୍ର କୋଶ' ପ୍ରବାଦ ଅନୁସାରେ ଗାଁରୁ ଗାଁ, ପାଖରୁ ଦୂର, ଅଞ୍ଚଳରୁ ଅଞ୍ଚଳ ହୋଇ ବ୍ରାହ୍ମଣ-ପ୍ରଧାନ ମୂଳବସନ୍ତଶାସନଙ୍କ ବେଣ୍ଡା ହୁକୁମର ଖବର ସାରା କଟକ ଜିଲାରେ ରାଷ୍ଟ୍ର ହୋଇଯିବାକୁ ଦୁଇ ତିନି ମାସରୁ ଅଧିକ ଡେରି ହେଲା ନାହିଁ ।

ଗ୍ରାମବାସୀଙ୍କର ଆତ୍ମଘାତୀ ବୀଭତ୍ସ କାର୍ଯ୍ୟର ଅନ୍ତର୍ନିହିତ ରହସ୍ୟ ପଦାକୁ ଫୁଟି ବାହାରିବାକୁ ବେଶୀ ଦିନ ଲାଗିଲା ନାହିଁ । ଗୋଳମାଳର ମୂଳ କାରଣ ଅତି ସାମାନ୍ୟ, ନଗଣ୍ୟ । ପୂର୍ବୋକ୍ତ ଆଇନବ୍ୟବସାୟୀ ପ୍ରତିପତ୍ତିଶାଳୀ ବ୍ୟକ୍ତି ଜଣକ ତାଙ୍କ ବ୍ୟକ୍ତିଗତ ସୁବିଧାପାଇଁ ମାୟାଧରଙ୍କର ଖଣ୍ଡିଏ ଜମିକୁ ବଦଳରେ ହସ୍ତଗତ କରିନେବେ ବୋଲି ମନେ ମନେ ଗେଣ୍ଡ ହୋଇ ପ୍ରସ୍ତାବ ପଠାଇଥିଲେ ମାୟାଧରଙ୍କ ପାଖକୁ । ମାୟାଧର କିନ୍ତୁ ତହିଁରେ ଅସମ୍ମତି ପ୍ରକାଶ କଲେ; କାରଣ ଏହି ଅଦଳବଦଳଦ୍ୱାରା ପ୍ରସ୍ତାବକଙ୍କର ଯେଉଁ ଅସୁବିଧାଟି ଦୂର ହୋଇଥାନ୍ତା, ମାୟାଧରଙ୍କୁ ଠିକ୍ ସେହି ଅସୁବିଧାଟି ଭୋଗ କରିବାକୁ ପଡ଼ିଥାନ୍ତା । ନିଜର ସ୍ୱାର୍ଥସିଦ୍ଧିରେ ମାୟାଧର ଅନ୍ତରାୟ ହେବାରୁ ଉକ୍ତ ଦାମ୍ଭିକ ବ୍ୟକ୍ତିଟି ମନମଧ୍ୟରେ ଅତିଶୟ କ୍ଷିପ୍ତ ହୋଇଉଠି ପ୍ରତିଶୋଧ ନେବାକୁ ବଦ୍ଧପରିକର ହେଲେ । 'ଇଚ୍ଛନ୍ତି ଦାମ୍ଭିକେ ହସ୍ତେ ରଖିବାକୁ ସମସ୍ତଙ୍କ ଭାଗ୍ୟଡ଼ୋରି, ନିଜ ଭାଗ୍ୟଡ଼ୋରି କାଳହସ୍ତେ ଏହା ପକାନ୍ତି ହେଳେ ପାସୋରି ।' ସେ ନିଜେ ପରଦା-ଉହାଡ଼ରେ ରହି ପିଲାମାନଙ୍କୁ ମତାଇ ଓ ଗ୍ରାମବାସୀମାନଙ୍କୁ ତତାଇ ଏହି

ଅପ୍ରୀତିକର, ଅଶୋଭନୀୟ, ଅନିଷ୍ଟକର, ଜଘନ୍ୟ କାଣ୍ଡଟି ଉଆଇଲେ । ହୀନ ସ୍ୱାର୍ଥଲିପ୍ସାର ତୃଷାରେ ମନୁଷ୍ୟ ଶୁଷ୍କକଣ୍ଠ, ପରିଶୁଷ୍କତାଲୁ ହେଲେ ହିତାହିତଜ୍ଞାନ ହରାଇବସେ ଏବଂ ତାର ଜଡ଼ୀଭୂତ ମନ ବିବେକର ବାଣୀକୁ ଅବଜ୍ଞା କରେ । ଏପ୍ରକାର ଘୃଣ୍ୟ ଜଣସ୍ୱାର୍ଥ ପରିଣାମରେ ଜନସ୍ୱାର୍ଥ ବା ଗଣସ୍ୱାର୍ଥର କଣ୍ଠ ରୋଧ କରିବା ସଙ୍ଗେ ସଙ୍ଗେ ଆତ୍ମଘାତର ପଥ ପରିଷ୍କାର କରିଦିଏ । ଗ୍ରାମବାସୀମାନେ ଜଣକର କୁଶିକ୍ଷାରେ ଅନ୍ଧଭାବରେ ପରିଚାଳିତ ହୋଇ ଯିମିତି ଖେଳରୁ ଯେଉଁ ମହାଭାରତ ଯୁଦ୍ଧ ସୃଷ୍ଟି କଲେ, ତାର ଭୟାବହ ପରିଣତି ସେତେବେଳେ ସେମାନଙ୍କ ଜ୍ଞାନ-ପରିଧିର ବାହାରେ ରହିଗଲା ।

ଯାହା ଭବିତବ୍ୟ, ଅବଶ୍ୟ ତାହାହିଁ ଘଟିବ—କେହି ତାକୁ ଅନ୍ୟଥା କରିପାରିବ ନାହିଁ । ସେହି ଜ୍ୟୋତିଷ୍ଟକର ଚକ୍ରରୋଧ କରିବାକୁ ମଧ୍ୟ କାହାରି ତାକତ ନାହିଁ । ଏଠାରେ ଯେଉଁ ନାଟକୀୟ ଅଭିନୟ ସଂଘଟିତ ହୋଇଗଲା, ଯେଉଁ ହଠଚମକ ବିଦ୍ୟାର ଭାନୁମତୀ ଖେଳ ଦେଖିବାକୁ ମିଳିଲା, ସବୁହିଁ ଅଦୃଶ୍ୟ ଭବିତବ୍ୟ-ଶିଳ୍ପୀ ସର୍ବଜୟୀ ମହାକାଳର କରାମତି ।

ଯାହାହେଉ, ଏହି ଆକ୍ରୋଶମୂଳକ ଅନର୍ଥକ ବାଡ଼ଝଗଡ଼ାର ଆମୂଳଚୂଳ ବିବରଣ ଦିନେ-ଦୁଇଦିନମଧ୍ୟରେ ବିଶ୍ୱନାଥଙ୍କର କର୍ଣ୍ଣଗୋଚର କରାଇଲେ ମାୟାଧର ଓ କୃଷ୍ଣଚନ୍ଦ୍ର । ବିଶ୍ୱନାଥ ଟିକିଏ ହେଲେ ବିଚଳିତ ହେଲେ ନାହିଁ । ବିବ୍ରତ-ବିମର୍ଷ ସେଦୁହିଙ୍କୁ କହିଲେ :

"ତୁମମାନଙ୍କପାଇଁ ଏ ଗୋଟାଏ ପ୍ରଚଣ୍ଡ ପରୀକ୍ଷାର ବେଳ । ଅତୁଟ ସାହସ, ଧୈର୍ଯ୍ୟ, ସହିଷ୍ଣୁତା ଓ ଗଭୀର ଆତ୍ମବିଶ୍ୱାସର ବର୍ମରେ ଆଚ୍ଛାଦିତ ହୋଇ ଶତ୍ରୁ-ଆହ୍ୱାନର ସମ୍ମୁଖୀନ ହୁଅ । ବିପକ୍ଷୀୟ କାହାରିପ୍ରତି ବାକ୍ୟରେ, ମନରେ ଅଥବା କାର୍ଯ୍ୟରେ ହିଂସାଚରଣକୁ ଭୁଲ୍‌ରେ ସୁଦ୍ଧା ପ୍ରଶ୍ରୟ ଦେବ ନାହିଁ । ତୁମେ ସତ୍ୟରେ ଓ ନ୍ୟାୟରେ ବଳୀୟାନ୍ ରହି ନିଜର ନୈତିକ କର୍ତ୍ତବ୍ୟ ପାଳନ କରୁଥିବାପର୍ଯ୍ୟନ୍ତ ଦୁନିଆର କୌଣସି ଶକ୍ତି ତୁମର ଅଣୁମାତ୍ର କ୍ଷତି କରିପାରିବ ନାହିଁ । କିନ୍ତୁ ମନେ ରଖ, ମଦାନ୍ଧ ଗ୍ରାମବାସୀଙ୍କର ଏହି ଉତ୍କଟ ଅନ୍ୟାୟ ନିକଟରେ କ୍ଷଣକପାଇଁ ସୁଦ୍ଧା ମୁଣ୍ଡ ନୁଆଁଇବ ନାହିଁ । ଏ ଦୁର୍ଦ୍ଦିନ ସବୁ ଦିନ ରହିବ ନାହିଁ—ବାର ମାସରେ ହେଉ ବା ବାର ବର୍ଷରେ ହେଉ, ଦିନେ ନା ଦିନେ ଏହାର ଅବସାନ ଘଟିବ । ଉଦ୍‌ଭ୍ରାନ୍ତ, ଦିଗ୍‌ଭ୍ରାନ୍ତ, ମତିଭ୍ରାନ୍ତ ସମାଜ

ଦିନେ ନିଶ୍ଚୟ ନିଜର ଭ୍ରାନ୍ତ ବୁଝିବ ଓ କୃତକର୍ମପାଇଁ ଅନୁଶୋଚନା କରିବ । ସେତେବେଳେ ତୁମର ଯେଉଁ ବିଜୟ ହେବ, ତାହା ପ୍ରକୃତରେ ହେବ ସତ୍ୟର ବିଜୟ, ନ୍ୟାୟର ବିଜୟ, ଧର୍ମର ବିଜୟ ।”

କୃଷ୍ଣଚନ୍ଦ୍ର ଓ ମାୟାଧର ନବ ବଳ ପାଇ ଗୃହକୁ ଫେରିଆସିଲେ । ପରିବାରର କୌଣସି କାର୍ଯ୍ୟ ଅଚଳ ରହିଲା ନାହିଁ କି କୌଣସି ଅସୁବିଧା ଅନୁଭୂତ ହେଲା ନାହିଁ । ଗୃହ ଠିକ୍ ତା ବାଟରେ ଚାଲିଲା, ଧୋବା ଆଗ ଭଳି ଲୁଗା କାଚିଲା, ଦରକାରବେଳେ ବନ୍ଧୁବାନ୍ଧବ-ଗ୍ରାମରୁ ପୁରୋହିତ ଓ କାହାଣୀଆ ବେହେରା ଆସିଲେ । କେବଳ ବାରିକ ଛଡ଼ା ଆଉ କିଛି ଅଭାବ ଦେଖାଗଲା ନାହିଁ । ମାତ୍ର ବାରିକର ସ୍ଥାୟୀ ବ୍ୟବସ୍ଥା କରିଦେଲେ ବିଶ୍ୱନାଥ । ତାଙ୍କ ନିର୍ଦ୍ଦେଶରେ କଟକରୁ ନିୟମିତରୂପେ ଜଣେ ନାପିତ ଆସି ପାରିବାରିକ କ୍ଷୌରକାର୍ଯ୍ୟ ଚଳାଇଦେଲା ।

ମାସପରେ ମାସ ବିତିବାକୁ ଲାଗିଲା, ଅଥଚ ଏକଘରିଆଙ୍କୁ ଦିନେ ହେଲେ କୌଣସି କାର୍ଯ୍ୟରେ ହଇରଣ-ହରକତର ଧାସ ସୁଦ୍ଧା ସ୍ପର୍ଶ କଲା ନାହିଁ । ଏହା ଦେଖି ଗାଆଁଲୋକେ ଈର୍ଷ୍ୟାରେ ଜଳି ମନ-ଉରମାନ ମେଣ୍ଟାଇବାକୁ କୁଟିଳ ପନ୍ଥା ଧରିଲେ । କାନ୍ଥକୁ ବାଡ଼କୁ ଦେଖାଇ ବ୍ୟଙ୍ଗବିଦ୍ରୂପର ବକ୍ରୋକ୍ତି-ବାଣ ଫିଙ୍ଗି ଏହି ଦୁଇ ପରିବାରର ଲୋକଙ୍କୁ ନାନାଭାବରେ ଅପମାନ ଦେବାକୁ ଚେଷ୍ଟା କଲେ । ଏମାନେ କିନ୍ତୁ ଘୁଣାକ୍ଷରରେ ସୁଦ୍ଧା କୌଣସି ପ୍ରତିକ୍ରିୟା ପ୍ରକାଶ ନ କରି ନିର୍ବାକ୍ ନିର୍ବିକାର ରହିଲେ । ଏହାପରେ ବିଫଳ-ପ୍ରୟାସ ମୁଣ୍ଡିଆଳ-ମାନଙ୍କ ଇଙ୍ଗିତରେ ପରିଚାଳିତ ହୋଇ ଗ୍ରାମବାସିନୀ ବର୍ଷୀୟସୀ ମହିଳାମାନେ ବିଶେଷତଃ ବିଧବାମାନେ ଆରମ୍ଭ କରିଦେଲେ ଶୁଚିବାଇ ରୋଗର ବିଦ୍ୱେଷାତ୍ମକ କୃତ୍ରିମ ଅଭିନୟ । ଏକଘରିଆଙ୍କ ମଧ୍ୟରୁ କେହି ଲୋକ ଦାଣ୍ଡରେ ଯାଉଥିଲା-ବେଳେ ଯଦି ପତରଟାଏ, କୁଟାଖଣ୍ଡେ କି କାଠିଟାଏ ମାଡ଼ିଦେଇ ଗଲା, ତାହାହେଲେ ସେଗୁଡ଼ାକ ମାରି ହୋଇଗଲା ବୋଲି ଚିତ୍କାର ଛାଡ଼ି ସେସବୁ-ଉପରେ ଗୋବରପାଣି ଛିଞ୍ଚି ଦାଣ୍ଡ ଶୁଦ୍ଧ କରିବା ବାହାନାରେ ସେହି ଲୋକର ଦେହଉପରକୁ ଗୋବରପାଣିର ଛିଟା ଫିଙ୍ଗିବାକୁ ଲାଗିଲେ । କେବଳ ଏତିକି ନୁହେଁ, କୋଠପଦା ସ୍କୁଲରେ ପଢୁଥିବା ମାୟାଧରଙ୍କ ଦୁଇ ପୁତ୍ର କ୍ଷିତୀନ୍ଦ୍ର ଓ ରବୀନ୍ଦ୍ରଙ୍କୁ ମଧ୍ୟ ଲାଞ୍ଛିତ ନ କରି ଛାଡ଼ିଲେ ନାହିଁ । ସ୍କୁଲରେ ସରସ୍ୱତୀପୂଜା ଉତ୍ସବରେ ଚାନ୍ଦା ଦେଇ ଯୋଗଦାନ କରିଥିବା ଏହି ଦୁଇ ଭାଇଙ୍କୁ ପୁଷ୍ପାଞ୍ଜଳି

ଦେବାରୁ ବଞ୍ଚିତ କରାଗଲା । ପୁଣି, ଗ୍ରାମବାସୀମାନେ ଏକପଙ୍କ୍ତିରେ ବସି ପ୍ରସାଦ ସେବା କରୁଥିବା ସ୍ଥଳେ କ୍ଷିରୋଦ ଓ ରବୀନ୍ଦ୍ରଙ୍କୁ ଅଳ୍ପଆଁ ପିଲାଙ୍କର ଦୂରରେ ଏକକଣକିଆ ବସାଇ ପ୍ରସାଦ ଦିଆଗଲା । ଏତେ ଅପମାନ ଓ ଲାଞ୍ଛନା ସତ୍ତ୍ୱେ ଭ୍ରାତୃଦ୍ୱୟ ପିତୃନିର୍ଦ୍ଦେଶାନୁଯାୟୀ ବିରୁକ୍ତି ନ କରି ପ୍ରସାଦ ସେବନ କଲେ ।

ଏହିରୂପେ ଯୋଡ଼ିଏ ପରିବାରକୁ ହୀନସ୍ତରରେ ପକାଇ ଆନନ୍ଦ ଉପଭୋଗ କରିବାକୁ ଖଳମଣ୍ଡଳୀଗୁଡ଼ିକ ଯେତେ ହୀନ ଉପାୟର ଆଶ୍ରୟ ନେଲେ, ଗୋଟିଏ ହେଲେ କାହିଁରେ କୃତକାର୍ଯ୍ୟ ହୋଇପାରିଲେ ନାହିଁ; ବରଂ ତଦ୍ଦ୍ୱାରା ପ୍ରତିପକ୍ଷ ଦୁଇ ପରିବାରର ମନୋବଳ ଓ ନିର୍ଭୟତା ଦିନୁ ଦିନ ବୃଦ୍ଧିପ୍ରାପ୍ତ ହେଲା । ଅନ୍ତରାଳସ୍ଥ ଯେଉଁ ସ୍ୱାର୍ଥକାମୀ ସୂତ୍ରଧର ବିଷମଞ୍ଜିଟିଏ ଦିନେ ରୋପଣ କରିଥିଲେ, ଏଥିମଧ୍ୟରେ ତାହା ସହସ୍ର ଶାଖାପ୍ରଶାଖା ବିସ୍ତାର କରି ବିଶାଳ ବିଷବୃକ୍ଷରେ ପରିଣତ ହୋଇସାରିଛି ।

ପ୍ରାୟ ତିନି ବର୍ଷର ସଂଘର୍ଷପରେ ବଳ-କଷାକଷିର ଗୋଟାଏ ବଡ଼ ପରୀକ୍ଷାବେଳ ଆସିଲା—ମାୟାଧରଙ୍କ ଦ୍ୱିତୀୟ ପୁତ୍ର ରବୀନ୍ଦ୍ରର ବ୍ରତୋପନୟନ ଉପଲକ୍ଷରେ । ଗ୍ରାମର କୁଚକ୍ରୀମାନେ ଏହି ନିମିତ୍ତଟିକୁ ମଧ୍ୟ ଭଣ୍ଡୁର କରିଦେଇ କୃଷ୍ଣଚନ୍ଦ୍ର ଓ ମାୟାଧରଙ୍କ ମୁହଁରେ ସବୁଦିନକୁ ମନେ ରହିବାଭଳି ପଟାଏ କାଳି ବୋଳିଦେବାପାଇଁ ସଂଘବଦ୍ଧଭାବରେ ପୂର୍ବରୁ ସଜବାଜ ହୋଇ ରହିଥିଲେ । ମାୟାଧରଙ୍କ ପକ୍ଷର ପୂର୍ବାୟୋଜନ କମ୍ ଟାଣୁଆ ବି ନ ଥିଲା । ଠିକଣା ବେଳକୁ ରକ୍ତସଂପର୍କିତ ବନ୍ଧୁବାନ୍ଧବଗୋଷ୍ଠୀ ଓ ଉଚ୍ଚପଦାସୀନ ଶକ୍ତିସମ୍ପନ୍ନଶାଳୀ ଗଣ୍ୟମାନ୍ୟ ସଜ୍ଜନ ବ୍ୟକ୍ତି ଏତେ ଆସି ଠୁଳ ହୋଇଗଲେ ଯେ, ଘୁଞ୍ଚିଫୁଲ କୂଟ-ଚକ୍ରୀମାନଙ୍କ ଚେହେରା ଏକାବେଳେ ଫିକା ପଡ଼ିଗଲା ଏବଂ ସେମାନଙ୍କର ସମସ୍ତ ହୀନୋଦ୍ୟମ ପଣ୍ଡ ହୋଇ ଫାଟିଗଲା । ନିର୍ବିଘ୍ନରେ ନିର୍ବାଧରେ ଉପନୟନ ଉତ୍ସବଟି ଖୁବ୍ ଆଡ଼ମ୍ବର ସହକାରେ ସମାପିତ ହେଲା । ଗାଁର ଉଦ୍ଧତ ମୁଣ୍ଡିଆଳଗଣ ଓ ତାଙ୍କ ଗୋଡ଼ାଣିଆଦଳ ନିଜ ମୁହଁରେ ନିଜେ ଚୂନକଳା ବୋଳି ଲଜ୍ଜାରେ ଦାଣ୍ଡପିଣ୍ଡାକୁ ସୁଦ୍ଧା ଗୋଡ଼ କାଢ଼ିପାରିଲେ ନାହିଁ ।

ଆତ୍ମଗ୍ଲାନିରେ ଧର୍ମଧ୍ୱଜୀମାନଙ୍କର ଅଣ୍ଟାବଳ ଖସିପଡ଼ିଲା । ପୋଲିସ କର୍ତ୍ତୃପକ୍ଷ ମଧ୍ୟ ଶାନ୍ତିଭଙ୍ଗ ଆଶଙ୍କାରେ ଏହି ଗ୍ରାମବିବାଦଉପରେ ଏଣିକି ତୀକ୍ଷ୍ଣ ନଜର ରଖିଲେ । ଗ୍ରାମବାସୀଏ ବୃଥା ଏ ଯେଉଁ ଲଢ଼େଇପାଲା ଆରମ୍ଭ କରିଦେଲେ, ତଦ୍ଦ୍ୱାରା ବିଶ୍ୱନାଥଙ୍କୁ ଗ୍ରାମରୁ ପୁଣି ବିଚ୍ଛିନ୍ନ କରାଇଦେଇ ଆପଣା

[ଉଦ୍ୟମ]

ହସ୍ତେ ଆପଣା ଜିହ୍ୱା ଛେଦିଦେଲେ । ବିମୁଖ ବିଶ୍ୱନାଥ ଆଉ ଗ୍ରାମସୀମା ମାଡ଼ିଲେ ନାହିଁ । ଫଳରେ ଶରବସନ୍ତ ମୂଳବସନ୍ତ ଗ୍ରାମର ବସନ୍ତ ରୂପ ହଠାତ୍ ହତଶ୍ରୀ ହୋଇଗଲା । ବାଳିକା ବିଦ୍ୟାଳୟ, ନୈଶ ବିଦ୍ୟାଳୟ, କରବଂଶ ଗ୍ରନ୍ଥାଗାର, ଗ୍ରାମୋନ୍ନୟନ କାର୍ଯ୍ୟକ୍ରମ, ସବୁର ଅସ୍ତିତ୍ୱ ଲୋପ ପାଇଲା । ଗ୍ରାମାଞ୍ଚଳଟିର ଫାଟା ଭାଗ୍ୟ ଯାହା ଫିଟିଆସୁଥିଲା, ପୁଣି ତାହା ପୂର୍ବ ଅବସ୍ଥାକୁ ଫେରିଗଲା ।

ଗ୍ରାମବାସୀମାନେ ନିଜ ସୃଷ୍ଟ ସାମାଜିକ ଦ୍ୱନ୍ଦ୍ୱର କୁଫଳ ଏବେ ହାତେ ହାତେ ପାଇଲେ । ଅନୁତାପ, ଅନୁଶୋଚନାରେ ମର୍ମ ବିଦାରିତ ହେଲା ସତ, ବିଶ୍ୱନାଥଙ୍କୁ ଗ୍ରାମଛାଡ଼ିବା ନିଷ୍ପତ୍ତି ରୋକିବା ପାଇଁ ଚେଷ୍ଟା କଲେ ସତ, କିନ୍ତୁ ଲେଉଟି ଗଡ଼ିଗଲା ପରେ ଆଉ କି ପ୍ରତିକାର ଥାଏ ? 'କହିଗଲା କଥା ପୁଣି ବହିଗଲା ପାଣି, ଏ ବେନି କି କେବେ ହେଲେ ଉଠଇ ଉଜାଣି ?' ଅଣଲେଉଟା ରୁକୁଣା ରଥ— ସିଏ କି ଆଉ ଫେରେ ? ଗଲାପୁଅ ବାହୁଡ଼ି ନ ଆସେ !

ଯୁଗ-ଯୁଗ ପୂର୍ବର ଗଣନାତୀତ କାଳରୁ ଗଡ଼ିଆସୁଥିବା ଭବିଷ୍ୟଜାଣ ବଡ଼ବଡ଼ଙ୍କେଙ୍କ ତୁଣ୍ଡବେଦ 'ଘାତ ଉଭୁରିଲେ ଚୂଳିରେ ପଡେ, ମଣିଷ ଉଭୁରିଲେ ଗାତରେ ପଡେ' ଅସତ ହେବାର ନୁହେଁ । ବର୍ଷପରେ ବର୍ଷ ଯେତିକ ଗଡ଼ୁଥାଏ, ଗାଆଁ ଗଣ୍ଡଗୋଳର ଅତି ଉଦ୍‌ବାର୍ଗିଆ ଅତି ଜିଦ୍‌ଖୋରିଆ ଅଦଳ ବେବର୍ତ୍ତା କେତେ ଜଣଙ୍କର ଆକାଶଛୁଆଁ ମୁଣ୍ଡ ସେତିକ ଭୂଇଁଆଡ଼କୁ ଓହ୍ଲେଇହୋଇ ଆସୁଥାଏ । ଯାକଲା ବାଳର ବୁଢ଼ାବୁଢ଼ୀ ମାମଲତକାରଙ୍କ ମଧ୍ୟରୁ କେହି କେହି ପାଚିଲା ତାଳର ପ୍ରାୟେ ଝଡ଼ି ମାଟି କାମୁଡ଼ି ଗାତରେ ପଶିବା ଦଶାର ନିକଟବର୍ତ୍ତୀ ହେବାକୁ ବସିଲେ । ସର୍ବଧ୍ୱଂସୀ କାଳ ସବୁର ଗର୍ବ-ଦମ୍ଭ-ତମ ଗାରିମା-ବଡ଼ିମାକୁ ପୋଡ଼ିଜାଳି ଭସ୍ମ କରିଦିଏ, ଦାମ୍ଭିକର ଉଦ୍ଧତ ମଥାକୁ ନିଜ ଚକ୍ରନେମିର ଚାପରେ ଚୂରିଦିଏ । ସେହି ଚିରନ୍ତନ ନିୟମରେ ବିଭେଦସୃଷ୍ଟିକାରୀ ଅହମ୍ମନ୍ୟ-ମାନଙ୍କର ଆନ୍ ଚୂର୍ଣ୍ଣବିଚୂର୍ଣ୍ଣ ହୋଇ ଦାଣ୍ଡର ଧୂସର ଧୂଳିରେ ମିଶିଗଲା । ଏଣେ ଗାଆଁର ବିଷୟବୁଧିଆ ମହିଳାମାନଙ୍କ ସମେତ କେତେ ବିବେକୀ ଲୋକ ବିଶ୍ୱନାଥଙ୍କ ଗ୍ରାମୀୟ ପରିବାର ସହିତ ମିଳାମିଶା କରିବାକୁ ଭିତରେ ଭିତରେ ଅଡ଼ି ଧରି ବସିଲେ । ଏସବୁ ଫଳରେ ଦୀର୍ଘ ବାର ବର୍ଷପରେ ୧୯୩୫ ମସିହାରେ ଅର୍ଥାତ୍ ବିଶ୍ୱନାଥଙ୍କ ଦେହାନ୍ତର ପର ବର୍ଷ ଗ୍ରାମବାସୀମାନେ ମୋଡ଼ିମାଡି ହୋଇ ବିଭେଦର କଣ୍ଟାବାଡ଼ ଆପେ ଉଠାଇଦେଇ ମାୟାଧର ଓ କୃଷ୍ଣଚନ୍ଦ୍ରଙ୍କ ପରିବାରବର୍ଗଙ୍କୁ ସମାଜର ଅନ୍ତାମଧ୍ୟକୁ ଘେନିଆସିଲେ । ବିଶ୍ୱନାଥଙ୍କ ଭବିଷ୍ୟଦ୍‌ବାଣୀ ଅକ୍ଷରେ-ଅକ୍ଷରେ ଷୋଳଅଣା ସତ୍ୟରେ ପରିଣତ ହେଲା ।



# ପ୍ରେସପ୍ରାସାଦ ନିର୍ମାଣ

ଭଡ଼ାଘରେ 'ଉତ୍କଳସାହିତ୍ୟ ପ୍ରେସ'ର ଆରମ୍ଭବେଳୁଁ ତାହାର ପଶ୍ଚାଦ୍ଦେଶରେ ଅର୍ଥାତ୍ ଉତ୍ତରପଟ ଫାଟକପାର୍ଶ୍ୱସ୍ଥ ପ୍ରେସପରିସରମଧ୍ୟରେ ବିଶ୍ୱନାଥ-ପରିବାର ଅବସ୍ଥାନ କରୁଥିଲେ । ମାତ୍ର କ୍ରମବର୍ଦ୍ଧିଷ୍ଣୁ ମୁଦ୍ରଣାଳୟଟିର ଯଥେଷ୍ଟ ପ୍ରସାରଣ ଘଟିବାଯୋଗୁଁ ଉକ୍ତ ବାସପ୍ରକୋଷ୍ଠଗୁଡ଼ିକ ପ୍ରେସକାମରେ ବ୍ୟବହୃତ ହେବା ନିତାନ୍ତ ଜରୁରୀ ହୋଇଉଠିଲା । ତେଣୁ ପରିବାର ରହିବା-ପାଇଁ ବିଶ୍ୱନାଥ ପ୍ରେସର ଠିକ୍ ବାମ ପାର୍ଶ୍ୱବର୍ତ୍ତୀ ଏକ ଦ୍ୱିତଳ ପ୍ରାସାଦର ଉପର ମହଲଟି ଭଡ଼ା ନେବାକୁ ବାଧ୍ୟ ହେଲେ । ପ୍ରେସଗୃହ ଓ ବାସଗୃହ ଏପରି ଦୁଇଟା ବଡ଼ ଘରର ମାସିକ ଭଡ଼ା ବାବଦରେ ବହୁଳ ଅର୍ଥ ବ୍ୟୟ କରିବାକୁ ପଡ଼ିଲା ।

ସେତେବେଳେ ପଣ୍ଡିତ ଆକୁଳ ମିଶ୍ର କାବ୍ୟତୀର୍ଥଙ୍କଦ୍ୱାରା ପରିଚାଳିତ 'କଟକ ଟ୍ରେଡ଼ିଂ କମ୍ପାନୀ' ଓଡ଼ିଶାର ସର୍ବବୃହତ୍ ଆଧୁନିକ ପୁସ୍ତକାଳୟ ଓ ସର୍ବପ୍ରଧାନ ପୁସ୍ତକ-ପ୍ରକାଶନ ସଂସ୍ଥାର ସୁଖ୍ୟାତି ଅର୍ଜିଥାଏ । ଏବେ ବିଶ୍ୱନାଥଙ୍କ ପରିବାର ଯେଉଁ ସୁପ୍ରଶସ୍ତ ଉପର ମହଲରେ ଅବସ୍ଥାନ କଲେ, ଉଲ୍ଲିଖିତ ପୁସ୍ତକାଳୟଟି ତାହାର ତଳମହଲର ଭଡ଼ା ଲାଗିଥିବା ଏକାଂଶରେ ପାଖିକିଆ ହୋଇ ଆଗରୁ ଅବସ୍ଥାପିତ ଥାଏ । ଟ୍ରେଡ଼ିଂ କମ୍ପାନୀର ପ୍ରାୟ ସମସ୍ତ ପୁସ୍ତକ ସେତେବେଳେ ଉତ୍କଳସାହିତ୍ୟ ପ୍ରେସରେ ମୁଦ୍ରିତ ହେଉଥିଲା । ବିଶ୍ୱନାଥଙ୍କର ସାମୟିକ ଅର୍ଥାଭାବ ଘଟିଲେ ପଣ୍ଡିତ ମହାଶୟ ନିଃସଙ୍କୋଚରେ ତାହା ଯୋଗାଇଦେଇ ପ୍ରେସର ପରବର୍ତ୍ତୀ ମୁଦ୍ରଣ ବିଲ୍‌ମାନଙ୍କରେ ଏପରିଭାବରେ କିଛି କିଛି ମଜୁରି କରିନଅନ୍ତି ଯେ, ସମସ୍ତ ଟଙ୍କା କେତୋଟି ମାସମଧ୍ୟରେ ପରିଶୋଧ ହୋଇଯାଏ । କିନ୍ତୁ ନାନା କାରଣରୁ ସେହି ସାମୟିକ ଅଭାବ ଏଣିକି ଚିମାସିଆ ଅଭାବରେ ପରିଣତ ହେବାକୁ ଯାଉଥିବାର ଦେଖି ପଣ୍ଡିତେ ଅନୁଭବ କଲେ ଯେ,

ବିଶ୍ୱନାଥ ଆସ୍ତର ଗଣ୍ଡିମଧ୍ୟରେ ପାରିବାରିକ ବ୍ୟୟପରିମାଣକୁ ସୀମିତ ରଖି ନ ପାରି ଯେପରି ମୁକ୍ତମୁଷ୍ଟି ହୋଇଯାଉଛନ୍ତି, ତଦ୍ଦ୍ୱାରା ପ୍ରେସର ସ୍ୱଚ୍ଛଳତା କ୍ରମେ ମନ୍ଦୀଭୂତ ହୋଇଆସିବ । ଏଥିପାଇଁ ଦିନେ ସେ ସାହସ ବାନ୍ଧି ବିଶ୍ୱନାଥଙ୍କ ସହିତ ଉକ୍ତ ବିଷୟରେ ଆଲୋଚନା କରିବାବେଳେ ପରିବାରର ଯଥାସମ୍ଭବ ବ୍ୟୟସଂକୋଚପାଇଁ କେତୋଟି ଗ୍ରହଣଯୋଗ୍ୟ ପ୍ରସ୍ତାବ ଦେଲେ ।

ଚାରୁବାକ୍ ବିଶ୍ୱନାଥ କିନ୍ତୁ ପରିବାର-ପରିଚାଳନାରେ ଆଂଶିକ ଚାର୍ବାକ୍‌ମାର୍ଗୀ—'ଯାବତ୍ ଜୀବେତ୍ ସୁଖଂ ଜୀବେତ୍' ଯଦି ଆଧୁନିକ ସଂସାରୀର କାମ୍ୟ ହୁଏ, ତେବେ ଆପଣାର ଶୋଧଶକ୍ତିମତେ ସାମୟିକ 'ଋଣଂ କୃତ୍ୱା ଘୃତଂ ପିବେତ୍' ଆପତ୍ତିକର କାହିଁକି ? ତେଣୁ ତାଙ୍କର ଉତ୍ତର ହେଲା ସ୍ୱଭାବତଃ ନେତିବାଚକ, "ସଭ୍ୟସମାଜୋଚିତ ମାର୍ଜିତ ରୁଚିର ବେଷ୍ଟନୀମଧ୍ୟରେ ଉଚ୍ଚ ମନ ଓ ଉଦାର ହୃଦୟ ଘେନି ମଣିଷ ପରି ବଞ୍ଚିରହିବାକୁ ହେଲେ ଗୋଟିଏ ନାତିବୃହତ୍ ଶିକ୍ଷିତ ପରିବାରପାଇଁ ବ୍ୟକ୍ତିଗତ ଔଚିତ୍ୟଦୃଷ୍ଟିରୁ ଯାହା ସର୍ବନିମ୍ନ ଆବଶ୍ୟକତା, ତହିଁରେ ପୁଣି ଛଟେଇ ମାଡ ପ୍ରୟୋଗ କରିବା କେବେହେଲେ କି ବିବେକାନୁମୋଦିତ ହୋଇପାରେ ?"

ନିରୁତ୍ତର ପଣ୍ଡିତ ମହାଶୟ ଅଗତ୍ୟା ଅନ୍ୟ ଏକ ପ୍ରସ୍ତାବ ଦେଲେ, "ବଡ଼ ଆକାରର ଦୋତାଲା ଘରଟିଏ ନିର୍ମାଣ କରିଯାଉ, ଯାହାର ତଳ ମହଲାଟି ପ୍ରେସର ସକଳ ବିଭାଗର କାର୍ଯ୍ୟ ସଂପୂର୍ଣ୍ଣ ବ୍ୟବସ୍ଥିତ ଢଙ୍ଗରେ ସୁଚାରୁରୂପେ ଚାଲିବାପକ୍ଷରେ ପର୍ଯ୍ୟାପ୍ତ ଉପଯୋଗୀ ହେବ ଏବଂ ସମଗ୍ର ଉପର ମହଲାଟି କେବଳ ବାସଗୃହରୂପେ ବ୍ୟବହାର କରାଯିବ । ତାହାହେଲେ ମୁଣ୍ଡଭାରି (top-heavy) ଘରଭଡ଼ା ବୋଝରୁ ନିଶ୍ଚିତଭାବରେ ଅବ୍ୟାହତି ମିଳିବ ଏବଂ ସେ ବାବଦର ମୋଟା ଅର୍ଥ ତକ ପ୍ରତି ମାସରେ ବ୍ୟାଙ୍କରେ ସଞ୍ଚିତ ହୋଇ ରହିବ, ଯହିଁରୁ କି ବିଶେଷ ବିଶେଷ ପ୍ରୟୋଜନବେଳେ ଟଙ୍କା ଆଣି ଗରଜ ମେଣ୍ଟାଯାଇପାରିବ । ଏହା କାର୍ଯ୍ୟରେ ପରିଣତ ହୋଇପାରିଲେ ଭବିଷ୍ୟତରେ ଆଉ ଅର୍ଥାନଟନର ଶରବ୍ୟ ହେବାକୁ ପଡ଼ିବ ନାହିଁ ।"

ଏହି ପ୍ରସ୍ତାବଟି ବିଶ୍ୱନାଥଙ୍କ ପକ୍ଷରେ ଆପାତ-ଗ୍ରହଣଯୋଗ୍ୟରୂପେ ବିବେଚିତ ହେଲା—'କିନ୍ତୁ'ଟିଏ ରହିଲା କେବଳ ଅର୍ଥସଂସ୍ଥାନ ବ୍ୟାପାରରେ । ଏତେ ସମ୍ବଳ କାହୁଁ ଆସିବ ? ଏହି ଦୁରୂହ ସମସ୍ୟାଟିର ଆଶୁ ଫଇସଲା

କରିଦେବାକୁ ବ୍ୟବସାୟଚତୁର ପଣ୍ଡିତ ମିଶ୍ରଙ୍କୁ ବେଶୀ ବୋଝ ଲାଗିଲା ନାହିଁ । ଜମିହସ୍ତ ହୋଇଗଲାମାତ୍ରେ ଯୋଜନାକୃତ ଦ୍ୱିତଳ ପ୍ରାସାଦର ନିର୍ମାଣପାଇଁ ଅନ୍ୟୂନ ଏକ ବର୍ଷର ମୁଦ୍ରଣପ୍ରାପ୍ୟ ସେ ବିଶ୍ୱନାଥଙ୍କୁ ଅଗ୍ରିମ ଦେଇଦେବେ ବୋଲି ତାଙ୍କ ଗୃହରେ ପ୍ରତିଶ୍ରୁତିବଦ୍ଧ ହେଲେ ।

ଦୈବବଶତଃ କାଳଗର୍ଭରେ ଥିବା ଖଣ୍ଡିଏ ଜମି ବିକ୍ରି ହେବାର ଖବର ଅଳ୍ପ ଦିନପରେ କାନକୁ ଆସିଲା । ବିଶ୍ୱନାଥ ସଂବାଦଦାତା ଦଲାଲର ମଧ୍ୟସ୍ଥତାରେ ଜମିମାଲିକ ସହ କଥାବାର୍ତ୍ତା କରି ମୂଲ୍ୟ ସ୍ଥିର କରିଦେଲେ ଏବଂ ଆପୋସ-ନିର୍ଦ୍ଧାରିତ ସମୟସୀମାମଧ୍ୟରେ ଆବଶ୍ୟକ ଅର୍ଥ ସଂଗ୍ରହ କରି ଜମିଖଣ୍ଡି କିଣିନେଲେ । ପଣ୍ଡିତ ଆକୁଳ ଏବଂ ଆନନ୍ଦଦାୟକ ସନ୍ଦେଶ ଶୁଣି ପୂର୍ବପ୍ରତିଶ୍ରୁତ ଅର୍ଥ ଅବିଲମ୍ବେ ବିଶ୍ୱନାଥଙ୍କ ହସ୍ତରେ ଅର୍ପଣ କଲେ । ବିନା କାଳକ୍ଷେପଣରେ ବିଶ୍ୱନାଥ ନିଜ ପରିକଳ୍ପନାନୁଯାୟୀ ଗୃହନିର୍ମାଣ କାର୍ଯ୍ୟ ଆରମ୍ଭ କରାଇଦେଲେ । ପାଗାପାଇଁ ପୂର୍ବପଟରେ କିଛି ଜାଗା ଛାଡ଼ାଯାଇ ଅବଶିଷ୍ଟ ସମସ୍ତ ଜମିରେ ତଳ ମହଲାର ଗୃହାବଳି ନିର୍ମିତ ହେବାର ବ୍ୟବସ୍ଥା ହେଲା । ଉକ୍ତ କାର୍ଯ୍ୟର ମୁଣ୍ଡି ମଲାବେଳକୁ ଘରକିଆରି ପାଣ୍ଠି ମଧ୍ୟ ନିଃଶେଷ ହୋଇଗଲା । ତେଣୁ ଉପର ମହଲା ହେବାପର୍ଯ୍ୟନ୍ତ ଅପେକ୍ଷା ନ କରି ୧୯୨୭ ମସିହାରେ ବାଲୁବଜାରରୁ ପ୍ରେସ ଉଠିଆସି ଏହି ନୂତନ ଭବନରେ ଅବସ୍ଥାପିତ ହେଲା ଏବଂ ପରିବାରର ଅବସ୍ଥାନପାଇଁ ତନ୍ନିକଟ 'ଆପ୍‌ପା ଲଜ୍' ନାମକ ସୁପ୍ରସର ଦ୍ୱିତଳ ଭବନ ଭଡ଼ା ନିଆଗଲା । ବର୍ଷକତିପୟପରେ ଅର୍ଥର ଯଥାଯଥ ଆୟୋଜନ କରି ବିଶ୍ୱନାଥ ଉପର ମହଲା ନିର୍ମାଣ କରାଇଲେ । ମାତ୍ର ବାକି ରହିଥିବା କେତେକ ଆନୁଷଙ୍ଗିକ କାମ ଶେଷ ନ ହେଉଣୁ ତାଙ୍କର ଅନ୍ତିମ ସମୟ ଆସିଗଲା । ସେହି 'ଆପ୍‌ପା-ଲଜ୍'ରେ ବିଶ୍ୱନାଥ ଶେଷନିଶ୍ୱାସ ପକାଇବାର ପରବର୍ଷ ଅର୍ଥାତ୍ ୧୯୩୫ ମସିହାରେ ଉପର ମହଲାର ବାକିଆ କାମ ଶେଷ ହୋଇଯାନ୍ତେ ସମଗ୍ର ପରିବାରର ଲୋକେ ଆପ୍‌ପାଲଜ୍ ଛାଡ଼ି ସେହି ଉପରମହଲାରେ ବାସ କଲେ । ସେହି ଦିନଠାରୁ ତାହା 'ବିଶ୍ୱଧାମ' ନାମରେ ପରିଚିତ ହେଲା ।

ବିଶ୍ୱନାଥଙ୍କ ଦେହାନ୍ତପରେ ପ୍ରେସ ଓ ପରିବାର ଉଭୟର ନିୟନ୍ତ୍ରଣକର୍ତ୍ତା ହେଲେ ପିତୃଭକ୍ତ ମହାନନ୍ଦ । ତାବତୀୟ କାର୍ଯ୍ୟରେ ପିତୃପ୍ରଦର୍ଶିତ ଆଦର୍ଶମାନଙ୍କୁ ପଦେ ପଦେ ଅନୁସରଣ କରି ସେ ଅତି ଦକ୍ଷତାର ସହିତ ପ୍ରେସ ତଥା ପରିବାର ପରିଚାଳନା କଲେ ସମସ୍ତଙ୍କ ହୃଦୟରେ ବିସ୍ମୟର ଚମକ ସୃଷ୍ଟି କରି । ମାତ୍ର

'କାଳସ୍ୟ କୁଟିଳା ଗତି' ତାଙ୍କୁ ପାକଳ ବୟସପର୍ଯ୍ୟନ୍ତ ରଖାଇଦେଲା ନାହିଁ । ପିତା ମହାନନ୍ଦଧାମକୁ ଗତି କରିବା ପଛେ ପଛେ ମହାନନ୍ଦ ଅକାଳରେ ବାଟ କାଟିଲେ ସେପୁରକୁ । ସେହିଠାରୁ ସୌଭାଗ୍ୟ-ଲକ୍ଷ୍ମୀର ନାଲ ସିନ୍ଦୂରଟୋପା ଫିକାପଡ଼ିଆସିଲା । କାଳଭୈରବୀର ଫୁତ୍କାରରେ ଉଡ଼ିଗଲା ପତ୍ରିକା, ଛିଡ଼ିଗଲା ଛପାଖାନା, ବୁଡ଼ିଗଲା 'ବିଶ୍ୱଧାମ' ନାମ । ବିଶ୍ୱନାଥଙ୍କ ବିଜେସ୍ଥଳୀ ଯେଉଁ କାଳଗଳକୁ ଦିନେ ବାଣୀପୂଜକମାନେ ତୀର୍ଥକ୍ଷେତ୍ର ଜ୍ଞାନରେ ଦର୍ଶନ କରିବାକୁ ଆସୁଥିଲେ ଏବଂ ଯାହାର ପବିତ୍ର ଧୂଳିକଣାକୁ କୈବଲ୍ୟକଣିକାରୂପେ ମସ୍ତକରେ ବୋଳୁଥିଲେ, ହାୟ, ସେହି ମାନବଦେବତାଙ୍କ ଅନ୍ତର୍ଦ୍ଧାନପରିଣାମରେ ଆଜି ତାର କି ଭାଗ୍ୟବିପର୍ଯ୍ୟୟ ! ଯେଉଁ ପଥିକ ସେହି ପଥର ପୂର୍ବମାହାତ୍ମ୍ୟ ଅନୁଭବରେ ଆଣିଛି, ତାର ହୃଦୟ ଧୈର୍ଯ୍ୟ ଧରିବ କପରି ? ତେଣୁ ପ୍ରାଣପ୍ରାଚୁର୍ଯ୍ୟଚ୍ଛଳଚ୍ଛଳ ବିପୁଳଐତିହ୍ୟବନ୍ତ ସେହି ପୁଣ୍ୟ ସାରସ୍ୱତପୀଠର ଶାଶ୍ୱତ ସ୍ମୃତି ମନରେ ଜାଗରିତ ହେଲାବେଳେ ମର୍ମକାତରା ଗୋଟାଏ କରୁଣ ଦୀର୍ଘଶ୍ୱାସ ସହିତ ବାଷ୍ପ-ଜଡ଼ିତ କଣ୍ଠତଟରେ ସ୍ୱତଃ ମର୍ମରିଉଠେ :-

"ଯଦୁପତେ ! କ୍ୱ ଗତା ମଥୁରାପୁରୀ
ରଘୁପତେ ! କ୍ୱ ଗତୋତ୍ତରକୋଶଳଃ ।"



# ବଙ୍ଗୋତ୍କଳ ସାମାଜିକ ବନ୍ଧନର ସଂପ୍ରସାରଣ

ନର୍ମଦାଙ୍କ ବିବାହପରେ ବଙ୍ଗୋତ୍କଳ ବନ୍ଧୁତ୍ୱ ସଂପର୍କର ପ୍ରସାରଣ-ପ୍ରୟାସରେ ବିଶ୍ୱନାଥ ଗୋଟିଏ ବଙ୍ଗୀୟା କନ୍ୟାକୁ ପୁତ୍ରବଧୂ କରି ଆଣିବାପାଇଁ ସଂକଳ୍ପ କଲେ । ତଦନୁଯାୟୀ ୧୯୨୭ ମସିହାରେ ଆୟୁଷ୍ମତୀ ରମଳାଙ୍କ ସହିତ ମହାନନ୍ଦଙ୍କର ଶୁଭବିବାହ କଲିକତାରେ ନିଷ୍ପାଦିତ ହେଲା । ୧୯୨୭ ମଇ ୩ ତାରିଖ ଦିନ ବଧୂ ରମଳା ପୁତ୍ରସନ୍ତାନଟିଏ ପରିବାରକୁ ଉପହାର ଦେଇ ମାତୃତ୍ୱର ଆନନ୍ଦ ଅନୁଭବ କଲେ । ବିଶ୍ୱନାଥ ନବଜାତ ପୌତ୍ରଟିର ନାମକରଣ କଲେ 'ସୁନନ୍ଦ' ଏବଂ ଉପନାମ ରଖିଲେ 'ଗୋରା' । ପୂର୍ବରୁ ଲିଖିତ ହୋଇଛି ଯେ, ରାମଚନ୍ଦ୍ରଙ୍କ ସାନଭାଇ ଲକ୍ଷ୍ମଣ ବିଶ୍ୱନାଥଙ୍କ ଧର୍ମମତାନୁଗ ଥିବାରୁ ବାଲ୍ୟ-ବିବାହ କରିବାକୁ ଅନିଚ୍ଛୁକ ଥିଲେ । ତେଣୁ ବି.ଏସ୍-ସି. ଡିଗ୍ରୀ ଲାଭପରେ ସେ ବ୍ରାହ୍ମଦୀକ୍ଷା ଗ୍ରହଣ କଲେ ଏବଂ ବିଶ୍ୱନାଥ ତାଙ୍କୁ 'ସୁଲେଖା' ନାମ୍ନୀ ଗୋଟିଏ ଶିକ୍ଷିତା ବଙ୍ଗୀୟା କନ୍ୟା ସହିତ ପରିଣୟ-ସୂତ୍ରରେ ଆବଦ୍ଧ କରାଇଲେ । ମହାନନ୍ଦଙ୍କ ଅନୁଜ ପୂର୍ଣ୍ଣାନନ୍ଦ ସଂସାର-ଗଣ୍ଡିରେ ପଶି ରୁଦ୍ଧଶ୍ୱାସରେ ଧନ୍ଦ ହେବା ଅପେକ୍ଷା ନିର୍ଦ୍ୱନ୍ଦ୍ୱରେ ନିଶ୍ଚିନ୍ତରେ ଧରଣୀର ମୁକ୍ତାଙ୍ଗନରେ ସ୍ୱେଚ୍ଛାବିହାର କରିବାକୁ ଅଧିକ ସୁଖକର ମଣି ଆଜୀବନ ଅବିବାହିତ ରହିଲେ ।

ପରବର୍ତ୍ତୀ କାଳରେ ବଙ୍ଗଳା ତଥା ଓଡ଼ିଶାର ଆଧୁନିକ ରୁଚିସଂପନ୍ନ ସମାଜଗୋଷ୍ଠୀରେ ସଂସ୍କାରବାହକ ଏହି ନୂତନ ବିବାହାଦର୍ଶର ସୁଦୂରପ୍ରସାରୀ ପ୍ରଭାବ ଅନେକାଂଶରେ ସୁଫଳ ପ୍ରସବ କରିବାର ଦେଖାଗଲା । ଆଜିର ବଙ୍ଗୋତ୍କଳ ମୈତ୍ରୀ, ପ୍ରୀତି, ସଦ୍ଭାବ, ସହଯୋଗ, ସହପ୍ରାଣତା ଯେ ସେହି ସୁଫଳର କ୍ରମବର୍ଦ୍ଧିଷ୍ଣୁ ବିମଳ ପରିପ୍ରକାଶ, ଏହା ଅନୁଭବବେଦ୍ୟ ।



# ଆଦର୍ଶ ମୁଦ୍ରକ ବିଶ୍ୱନାଥ

ଉତ୍କଳସାହିତ୍ୟ ପ୍ରେସର ମୁଦ୍ରକ (Printer) ନିଜେ ଥିଲେ ବିଶ୍ୱନାଥ। ମୁଦ୍ରକହିଁ ପ୍ରେସର ମର୍ଯ୍ୟାଦାରକ୍ଷକ। ଶୁଦ୍ଧଭାଷାନଭିଜ୍ଞ ବ୍ୟକ୍ତି ମୁଦ୍ରକର ଦାୟିତ୍ୱ ନେବାପାଇଁ ଯୋଗ୍ୟ ନୁହେଁ। ସୁପ୍ରତିଷ୍ଠିତ ଏହି ମୁଦ୍ରଣାଳୟର ଅନ୍ୟାନ୍ୟ ଲକ୍ଷ୍ୟ-ମଧ୍ୟରେ ଆଦର୍ଶ ଶୁଦ୍ଧଭାଷାର ପରିବେଷଣ ଏକ ମୌଳିକ ଲକ୍ଷ୍ୟ ଥିବାରୁ ସେ ମୁଦ୍ରକର ଗୁରୁ ଦାୟିତ୍ୱ ଅନ୍ୟ କାହାରି ହାତରେ ଛାଡ଼ିଦେଇ ନ ଥିଲେ। ଏଥିପାଇଁ ପ୍ରତ୍ୟେକ ପୁସ୍ତକର ପ୍ରତି ଫର୍ମାପ୍ରୁଫ୍ (machine proof) ସ୍ୱୟଂ ବିଶ୍ୱନାଥଙ୍କଦ୍ୱାରା ଶେଷ ସ୍ତରରେ ପରୀକ୍ଷିତ ଓ ଆବଶ୍ୟକ ସ୍ଥଳରେ ନାଲି କାଳିରେ ସଂଶୋଧିତ ହୋଇ ମୁଦ୍ରଣାଦେଶ (print order) ପ୍ରଦତ୍ତ ନ ହେବା-ପର୍ଯ୍ୟନ୍ତ ପ୍ରସ୍ତୁତ ଫର୍ମା ଛାପା ହୋଇପାରୁ ନ ଥିଲା। ପୁସ୍ତକମାନଙ୍କରେ ଭାଷାଗତ ବିଶୁଦ୍ଧତା ଅକ୍ଷୁଣ୍ଣ ରଖିବାପାଇଁ ବିଶ୍ୱନାଥ ଜଣେ ଉପାଧ୍ୟାୟ ସଂସ୍କୃତଜ୍ଞ ପଣ୍ଡିତଙ୍କୁ ଓଡ଼ିଆ ଓ ସଂସ୍କୃତ ପ୍ରୁଫ୍‌ର ସଂଶୋଧକରୂପେ ବରାବର ନିଯୁକ୍ତ ଦେଇଥିଲେ। ଏତେ କଟକଣା ସତ୍ତ୍ୱେ ତାଙ୍କ ସାମୟିକ ଅନୁପସ୍ଥିତିଫଳରେ ଅନିବାର୍ଯ୍ୟ କାରଣରୁ ଯଦି କିଛି ମୁଦ୍ରିତ ହୋଇଯାଏ, ତେବେ ସେ ଫେରିବା-ମାତ୍ରେ ପୁଙ୍ଖାନୁପୁଙ୍ଖ ତାହା ଦେଖନ୍ତି। ଦୁର୍ଭାଗ୍ୟବଶତଃ ସେଥିରେ କୌଣସି ମୁଦ୍ରଣପ୍ରମାଦ ବା ବର୍ଣ୍ଣାଶୁଦ୍ଧି ପରିଲକ୍ଷିତ ହେଲେ ସଙ୍ଗେ ସଙ୍ଗେ ମୁଦ୍ରିତ କାଗଜ-ଫର୍ଦ୍ଦଗୁଡ଼ିକ ତାଙ୍କରି ଆଗରେ ପୋଡ଼ିଦିଆଯାଏ ଏବଂ ଭୁଲ୍‌ମାନ ସଂଶୋଧିତ ହେଲାପରେ ପ୍ରେସର ନିଜ ବ୍ୟୟରେ କାଗଜ କଣାଯାଇ ପୁଣି ଥରେ ଉକ୍ତ ଫର୍ମା ମୁଦ୍ରିତ ହୁଏ।

ଏପରି ଘଟନାର ରୋମାଞ୍ଚକର ଦୃଶ୍ୟ ଏହି ଲେଖକ ଏକାଧିକ ବାର ସ୍ୱଚକ୍ଷୁରେ ଦେଖିଛି। ସୁଲେଖକ ବାଙ୍କନିଧି ପଟ୍ଟନାୟକଙ୍କ 'ସାହସୀ' ପ୍ରବେଶିକା

ପରୀକ୍ଷାର ପାଠ୍ୟପୁସ୍ତକରୂପେ ନିର୍ବାଚିତ ହୋଇଥିବାରୁ ତିନି ହଜାର ଖଣ୍ଡ ପୁନର୍ମୁଦ୍ରିତ ହେଉଥାଏ । ୧୯୨୯ ମସିହାର ଏକ ରବିବାରର କଥା । ମଧୁସୂଦନ ରାଓଙ୍କ ଲୋକାନ୍ତରପରଠାରୁ ବିଶ୍ୱନାଥଙ୍କୁ କଟକ ବ୍ରାହ୍ମସମାଜର ଆଚାର୍ଯ୍ୟ ପଦରେ ଅଭିଷିକ୍ତ କରାଯାଇଥିବାରୁ ସେ ପ୍ରତି ରବିବାର ଦିନ ସମାଜକୁ ଯାଇ ସାପ୍ତାହିକ ଉପାସନା କରନ୍ତି । ଯେତେ ବଡ଼ ପ୍ରିୟ ବ୍ୟକ୍ତି ହେଉ ପଛକେ କାହାରି ସାଧ ନ ଥିଲା, ତାଙ୍କର ରବିବାସରୀୟ ଉପାସନା ବନ୍ଦ କରାଇ ତାଙ୍କୁ ଅନ୍ୟ କୌଣସି ଜାଗତିକ କାର୍ଯ୍ୟରେ ପ୍ରବୃତ୍ତ କରାଇପାରିବ । ବର୍ଣ୍ଣିତ ରବିବାର ଦିନ ବିଶ୍ୱନାଥ ଅପରାହ୍ଣରେ ବ୍ରାହ୍ମସମାଜକୁ ଚାଲିଯାଇଥିବା ସମୟରେ । 'ସାବିତ୍ରୀ'ର ଗୋଟିଏ ଫର୍ମାର ଛପାକାର୍ଯ୍ୟ ପ୍ରେସସମୟମଧ୍ୟରେ ଶେଷ କରିବା ନିତାନ୍ତ ଆବଶ୍ୟକ ହେଲା । ମାନେଜର କୁଳମଣି କର ନିଜେ ମେସିନ୍‌ପ୍ରୁଫ୍‌ଟିକୁ ଏକାନ୍ତ ଏକାଗ୍ରତାର ସହିତ ତନ୍ନତନ୍ନଭାବରେ ତିନି ଚାରି ଥର ଆମୂଳାନ୍ତ ପଢ଼ି ମୁଦ୍ରଣ ଆରମ୍ଭ କରାଇଦେଲେ । ବିଶ୍ୱନାଥଙ୍କର ସେଦିନ ଫେରିବାରେ ଅପେକ୍ଷାକୃତ ବିଳମ୍ବ ଘଟିଲା । ସେ ପ୍ରେସରେ ପାଦ ପକାଇବାମାତ୍ରେ ମେସିନ୍‌ର ଘର୍ଘର ଶବ୍ଦ ଶୁଣି ସେଠାକୁ ଗଲେ । ସେତେବେଳକୁ ତିନି ହଜାର ଛପା ଶେଷ ହେବାଉପରେ । ତହିଁରୁ ଫର୍ମଟିଏ ଟାଣିଆଣି ପଢ଼ନ୍ତେ ଯୋଡ଼ିଏ ଭୁଲ୍ ଆଖିରେ ପଡ଼ିଲା । ସଙ୍ଗେ ସଙ୍ଗେ ତିନି ରିମ୍ କାଗଜ ବଜାରରୁ କିଣାହୋଇ ଆସିଲା ଏବଂ ଛପିଲାବାଲାଙ୍କୁ ଅଟକାଇରଖି ଅଶୁଦ୍ଧି-ନିରାକରଣପରେ ଆଉ ଥରେ ଛପିବାକୁ ଆଦେଶ ଦିଆଗଲା । ପୂର୍ବମୁଦ୍ରିତ ତିନି ରିମ୍ କାଗଜ ଅଗଣାରେ ଗଦେଇ ତହିଁରେ ଅଗ୍ନି ସଂଯୋଗ କରାଗଲା । ସମସ୍ତ କାଗଜ ପୋଡ଼ି ଭସ୍ମୀଭୂତ ହେବାପର୍ଯ୍ୟନ୍ତ ବିଶ୍ୱନାଥ ସେଠାରେ ଠିଆହୋଇ ରହିଥିଲେ । ପରିତାପର ବିଷୟ, ତାଙ୍କର ଏହି ମୁଦ୍ରଣ-ଆଦର୍ଶର କାଣିଚାଏ ହେଲେ କଟକର କୌଣସି ଗୋଟାଏ ପ୍ରେସ ନିଷ୍ଠାପରତାର ସହିତ ଏପର୍ଯ୍ୟନ୍ତ ଅନୁକରଣ କରିପାରିଲା ନାହିଁ । ଫଳରେ ଆଜିକାଲିକାର ମୁଦ୍ରିତ ଗ୍ରନ୍ଥମାନ ସହସ୍ର ମୁଦ୍ରଣଦୋଷ ଅଙ୍ଗରେ ବହନ କରି ଅଶୁଦ୍ଧି-ରତ୍ନାକରରେ ପରିଣତ ହେଉଛି । ମୁଦ୍ରଣକଳାରେ ଏବେ ରୁଚିବୋଧ ଦେଖା ଦେଇଛି ସତ, ମାତ୍ର ଶୁଚିବୋଧର ତଣ୍ଟି ଚପିଦିଆଯାଇଛି । ରୁଚିବୋଧ ବହିରଙ୍ଗର ପରିବର୍ତ୍ତମାନ ଆବରଣ; ଶୁଚିବୋଧ କିନ୍ତୁ ଅନ୍ତରଙ୍ଗର ଶାଶ୍ୱତ ସୁନ୍ଦର ଆଭରଣ ।



# 'ଅସହଯୋଗ'ରେ ଅ-ସହଯୋଗ

କେତେକେ କହନ୍ତି, ଅଖଣ୍ଡ ବଙ୍ଗର ବହୁ ଲବ୍ଧପ୍ରତିଷ୍ଠ ମନୀଷାଧାରୀ, ଲେଖନୀଧର ଓ ମସ୍ତିଷ୍କବନ୍ତ ବ୍ୟକ୍ତି ବ୍ରାହ୍ମଧର୍ମସଂପ୍ରଦାୟର ଅନ୍ତର୍ଭୁକ୍ତ ଥିବାରୁ ସେମାନଙ୍କ ପ୍ରଭାବରେ ସାହିତ୍ୟ, ରାଜନୀତି, ସମାଜନୀତି ଆଦି ବିଭିନ୍ନ କ୍ଷେତ୍ର ଜାତୀୟ ଉଦ୍ଦୀପନାର ରଙ୍ଗଭୂମିରେ ପରିଣତ ହୋଇଥିଲା । ତାହାର ଫଳରେ ସ୍ୱାଧୀନତା-ବିପ୍ଳବର ରକ୍ତ ମଶାଲ ପ୍ରଥମେ ଜଳିଉଠିଥିଲା ଏହି ବଙ୍ଗମାଟିରେ, ମାତୃପୂଜାର ଯଜ୍ଞବେଦୀରେ ପ୍ରଥମ ରକ୍ତ-ଆହୁତି ଦେଇଥିଲା ଏହି ବଙ୍ଗଭୂମି । ସେମାନଙ୍କ ମତରେ, ପରାଧୀନତାର ଲୌହକବାଟ ଭାଙ୍ଗିବାପାଇଁ କୋଟି ଜନତାକୁ ଜାଗ୍ରତ୍, ପ୍ରସ୍ତୁତ ଓ ଅଗ୍ରଗାମୀମୁଖ କରାଇବା ଦିଗରେ ଏବଂ ସ୍ୱାଧୀନତାଲାଭ ତଥା ସ୍ୱାଧୀନତାରକ୍ଷାପାଇଁ ଉପଯୁକ୍ତ କରାଇବାରେ ଏହି ବ୍ରାହ୍ମଧର୍ମର ପ୍ରଭାବ ପରୋକ୍ଷ-ଭାବରେ ମନ୍ତ୍ରବତ୍ କାର୍ଯ୍ୟ କରିଥିଲା । ସେସମୟରେ ଶାସନକ୍ଷେତ୍ରରେ ତଥା ସମାଜସ୍ତରରେ ସୁପ୍ରତିଷ୍ଠ ଥିବା ଜାତୀୟତାବାଦୀ ନେତୃସ୍ଥାନୀୟ ବ୍ରାହ୍ମମାନେ ବିଶ୍ୱାସ କରୁଥିଲେ, ଭାରତୀୟମାନେ ବ୍ରିଟିଶ ସରକାର ସହିତ ସହଯୋଗପୂର୍ବରେ ଶାସକୀୟ ବ୍ୟୁତ୍ପନ୍ନତା ଓ ଶାସନଦକ୍ଷତାର ପରିପକ୍ୱ ଜ୍ଞାନ ଆୟତ୍ତ କରିପାରିଲେ ସ୍ୱାଧୀନତା-ଅର୍ଜନ ସହଜସାଧ୍ୟ ଓ ସୁଖଭୋଗ୍ୟ ହେବ । ପୂର୍ବାହ୍ଣ-ଜୀବନର ଯୌବନଚଞ୍ଚଳ ଉଦଗ୍ର ଉଦ୍ଦୀପନାଉପରେ ସେତେବେଳକୁ ମଧ୍ୟାହ୍ନୋତ୍ତର ଛାୟା ପଡ଼ିଆସୁଥିବାରୁ ଦେଶପ୍ରିୟ ବିଶ୍ୱନାଥଙ୍କର ଅନୁଭବସିଦ୍ଧ ବିଶ୍ୱାସ ମଧ୍ୟ ସେମାନଙ୍କ ବିଶ୍ୱାସର ଅନୁରୂପ ହୋଇଯାଇଥିଲା । ତେଣୁ ଭାରତବ୍ୟାପୀ 'ଅସହଯୋଗ' ଆନ୍ଦୋଳନକୁ ଜାତୀୟଲକ୍ଷ୍ୟ-ହାସଲର ଆଶୁ ପନ୍ଥା ବୋଲି ଆଖି ବୁଜି ଗ୍ରହଣ କରିନେବା ତାଙ୍କ ପକ୍ଷରେ କୌଣସିମତେ ସମ୍ଭବ ହୋଇପାରିଲା ନାହିଁ । ଉକ୍ତ ଆନ୍ଦୋଳନକୁ ପ୍ରକାଶ୍ୟ ବିରୋଧ କରିବା ହେତୁ ତାଙ୍କଉପରେ ତୀବ୍ର ସମାଲୋଚନାର ଶର

ବର୍ଷାନବେ

ବର୍ଷଣ କରାଯାଇଥିଲା; କିନ୍ତୁ ସେ ନିଜ ନୀତିରେ ଶେଷପର୍ଯ୍ୟନ୍ତ ହିମାଚଳପ୍ରାୟ ଅଟଳ ରହିଲେ । ନୀତିବିବୁଧ ଭର୍ତ୍ତୃହରିଙ୍କ ‘ନିନ୍ଦନ୍ତୁ ନୀତିନିପୁଣାଃ ଯଦି ବା ସ୍ତୁବନ୍ତୁ········ନ୍ୟାଯ୍ୟାତ୍ ପଥଃ ପ୍ରବିଚଳନ୍ତି ପଦଂ ନ ଧୀରାଃ’ର ଆକ୍ଷରିକ ପ୍ରତିଫଳନ ତାଙ୍କ ଛଡ଼ା ଆଉ କାହାରି ଜୀବନରେ ଏତେ ବେଶୀ, ଘଟିଥିବାର ଶୁଣା ନାହିଁ ।

ଦୀର୍ଘ ସତେଇଶ ବର୍ଷବ୍ୟାପୀ ମୁକ୍ତି-ସଂଗ୍ରାମର ଅଶାନ୍ତ ଘନଘଟାପରେ ଭାରତମାତାଙ୍କର ବାଆଁ ଡାହାଣ ଦୁଇ ହାତରୁ ଖଣ୍ଡେ ଖଣ୍ଡେ କାଟିଦେଇ ଯେଉଁ ଖଣ୍ଡିତାବୟବା ସ୍ୱାଧୀନତା-ଲକ୍ଷ୍ମୀ ଭାରତବାସୀଙ୍କୁ ଉପହାର ଦିଆଗଲା ଏବଂ ତତ୍ ସଙ୍ଗେ ସଙ୍ଗେ ଲକ୍ଷ୍ମୀଙ୍କ ଚିରଭଗାରୁଣୀ ଖଣ୍ଡିଆଗୁଞ୍ଜୁଣିହସ୍ତା କଳିତୁଣ୍ଡୀ ଅଲକ୍ଷ୍ମୀଙ୍କୁ ଜୀବନ୍ୟାସ ମନ୍ତ୍ରରେ ଆବିର୍ଭୂତା କରାଗଲା, ତାହାର କୁପରିଣାମରୁ ଭାରତ ଏପର୍ଯ୍ୟନ୍ତ ପୂର୍ଣ୍ଣମୁକ୍ତି ପାଇ ନାହିଁ କି ଆମ ରାଷ୍ଟ୍ରନାୟକମାନେ କଳ୍ପିତ ରାମ-ରାଜ୍ୟର ଚିତ୍ରକୁ ଆଖିଆଗରେ ଥାପି ଦେଶଗଠନରେ ନିଜକୁ ପୂର୍ଣ୍ଣପ୍ରାଣରେ ନିୟୋଜିତ କରିବାପାଇଁ ପ୍ରକୃଷ୍ଟ ଅବସର ପାଇ ନାହାନ୍ତି । ଲୋକସାଧାରଣ ସ୍ୱାଧୀନ ହୋଇ ମଧ୍ୟ ସ୍ୱାଧୀନତାର ପ୍ରକୃତ ସୁଖ ଓ ଆନନ୍ଦ ଏଅବଧି ଭୋଗ କରିପାରି ନାହାନ୍ତି । ସ୍ୱାଧୀନତାର ଏହି ଅସ୍ୱସ୍ଥ ପରିସ୍ଥିତିର ପରିପ୍ରେକ୍ଷିତରେ ଚିନ୍ତା କଲେ ଦେଶମୁକ୍ତିକାମୀ ବିଶ୍ୱନାଥଙ୍କର ସହଯୋଗ ନୀତି, କିଞ୍ଚିତ୍ ବିଳମ୍ବରେ ହେଉ ପଛେ, ଏ ଦିଗରେ ସୁଫଳପ୍ରସୂ ହୋଇଥାନ୍ତା ବୋଲି ବିଚାରିବା ଅର୍ବାଚୀନ ନୁହେଁ । ଏହା ମଧ୍ୟ ବିଚାରିବା ଅସଙ୍ଗତ ନୁହେଁ ଯେ, ଏଥିମଧ୍ୟରେ କେବଳ ଭାରତ ଅଖଣ୍ଡିତ କଳେବରରେ ସ୍ୱାଧୀନତା ପାଇସାରିଥାନ୍ତା ଏବଂ ତହିଁ ସଙ୍ଗେ ସଙ୍ଗେ ଦେଶଗଠନ କାର୍ଯ୍ୟ ତ୍ୱରିତ ଆରମ୍ଭ ହୋଇଯିବାଫଳରେ ଦେଶବାସୀ ସ୍ୱାଧୀନତାର ପରିପୂର୍ଣ୍ଣ ଶାନ୍ତି ଓ ସ୍ୱସ୍ତି ନିର୍ଦ୍ୱନ୍ଦ୍ୱରେ ଉପଭୋଗ କରିପାରିଥାନ୍ତେ ।



ତେସ୍ପାନବେ

# ଉପାଧି ପ୍ରତ୍ୟାଖ୍ୟାନ

ସତ୍ୟର୍ଷି ବିଶ୍ୱନାଥ ଥିଲେ ପରମ ଈଶ୍ୱରନିଷ୍ଠ, ଶୁଦ୍ଧସାତ୍ତ୍ୱିକଚିତ୍ତ ଓ ନିଷ୍କାମକର୍ମୀ । ଫଳାକାଂକ୍ଷାରହିତ କର୍ମହିଁ ନିଷ୍କାମ କର୍ମ । ଚିତ୍ତଶୁଦ୍ଧି ଆସିଗଲେ ଅନ୍ତରମଧ୍ୟରେ ଯେଉଁ ସ୍ୱତଃସ୍ଫୂର୍ତ୍ତ କର୍ମପ୍ରେରଣାର ପ୍ରତିଧ୍ୱନି ଉଠେ, ତାହାହିଁ ଭଗବତ୍‌ପ୍ରେରଣା । ବିଶ୍ୱନାଥ ଯେତେବେଳେ ଏପ୍ରକାର ପ୍ରେରଣା ପାଉଥିଲେ, ତଦନୁକ୍ରମେ କର୍ମର ପ୍ରେରକ ଅନ୍ତର୍ଯ୍ୟାମୀଙ୍କଠାରେ କର୍ମର ଫଳ ସମର୍ପଣ କରିସାରିଲାପରେ କର୍ମାରମ୍ଭ କରୁଥିଲେ । ମଣିଷର ମନରେ ଶୁଦ୍ଧ ସାତ୍ତ୍ୱିକତାର ଉଦୟ ହେଲେ ତାର କର୍ମାଭିମାନ ଉଭେଇଯାଏ । କର୍ତ୍ତବ୍ୟ କର୍ମର ନିଷ୍କାମଭାବରେ ସଂପାଦନହିଁ ଭଗବତ୍‌କର୍ମ ଏବଂ ତାହାହିଁ ଭଗବତ୍-ଉପାସନା । ଉପାଧି ପ୍ରତ୍ୟାଖ୍ୟାନର ମୂଳରେ ବିଶ୍ୱନାଥଙ୍କର ଏହି ମାନସିକ ସାତ୍ତ୍ୱିକତା ଓ ନିଷ୍କାମ ଭାବହିଁ ବିଦ୍ୟମାନ ଥିଲା ।

ବ୍ରିଟିଶ ଗଭର୍ଣ୍ଣମେଣ୍ଟ ବାଗ୍ମୀ ବିଶ୍ୱନାଥଙ୍କର ଅନବଚ୍ଛିନ୍ନ ଜନମଙ୍ଗଳ କାର୍ଯ୍ୟର ସ୍ୱୀକୃତିରୂପେ ୧୯୩୧ ମସିହାରେ ତାଙ୍କୁ ସମ୍ମାନସୂଚକ 'ରାୟସାହେବ' ଉପାଧିରେ ଭୂଷିତ କରିଥିଲେ । ବିଶ୍ୱନାଥ ଜୀବନରେ କେବେହେଲେ ଉପାଧି-ବ୍ୟାଧିର ଦୁଃସ୍ୱପ୍ନ ଦେଖି ନ ଥିଲେ କିଂବା କର୍ତ୍ତବ୍ୟବୋଧରେ କୃତ ସ୍ୱୀୟ କାର୍ଯ୍ୟାବଳୀପାଇଁ କାହାରିଠାରୁ କୌଣସି ପୁରସ୍କାର ବା ପ୍ରଶଂସାପ୍ରଶସ୍ତିର ପ୍ରତ୍ୟାଶା ରଖି ନ ଥିଲେ । ତାଙ୍କର ସମସ୍ତ କାର୍ଯ୍ୟ କେବଳ ସେହି ପରମପିତାଙ୍କ ପ୍ରୀତି-ସଂପାଦନପାଇଁ ଅଭିପ୍ରେତ । ତେଣୁ ଏହି ମର୍ମରେ ସେ ଗଭର୍ଣ୍ଣମେଣ୍ଟଙ୍କୁ ଜଣାଇ ଦୁଃଖର ସହିତ ଉକ୍ତ ଉପାଧିକୁ ପ୍ରତ୍ୟର୍ପଣ କରିଦେଇଥିଲେ । ତ୍ୟାଗପୂତ ଏଭଳି ମହାନ୍ ଦୃଷ୍ଟାନ୍ତ ଦେଶର ତତ୍କାଳୀନ ପରିସ୍ଥିତିରେ ଥିଲା ଅତି ବିରଳ ।

ତୃଜ୍ଞନଦ୍ୱେ

# ସଂସ୍କାରର ସଂଜ୍ଞା

ପୂର୍ବଜନ୍ମାର୍ଜିତ ସଂସ୍କାର-ପ୍ରବୃତ୍ତି ସଂସ୍କାରକ ବିଶ୍ୱନାଥଙ୍କର ଏ ଜନ୍ମର ସହଜାତ ସଂପତ୍ତି ହୋଇଥିଲା ପରି ମନେ ହୁଏ । ତାହା ନ ହୋଇଥିଲେ ବିକୃତ ଲୋକାଚାର ଓ କଳୁଷିତ ଧର୍ମାଚାରର ପାଖେ ପାଖେ ଦୁର୍ନୀତି ଦୁରାଚାରର ବୀଭତ୍ସ ତାଣ୍ଡବ ଦେଖି ତାଙ୍କର ଅପରିଣତ ତରୁଣ ମନ ଏତେଚଞ୍ଚଳ ଉତ୍‌କ୍ଷିପ୍ତ ଓ ବିଦ୍ରୋହୀ ହୋଇଉଠି ନ ଥାନ୍ତା । ଲୋକଙ୍କ ଭିତରେ ଯେତେ ପୁରୁଣା ଚଳଣି, ମାନ୍ଧାତାଆ ଢଙ୍ଗ, ଧାରଣା ପୁରୁଷରୁ ପୁରୁଷ ଗଡ଼ିଆସିଛି, ସବୁଗୁଡ଼ାକ ଅନ୍ଧବିଶ୍ୱାସ ବା କୁସଂସ୍କାର (superstition) ବୋଲି ଆଖି ବୁଜି ଉଡ଼ାଇଦେବା ବିଶ୍ୱନାଥଙ୍କ 'ସଂସ୍କାର' ଶବ୍ଦର ସଂଜ୍ଞା ନ ଥିଲା । ଖୁବ୍ ବିଜ୍ଞତାର ସହିତ ସେଗୁଡ଼ିକୁ ଗୋଟି ଗୋଟି ପରୀକ୍ଷା କରି ସେଥିମଧ୍ୟରୁ ଯେଉଁତକ ନିରର୍ଥ ଅନ୍ଧାନୁସରଣ ବୋଲି ଧରା ପଡ଼ିବ, ତାହାକୁ କୁସଂସ୍କାରରୂପେ ବର୍ଜନ କରିବାକୁ ହେବ ଏବଂ ଯେଉଁ-ଗୁଡ଼ିକର ମୂଳରେ କିଛି-ନା-କିଛି ସତ୍ୟ ବା ଯଥାର୍ଥତା ରହିଛି ବୋଲି ଜଣାଯିବ, ସେଗୁଡ଼ିକୁ ନିଃସଂଶୟରେ ପୂର୍ବପରି ଗ୍ରହଣ କରିବାକୁ ହେବ—ଏହାହିଁ ଥିଲା ସାମାଜିକ ସଂସ୍କାରରେ ବିଶ୍ୱନାଥଙ୍କର ମୂଳମନ୍ତ୍ର । ଦେଖାଯାଇଛି, କେତେକ ପୁରୁଣା ବିଶ୍ୱାସକୁ ସେ ନିଜେ ବିଶ୍ୱାସ କରୁଥିଲେ ଏବଂ ଦ୍ୱିଧାହୀନ ଚିତ୍ତରେ ସେଗୁଡ଼ିକ ମଧ୍ୟ କର୍ମଜୀବନର ଯଥାସ୍ଥଳରେ ପ୍ରୟୋଗ କରୁଥିଲେ । କୁସଂସ୍କାର ଦୂରୀକରଣ ଓ ନବ ସଂସ୍କାରର ପ୍ରବର୍ତ୍ତନ ଦିଗରେ 'ଉତ୍କଳସାହିତ୍ୟ' ଥିଲା ତାଙ୍କର ଏକ ପ୍ରଧାନ ମାଧ୍ୟମ । ନନ୍ଦକିଶୋରଙ୍କର 'ଓଡ଼ିଆ ଲଳନା' ବ୍ୟଙ୍ଗ-କବିତା, ଗୋପାଳଚନ୍ଦ୍ରଙ୍କର ଧାରାବାହିକ 'ଦୁନିଆର ହାଲଚାଲ', 'ଭାଗବତ ଟୁଙ୍ଗୀରେ ସନ୍ଧ୍ୟା' ଓ ଏହିପରି ଆଉ କେତେକ ଲେଖକଙ୍କ ରଚନା 'ଉତ୍କଳ-ସାହିତ୍ୟ'ରେ ପ୍ରକାଶିତ ହୋଇ ଓଡ଼ିଶାରେ ଯେଉଁ ଚମକ ସୃଷ୍ଟି କରିଦେଇଥିଲା, ତାହା ତତ୍କାଳୀନ ସମାଜ-ଇତିହାସର ଏକ ଅନନୁଭୂତପୂର୍ବ ଅଭିନବ ଉପଯୋଗ୍ୟ ସାମଗ୍ରୀ ।



ପଞ୍ଚାନବେ

# ନିରାକାର ଓ ସାକାର ତତ୍ତ୍ୱ

ବ୍ରହ୍ମୋପାସକ ବିଶ୍ୱନାଥଙ୍କର ଧର୍ମଦୃଷ୍ଟି ଥିଲା ଅତି ଉଦାର ଓ ବ୍ୟାପକ । ତହିଁରେ ସଂକୀର୍ଣ୍ଣ ସାଂପ୍ରଦାୟିକତାର ଲେଶମାତ୍ର ସ୍ପର୍ଶ ନ ଥିଲା । ତେଣୁ ସବୁ ଧର୍ମର ଦର୍ଶନପ୍ରତି ତାଙ୍କର ଥିଲା ସମଦର୍ଶନ, ସମସମ୍ମାନ । ଯେଉଁମାନେ ବିଶ୍ୱନାଥଙ୍କର ନିବିଡ଼ ସଂପର୍କରେ ଆସିଛନ୍ତି, ତାଙ୍କର ଜୀବନଦର୍ଶନ ଅନୁଧ୍ୟାନ କରିବାକୁ ଚେଷ୍ଟା କରିଛନ୍ତି, ସେମାନଙ୍କ ପକ୍ଷରେ ନିରାକାର ଉପାସନା ଓ ସାକାର ଉପାସନାର ପ୍ରକୃତ ତାତ୍ପର୍ଯ୍ୟ ଉପଲବ୍ଧି କରିବା ସହଜତର ହୋଇପାରିଛି । ସୁନ୍ଦର-ଶିବ-ସତ୍ୟ-ସନାତନ ବ୍ରହ୍ମ ଜଳ-ସ୍ଥଳ, ଆକାଶ-ପାତାଳ, ସ୍ଥାବର-ଜଙ୍ଗମ, ସବୁର ସ୍ରଷ୍ଟା । ତାଙ୍କର ଅକ୍ଷୟ-ଅବ୍ୟୟ ଶାଶ୍ୱତ ନିରାକାର ସତ୍ତା ଅଣୁ-ପରମାଣୁ-ଠାରୁ ଆରମ୍ଭ କରି ଜ୍ୟୋତିର୍ମଣ୍ଡଳପର୍ଯ୍ୟନ୍ତ ସର୍ବତ୍ର ଅପ୍ରକଟରୂପେ ସୁପ୍ରକଟ । ସେହି ଅଣୋରଣୀୟାନ୍ ମହତୋମହୀୟାନ୍ ଭୂୟୋଭୂୟିଷ୍ଠ ଅବାଙ୍ମନସଗୋଚର ଅନାଦି-ଅନନ୍ତ ବ୍ରହ୍ମଙ୍କର ଉପାସନା ଓ ସେବାହିଁ ବିଶ୍ୱମାନବର ଶ୍ରେଷ୍ଠ ଧର୍ମ । ଏହି ବେଦଧର୍ମରେ ନିଜକୁ ସଂପୂର୍ଣ୍ଣ ଉତ୍ସର୍ଗ କରିଦେଇପାରିଲେ ମନୁଷ୍ୟ ମର୍ତ୍ତ-ଲୋକରେ ଥାଇ ମଧ୍ୟ ଦିବ୍ୟଜୀବନ ଲାଭ କରିପାରିବ ଓ ଭୂମାନନ୍ଦର ଅମୃତ-ଆସ୍ୱାଦ ପାଇପାରିବ । ସେତେବେଳେ ସେ ତାର ଜ୍ଞାନଚକ୍ଷୁରେ ସ୍ପଷ୍ଟ ଦେଖିବାକୁ ପାଇବ—ପରିଦୃଶ୍ୟମାନ ଚରାଚର ବିଶ୍ୱବ୍ରହ୍ମାଣ୍ଡର ରନ୍ଧ୍ରେ ରନ୍ଧ୍ରେ ସେହି ସର୍ବବ୍ୟାପୀ ପରମେଶ୍ୱରଙ୍କର ଅଣାକାର ରୂପ, ପୁଣି ସେହି ଅଣାକାର ରୂପ-ମଧ୍ୟରେ ଚରାଚର ବିଶ୍ୱବ୍ରହ୍ମାଣ୍ଡର ସଂଖ୍ୟାତୀତ ଯେତେ ଯାହା ସବୁ (God in all and all in God) ।

ବେଦରେ ସେହି ସର୍ବବ୍ୟାପୀ ବ୍ରହ୍ମଙ୍କ ବା ପରମାତ୍ମାଙ୍କ ଛଡ଼ା କୁତ୍ରାପି ସ୍ୱତନ୍ତ୍ର ଦେବଦେବୀ ନାମର ଉଲ୍ଲେଖ ନାହିଁ—କେବଳ 'ଏକମେବା ଦ୍ୱିତୀୟଂ'

ଛତ୍ୟାନବେ

## ନିରାକାର ଓ ସାକାର ତତ୍ତ୍ୱ

ଏକ ଓ ଅଭିନ୍ନ ସେହି ନିରାକାର ବ୍ରହ୍ମଙ୍କୁ ବିଭିନ୍ନ ସ୍ଥଳରେ ବିଭିନ୍ନ ନାମରେ ଓ ବିଭିନ୍ନ ରୂପରେ ସଂବୋଧନ କରାଯାଇଛି । ପରବର୍ତ୍ତୀ କାଳର ଲୋକେ ବେଦତତ୍ତ୍ୱର ଏହି ନିଗୂଢ଼ ରହସ୍ୟ ବୁଝି ନ ପାରି ସେହି ସେହି ନାମରେ ଓ ସେହି ସେହି ରୂପରେ ଭିନ୍ନ ଭିନ୍ନ ଦେବଦେବୀ-ମୂର୍ତ୍ତିର କଳ୍ପନା କରି ସେମାନଙ୍କ ତୃପ୍ତିପାଇଁ ବିବିଧ ପୂଜାବିଧି ପ୍ରଣୟନ କଲେ । ସେହି ଦିନୁ ସାକାର ପୂଜାର ସୃଷ୍ଟି ହେଲା । ଏଣୁ, ନିରାକାର ତତ୍ତ୍ୱରେ ଯାହାର ପରମ ବିଶ୍ୱାସ ଆସିଯିବ, ତା ପାଖରେ କ୍ରିୟାକାଣ୍ଡବହୁଳ ପୌତ୍ତଳିକ ସାକାର ଧର୍ମର ଆଉ ପ୍ରୟୋଜନ ରହିବ ନାହିଁ । କିନ୍ତୁ ଏହାର ଅର୍ଥ ନୁହେଁ ଯେ, ହିନ୍ଦୁ ଦେବଦେବୀମୂର୍ତ୍ତିର ସାତ୍ତ୍ୱିକ ପୂଜା ଏକାବେଳକେ ଅନାବଶ୍ୟକ ବା ନିରର୍ଥକ; କାରଣ—

"ଆକାଶାତ୍ ପତିତଂ ତୋୟଂ
ଯଥା ଗଚ୍ଛତି ସାଗରମ୍
ସର୍ବଦେବ-ନମସ୍କାରଃ
କେଶବଂପ୍ରତି ଗଚ୍ଛତି ।"

ଆକାଶରୁ ଯେତେ ଜଳ ବୃଷ୍ଟି ଆକାରରେ ବିଭିନ୍ନ ସ୍ଥାନରେ ପତିତ ହୁଏ, ସେସମସ୍ତ ପରିଶେଷରେ ସମୁଦ୍ରରେ ଯାଇ ପହଞ୍ଚିଲା ପରି ଯିଏ ଯେଉଁ ଭାବରେ ଯେଉଁ ଦେବତାଙ୍କୁ ଅନ୍ତର ଭରି ଭକ୍ତିପୂତ ପ୍ରଣତି ନିବେଦନ କରୁ ପଛକେ, ତାହା ସର୍ବଶେଷରେ କେଶବ(ବ୍ରହ୍ମ)ଙ୍କ ପଦାରବିନ୍ଦରେ ପହଞ୍ଚିବହିଁ ପହଞ୍ଚିବ ।

ମାତ୍ର ମୂର୍ତ୍ତିପୂଜକ ବା ସାକାର-ଉପାସକମାନଙ୍କର ସର୍ବାଦୌ ଜାଣିରଖିବା ଆବଶ୍ୟକ ଯେ, ମୃଣ୍ମୟମୂର୍ତ୍ତି ବା ପାଷାଣମୂର୍ତ୍ତି ଅଥବା ପିତ୍ତଳାଦି ଧାତୁମୂର୍ତ୍ତି ପ୍ରକୃତ ଚିନ୍ମୟମୂର୍ତ୍ତି ଅର୍ଥାତ୍ ଭଗବାନ୍ ନୁହନ୍ତି—ପୂଜକର ବିକ୍ଷୁବ୍ଧ ଚଞ୍ଚଳ ମନରେ ସ୍ଥିରତା ଓ ଏକାଗ୍ରତା ଆଣିବାପାଇଁ ସେହି ସେହି ମୂର୍ତ୍ତିରେ ବିଶ୍ୱବ୍ୟାପୀ ଭଗବାନ୍ଙ୍କର ଚିନ୍ମୟ ଆବିର୍ଭାବ ଆରୋପିତ କରାଯାଇଥାଏ ମାତ୍ର । ଯେଉଁ ପୂଜକ ଏହି ଗୂଢ଼ ମହାଭାବଟିକୁ ଅନ୍ତରରେ ସଦା ଜାଗ୍ରତ୍ ରଖି ନ ପାରେ, ତାର ତଥାକଥିତ ସାକାର-ଉପାସନା ନିର୍ଜୀବ-ନିଷ୍ପ୍ରାଣ ମାଟି, ପଥର ବା ପିତଳ ପୂଜାର ଏକ ବିଡ଼ମ୍ବନାମୟ ନିଷ୍ଫଳତାରେ ପର୍ଯ୍ୟବସିତ ହୁଏ—ସେଥିରେ ପ୍ରାଣର ଆବେଦନ କିଂବା ପ୍ରଣତି ନିବେଦନର କୌଣସି ଅର୍ଥ ରହେ ନାହିଁ ।

● ● ●

ସନ୍ତାନଙ୍କେ

# ଜୀବନ-ପଞ୍ଜୀର ଶେଷ ପୃଷ୍ଠା

ଏଣିକି ଜରାକ୍ରାନ୍ତ ଶରୀରରେ ସ୍ନାୟୁଦୌର୍ବଲ୍ୟର ଉପକ୍ରମ ହେଲା ସତ, ତାହା କିନ୍ତୁ ବିଶ୍ୱନାଥଙ୍କର ନିରଳସ ଦୈନନ୍ଦିନ କର୍ମଧାରା ଓ ସ୍ୱଭାବସୁଲଭ ଉତ୍ସାହରେ ଅଣୁମାତ୍ର ଅଥର୍ବତାର ସଞ୍ଚାର କରାଇପାରିଲା ନାହିଁ; ବରଂ ନିୟମିତ ସଂସାରଜୀବନରେ ତାଙ୍କୁ ଏକ ବୀତଶୋକ ସନ୍ନ୍ୟାସୀର ଶାନ୍ତିସୁଧା ପ୍ରଦାନ କଲା । ଜୀବଦ୍ଦଶାର ଅନ୍ତିମ ଧାରରେ ପହଞ୍ଚିବାପର୍ଯ୍ୟନ୍ତ ତାଙ୍କର ଉପାସନା ଦିନେ ସୁଦ୍ଧା ବାଧାପ୍ରାପ୍ତ ହୋଇ ନାହିଁ । ପ୍ରକୃତରେ ତାଙ୍କ ପରି ଏତେ ଶୁଦ୍ଧଚିତ୍ତ, ନିଷ୍ଠାପର ଓ ନିୟମିତ ଉପାସନାନିରତ ପାଳକ କରୁଥିବା ବ୍ୟକ୍ତି ପ୍ରାୟ କେହି ନ ଥିଲେ । ବ୍ରାହ୍ମଗୋଷ୍ଠୀର କେହି କେହି ଅତି ଦରଦୀ ଭାଷାରେ ମୃଦୁ ଗୁଞ୍ଜନ କରିଥାନ୍ତି "ପେଟପୂଜାପାଇଁ ଉଞ୍ଛବୃତ୍ତି କରିବାକୁ ତ ଦିନ ଅଣ୍ଟୁ ନାହିଁ, ଉପାସନା-ଆରାଧନାଦି ସତ୍କାର୍ଯ୍ୟପାଇଁ ଅବସର କାହିଁ ?" ଏଭଳି ମୂଢ଼ ଆତ୍ମପ୍ରତାରଣାର ଦୁର୍ବଳତାକୁ ବ୍ରାହ୍ମସମାଜୀଙ୍କ ମନରୁ ନିକାଳିବା ଉଦ୍ଦେଶ୍ୟରେ ବିଶ୍ୱନାଥ କହିଥାନ୍ତି, "ଗୃହସଂସାରର ଆବଶ୍ୟକତାନୁଯାୟୀ ସଂସାରୀ ମଣିଷକୁ କେତେକ ଅବଶ୍ୟ-କରଣୀୟ ମାମୁଲି କାର୍ଯ୍ୟ ଯେ କରିବାକୁ ପଡ଼ିବ, ଏହା ସ୍ୱାଭାବିକ । ଦୁଃଖର କଥା, ମଣିଷ ତା ଜୀବନର ଅସଲ କାର୍ଯ୍ୟକୁ ଭୁଲିଯିବାଦ୍ୱାରା କେବଳ ସେହି ମାମୁଲି କାର୍ଯ୍ୟରେ ଅତିମାତ୍ରାରେ ମସ୍ତ ରହି ନିଜ ହାତରେ ଥିବା ମୂଲ୍ୟବାନ୍ ସମୟର ବହୁ ଅଂଶ ଅଯଥା ଅପଚୟ କରିଦେଉଛି ଏବଂ ବୁଦ୍ଧିପ୍ରାଖର୍ଯ୍ୟର ଅଭାବରୁ ନିଜେ ସମୟାଭାବ ସୃଷ୍ଟି କରି ସେଥିପାଇଁ ଅରଣ୍ୟରୋଦନ କରୁଛି । କିନ୍ତୁ ସଚ୍ଚିନ୍ତା ଓ ସାତ୍ତ୍ୱିକ ମନନପାଇଁ ଯେଉଁ ସଂସାରୀର ଅନ୍ତରରେ ଆତୁରତା ଓ ଏକନିଷ୍ଠତାର ଆବେଗ ରହିଥାଏ, ପାରିବାରିକ ଜଞ୍ଜାଳଜନିତ କାର୍ଯ୍ୟ-ବ୍ୟସ୍ତତା ତା ଆଗରେ କେବେହେଲେ ଅନ୍ତରାୟରୂପେ ଦେଖାଦିଏ ନାହିଁ । ବସ୍ତୁତଃ,

ଯେଉଁ ସଚେତନ ବ୍ୟକ୍ତିକୁ ସବୁଠୁଁ ବେଶୀ ଧନ୍ଦ ହେବାକୁ ହୁଏ, ତାର ପାଖରେହିଁ ଯାତ ହୁଏ ନଜେ ଅବସର । ସମସ୍ତାଙ୍କବ ସେଠି ପରାଜତ ହୁଏ କିଂବା ଉପୂରେ ପଛଘୁଞ୍ଚା ଦିଏ । ଏଣୁ ସାର କଥା ହେଲା, ମାନସର କୁନ୍ଥନ ଖୋଇକୁ ହଟାଇଦେଲେ ସଚିନ୍ତା ଓ ସାତ୍ତ୍ୱିକ ମନନର ମନ୍ଥନପାଇଁ ବଳେବଳେ ଅବସର ଆସିଯିବ ଏବଂ ତା ପଛେ ପଛେ ଉପାସନା-ଆରାଧନାଦି ସତ୍‌କାର୍ଯ୍ୟପାଇଁ ସଂକଳ୍ପର ମୂଳଦୁଆ ପଡ଼ିଯିବ । ତେଣିକି ଆଲୋକରାଜ୍ୟର ତୋରଣଦ୍ୱାରକୁ ପଡ଼ିଥିବା ରାସ୍ତାକୁ ଦରାଣ୍ଡି ଦରାଣ୍ଡି ଠାବ କରିବା ସହଜତର ହେବ । ଏହାହିଁ ମଣିଷର ଧେୟ, ଜୀବନର କାମ୍ୟ ଓ ଜନ୍ମର ଲକ୍ଷ୍ୟ ।”

ପ୍ରତ୍ୟହ ବିଶ୍ୱନାଥଙ୍କର ପ୍ରଥମ ବ୍ରହ୍ମ-ଉପାସନା ଆରମ୍ଭ ହୁଏ ବ୍ରାହ୍ମ ମୁହୂର୍ତ୍ତରେ—ଠିକ୍ ଶଯ୍ୟାତ୍ୟାଗ ପୂର୍ବରୁ । ସ୍ନାନାଦି ନିତ୍ୟକର୍ମ ସମାପନାନ୍ତେ ପ୍ରାତଃକାଳୀନ ଦ୍ୱିତୀୟ ଉପାସନା—ପରିବାରର ସମସ୍ତଙ୍କ ଗହଣରେ ଏହା ତାଙ୍କର ପାରିବାରିକ ଉପାସନା । ତୃତୀୟ ଓ ଚତୁର୍ଥ ଉପାସନା ଯଥାକ୍ରମେ ମଧ୍ୟାହ୍ନଭୋଜନପୂର୍ବରୁ ଓ ନୈଶଭୋଜନପୂର୍ବରୁ । ରାତିରେ ଶଯ୍ୟାଗ୍ରହଣପୂର୍ବରୁ ପଞ୍ଚମ ଉପାସନାହିଁ ଦିବସର ଶେଷ ଉପାସନା । ଏହାଛଡ଼ା ବ୍ରାହ୍ମସମାଜରେ ସପ୍ତାହ ଶେଷ ପ୍ରତି ରବିବାରରେ ସାପ୍ତାହିକ ଉପାସନା ଓ ବିଶେଷ ବିଶେଷ ଉପଲକ୍ଷରେ ସ୍ୱତନ୍ତ୍ର ଉପାସନା ବର୍ଷସାରା ତାଙ୍କ କର୍ତ୍ତବ୍ୟସୂଚୀର ଅଙ୍ଗୀଭୂତ ହୋଇଥାଏ ।

ସଂଯତ ପାନାହାର, ସ୍ୱାଭାବିକ ସଦାପ୍ରଫୁଲ୍ଲତା ଓ ଅଭ୍ୟାସଗତ ଆଳସ୍ୟ-ହୀନତା ବାର୍ଦ୍ଧକ୍ୟରେ ସୁଦ୍ଧା ବିଶ୍ୱନାଥଙ୍କ ଶରୀରକୁ ବ୍ୟାଧିବିମୁକ୍ତ ରଖିପାରିଥିଲା । କିନ୍ତୁ ବାର୍ଦ୍ଧକ୍ୟ ନିଜେହିଁ ଯେ ସବୁଠାରୁ ବଡ଼ ବ୍ୟାଧି ଓ ତାର ମାରାତ୍ମକତା ଯେ ଅପ୍ରତିକାର୍ଯ୍ୟ, ଅପ୍ରତିରୋଧ୍ୟ, ଏ କଥାଟି ଭୁଲିପିବାର ନୁହେଁ । ୧୯୩୪ ମସିହା ଅଗଷ୍ଟରେ ବିଶ୍ୱନାଥ କେବେ-ଦେଖା-ନ-ଥିବା ଗୋଟାଏ କ ପ୍ରକାର ପୀଡ଼ା ଉଦରରେ ଅନୁଭବ କଲେ । ଚିକିତ୍ସକମାନଙ୍କ ନିର୍ଦ୍ଦେଶାନୁଯାୟୀ ତାଙ୍କୁ ସମସ୍ତ କାର୍ଯ୍ୟ ବାତିଲ କରି ଶଯ୍ୟାରେ ପୂର୍ଣ୍ଣ ବିଶ୍ରାମ ନେବାକୁ ପଡ଼ିଲା । ଏଭଳି ଦଣ୍ଡଭୋଗ ତାଙ୍କ ଜୀବନରେ ଏଇ ପ୍ରଥମ ଓ ଏଇ ଶେଷ । ସେ ବିଛଣାରେ ଶୋଇରହି ନିତ୍ୟନୈମିତ୍ତିକ ଉପାସନା କରିବାକୁ ବାଧ୍ୟ ହେଲେ । ପାରିବାରିକ ଉପାସନା ଓ ସାପ୍ତାହିକ ଉପାସନା ପୂରା ବନ୍ଦ ହୋଇଗଲା । ଆତ୍ମୀୟସ୍ୱଜନ ଓ ତାଙ୍କୁ ଦେଖିବାକୁ ଆସୁଥିବା ପ୍ରିୟଜନମାନଙ୍କ ସହିତ ଆଳାପ-ଆଲୋଚନା ଏବଂ ବିବିଧ ଜ୍ଞାନଗ୍ରନ୍ଥ ଓ ପତ୍ରପତ୍ରିକା ପାଠ ଛଡ଼ା ଏହି ଶଯ୍ୟାଶାୟୀ ଅବସ୍ଥାରେ

ସମସ୍ତକ୍ଷେପଣର ଅନ୍ୟ କୌଣସି ସୁଖକର ଘଟଣା ରହିଲା ନାହିଁ । କର୍ମସ୍ଥାନଜାତ ଜନିତ ଘୋର ଅସ୍ୱସ୍ତିରେ ପ୍ରାୟ ଦୁଇ ମାସ କଟାଇଲାପରେ ଚିକିତ୍ସକମାନଙ୍କଠାରୁ କୌଣସିମତେ ଅନୁମତି ଆଦାୟ କରି ବିଶ୍ୱନାଥ ଶଯ୍ୟା ଛାଡ଼ି ବାହାରେ ଚଳପ୍ରଚଳ ହେଲେ ଏବଂ ପ୍ରତ୍ୟହ କିଛି କିଛି କାର୍ଯ୍ୟ କରି ଯଥେଷ୍ଟ ମାନସିକ ସ୍ୱାଚ୍ଛନ୍ଦ୍ୟ ପାଇଲେ । ନର୍ମଦାଙ୍କ ଜନ୍ମଦିନ ଅକ୍ଟୋବର ୧୨ ତାରିଖରେ ସେ ଅତ୍ୟନ୍ତ ଆନନ୍ଦରେ ସହିତ ଜନ୍ମଦିବସୀୟ ଉପାସନା କଲେ । ପରିବାରର ସମସ୍ତଙ୍କୁ ଘେନି ତାହାହିଁ ତାଙ୍କର ସର୍ବଶେଷ ଉପାସନା ।

ସ୍ୱେଚ୍ଛାକୃତ ରୋଗଶଯ୍ୟାତ୍ୟାଗର କେତୋଟିମାତ୍ର ଦିବସପରେ ଏସବୁ ନିଷେଧ କାର୍ଯ୍ୟର ବିଷମ ଫଳ ଘଟିଲା । ଅକ୍ଟୋବର ୧୭ ତାରିଖ ଦଶହରା ନବମୀ ରାତିରେ ବିଶ୍ୱନାଥଙ୍କର ସୁନିଦ୍ରା ହେଲା ନାହିଁ । ୧୮ ତାରିଖ ବିଜୟା-ଦଶମୀ ସକାଳେ କ୍ଲାନ୍ତି ଅନୁଭୂତ ହେବା ସଙ୍ଗେ ସଙ୍ଗେ ସର୍ବାଙ୍ଗରୁ ପ୍ରଚୁର ସ୍ୱେଦ ନିର୍ଗତ ହେବାକୁ ଲାଗିଲା । ବଡ଼ କ୍ରୂର ବଡ଼ ଅବିଶ୍ୱାସୀ କାଳ ଯେ ଏଥର ଆଚମ୍ବିତେ ଆସି ହାବୁଡ଼ିଯିବ, ଏହାହିଁ ତାର ସତର୍କଘଣ୍ଟି ବୋଲି ପୋଖତା ଲୋକେ ଜାଣିପାରିଲେ । ଅଭିଜ୍ଞ ଡାକ୍ତରମାନେ ଶେଷ ଚିକିତ୍ସା ଆରମ୍ଭ କରିଦେଲେ; କିନ୍ତୁ ସେମାନଙ୍କୁ ଉପହାସ କରି ରୋଗ କ୍ରମଶଃ ବଢ଼ିବାରେ ଲାଗିଲା । ଦିନ ତିନିଟା ବେଳେ ହଠାତ୍ ହୃତ୍‌ପିଣ୍ଡରେ ପ୍ରବଳ ବେଦନା ହେଲା, ପରେ ପରେ ନାଡ଼ି କ୍ଷୀଣ ହୋଇଆସିଲା । ଅସହ୍ୟ ଯନ୍ତ୍ରଣାରେ ବିଶ୍ୱନାଥ ଅସ୍ତବ୍ୟସ୍ତ ହେବାକୁ ଲାଗିଲେ । ଡାକ୍ତରମାନଙ୍କର ଶତଚେଷ୍ଟା ସତ୍ତ୍ୱେ ଯନ୍ତ୍ରଣାର ମୁହୂର୍ତ୍ତେ ଉପଶମ ହେଲା ନାହିଁ । ବେଳକୁ ବେଳ ଅବସ୍ଥା ଗୁରୁତର ସାଂଘାତିକ ହେଲା । ସନ୍ଧ୍ୟାପରେ ସେ ସଂପୂର୍ଣ୍ଣ ସଂଜ୍ଞାଶୂନ୍ୟ ହୋଇପଡ଼ିଲେ । ସାରା ରାତି ସେହିପରି ସଂଜ୍ଞାହୀନ ରହି ପରମପିତା ପରମେଶ୍ୱରଙ୍କର ଅମୃତସନ୍ତାନ ବିଶ୍ୱନାଥ ବିକସିତ ଜୀବନ-ପଦ୍ମର ସୌରଭ ଓ ଗୌରବରେ ଉତ୍କଳଖଣ୍ଡକୁ ମହିମିତ କରି ୧୯ ତାରିଖ ଭୋର ସାଢ଼େ ପାଞ୍ଚଟାର ବ୍ରାହ୍ମମୁହୂର୍ତ୍ତରେ ଚରମକାମ୍ୟ ସେହି ବିଶ୍ୱପତିଙ୍କ ଆଲୋକମୟ ଶାନ୍ତିଧାମକୁ ହସି ହସି ବାହୁଡ଼ିଗଲେ । ସତୁରି ଅଙ୍କବିଶିଷ୍ଟ ମହାନାଟକଟିର ଏହିରୂପେ ଶେଷ ଯବନିକାପାତ ହେଲା । ପବିତ୍ର ବିଜୟାଦଶମୀର ନିଶାନ୍ତ ପ୍ରତ୍ୟୁଷଟି ବିଜୟୋତ୍ସବର ଏହି ମହାନ୍ ଜୀବନର ପ୍ରୟାଣ-ସ୍ମାରକୀରୂପେ ଉତ୍କଳ-ସାହିତ୍ୟପଞ୍ଜିକାରେ ବର୍ଷକୁ ବର୍ଷ ଉଦ୍‌ଘୋଷିତ ହୋଇଆସୁଛି ଏବଂ ଏହିପରି ହେଉଥିବ ଚିରଦିନ ।

ଶହେ

# ଜୀବନ-ପଞ୍ଜୀର ଶେଷ ପୃଷ୍ଠା

ମହାମନା ବିଶ୍ୱନାଥଙ୍କ ଜୀବନାନ୍ତ ବାର୍ତ୍ତା ସୂର୍ଯ୍ୟୋଦୟ ସଙ୍ଗେ ସଙ୍ଗେ ସାରା ସହରକୁ ଶୋକର କଳଙ୍କ ଛାଇରେ ଢାଙ୍କିପକାଇଲା । ଶତ ଶତ ନରନାରୀ ଦାରୁଣ ଆଘାତ ପାଇ ଆପ୍ଟା ଲଜ୍‌କୁ ଧାଇଁଲେ ପୁଷ୍ପଶଯ୍ୟାସ୍ଥିତ ପୂଜ୍ୟବରଙ୍କ ଶେଷଦର୍ଶନପାଇଁ । ବେଳୁ ବେଳ ସେମାନଙ୍କ ସଂଖ୍ୟା ପ୍ରବଳଭାବରେ ବଢ଼ିବାକୁ ଲଗିଲା । ବିରାଟ ଶୋଭାଯାତ୍ରା ସହ ଶବଯାନ ବାହିତ ହେଲା କାଠଯୋଡ଼ି-ତଟର 'ସତୀଚଉରା' ଶ୍ମଶାନକ୍ଷେତ୍ରକୁ । ସେଠାରେ ଗଣନାତୀତ ଜନତା ଆତୁର ନୟନରେ ଅପେକ୍ଷା କରି ରହିଥିଲେ ଶେଷ ପୁଷ୍ପମାଲ୍ୟ ଅର୍ପଣ କରିବାଲାଗି । ଶବ-ଶୋଭାଯାତ୍ରା ପହଞ୍ଚିଗଲାମାତ୍ରେ କାଠଯୋଡ଼ି-ସୈକତରେ ଜନସମୁଦ୍ରର ଲହରୀ ଉଚ୍ଛ୍ୱଳ ହୋଇଗଲା । ସ୍ୱର୍ଗତ ସୂରିଙ୍କ ମର ଶରୀରରେ ଅଗ୍ନିସଂଯୋଗ ହେଲାବେଳେ ପ୍ରତ୍ୟେକଙ୍କ ଚକ୍ଷୁ ଗୋଟିଏ ଗୋଟିଏ ଅଶ୍ରୁନିର୍ଝରର ଆକାର ଧାରଣ କଲା । ଏହାହିଁ ଜନଜନାର୍ଦ୍ଦନ-ସେବାର ବିଜୟତିଳକଧାରୀ ବିଶ୍ୱନାଥଙ୍କ ଗୌରବିତ ଜୀବନର ସମୁଜ୍ଜ୍ୱଳ ପ୍ରତୀକ । ଏବେ ମଧ୍ୟ ତାର ସଜଳ ସ୍ମୃତି ହୃଦୟେ ହୃଦୟେ ଜାଗରୂକ ।

ହସ-କାନ୍ଦ, ସୁଖ-ଦୁଃଖ, ହର୍ଷ-ବିଷାଦ, ମିଳନ-ବିଚ୍ଛେଦ, ଜନ୍ମ-ମରଣର ଏ ଦୁନିଆ ବିଶ୍ୱନିୟନ୍ତାଙ୍କର ଏକ ବିଚିତ୍ର ସୃଷ୍ଟି । ଏହି ପରସ୍ପରବିରୋଧୀ ତତ୍ତ୍ୱଗୁଡ଼ିକ ପରସ୍ପରର ପାଖେ ପାଖେ ରହି ସ୍ରଷ୍ଟାଙ୍କ ସୃଜନବୈଚିତ୍ର୍ୟର ମାହାତ୍ମ୍ୟକୁହିଁ ଉଦ୍‌ଘୋଷ କରୁଛି । କାଠଯୋଡ଼ି ବନ୍ଧର ଅଦୂର ପୂର୍ବାଂଶର ପୁରୀଘାଟରେ ଚାଲିଛି ମେଢ଼ଭସାଣ ମଉଚ୍ଛବର ଉନ୍ମାଦ ଲୀଳା—ଏଣେ ପଶ୍ଚିମାଂଶର ସତୀ-ଚଉରାରେ ଭସ୍ମରୂପେ ଆସ୍ତରିତ ହେଉଛି ମହାଜୀବନର ଖେଳା । ହର୍ଷ-ପୁଲକର ଉଲ୍ଲୋଳ କଲ୍ଲୋଳରେ ସ୍ଫୀତ ହୋଇଉଠିଛି ସେଠାର ବିସ୍ତୃତ ବେଳା—ବିଷାଦ-ମଳିନ ସବୁରି ମୁଖରେ ଭାସୁଛି ଏଠି କଳା ବଉଦର ଭେଳା । ସବୁ ବିପରୀତ ହେଲେହେଁ ପାଖେ ପାଖେ ଦୃଷ୍ଟିଗତ—ଠିକ୍ ଯେପରି ତାସପତାର ଏ ପିଠି ଓ ସେ ପିଠି କିଂବା ହାତର ପଏଂଠ ଓ ପାପୁଲି ।

ବ୍ରାହ୍ମଧର୍ମର ବିଧାନ ଅନୁଯାୟୀ ଦଶାହରେ ଆଦ୍ୟ ଶ୍ରାଦ୍ଧକ୍ରିୟା ଅନୁଷ୍ଠିତ ହେଲା । ଆପ୍ଟା ଲଜ୍‌ର ସୁପ୍ରସର ପରିସରମଧ୍ୟରେ—ସେଦିନଟି ଅକ୍ଟୋବର ୨୮ ତାରିଖ । ସେହି ବୈଦିକ ଅନୁଷ୍ଠାନରେ ସ୍ୱର୍ଗତ ଆତ୍ମାର ତୃପ୍ତି ଓ ଶାନ୍ତି କାମନା କରି ଆତ୍ମୀୟସ୍ୱଜନ, ସ୍ନେହୀ ବନ୍ଧୁ ଓ ନିମନ୍ତ୍ରିତ ମାନ୍ୟଗଣ୍ୟ ବ୍ୟକ୍ତିଗଣ ତାଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ ଏବଂ ତାହା ସଙ୍ଗେ ସଙ୍ଗେ ପ୍ରାର୍ଥନା

ସଭାରେ ଯୋଗ ଦେଇଥିଲେ । ପୁରୋଧା ଆନୁଷଙ୍ଗିକ ବେଦମନ୍ତ୍ରାଦି ପାଠ କରି ତାହାର ତାତ୍ପର୍ଯ୍ୟ ବୁଝାଇଦେଇଥିଲେ ଏବଂ ସମବେତ ଜନମଣ୍ଡଳମଧ୍ୟରୁ କେତେକ ଅନୁଗତ ଓ ଗୁଣମୁଗ୍ଧ ବ୍ୟକ୍ତି ବିଶ୍ୱନାଥଙ୍କର ଗୁଣାବଳି କୀର୍ତ୍ତନ କରିଥିଲେ । ପୁଣି କେତେକ ମହିଳା ମିଳିତ କଣ୍ଠରେ ପ୍ରାର୍ଥନା ସଂଗୀତ ଗାନ କରିଥିଲେ । ଏହି ଲେଖକରଚିତ ନିମ୍ନପ୍ରଦତ୍ତ କ୍ଷୁଦ୍ର କବିତାଟି ମଧ୍ୟ ସେହି ଅମରାତ୍ମାଙ୍କ ଉଦ୍ଦେଶ୍ୟରେ ଆବୃତ୍ତି କରାଯାଇଥିଲା :

## ଶ୍ରାଦ୍ଧସ୍ମୃତି

ନଶ୍ୱର ଏ ବିଶ୍ୱପଥେ ନିଃସ୍ୱତାର ନିର୍ମମ ନିଶ୍ୱାସେ
ଅନନ୍ତ-ଆବେଗଭରେ ଝୁଲିଥିଲ ଅମୃତ ବିଶ୍ୱାସେ ।
ଯୋଗଜନ୍ମା ଯୁଗଯୋଗି ! ହେ ବ୍ରହ୍ମଜ୍ଞ ଅନୃତ-ବିଦ୍ୱେଷି !
ସାଧନାର ସତ୍ୟପୀଠେ ଆଲୋକର ପଙ୍କଜ ନିବେଶି
ଘନଘୋର ଅନ୍ଧକାରେ ଜାଳିଥିଲେ ଜ୍ଞାନର ବର୍ତ୍ତିକା
ମେଘମନ୍ଦ୍ର ମନ୍ତ୍ର ତବ ଶୁଣିଥିଲା ମୂକ ଏ ମୃତ୍ତିକା ।
ପଙ୍କୁ ଜନତାର ଅଙ୍କୁ ଫିଙ୍ଗି ଦୂରେ ଶୀରୁତା-ନିର୍ମୋକ
ଦେଇଗଲ ଶ୍ରେଷ୍ଠ ବର୍ମ ନିଷ୍କଳଙ୍କ ନିର୍ଭୟ ନିଃଶୋକ ।
ଆଚରିଲ ମୃତ୍ୟୁଞ୍ଜୟି ! ଆମରଣ ଅସିଧାରା ବ୍ରତ
ପ୍ରଲୋଭନ-ମାୟାଜାଲେ ତିଳେ ହେଲେ ନୋହିଲ ବିବ୍ରତ ।
ବିପୁଳ ଜୀବନେ ତବ ଊର୍ଜସ୍ୱଳ ବିପ୍ଳବ - ପାବକ
ନିଷ୍ପ୍ରଭିଲେ ତେଜେ ଯାର ଧ୍ୱଜାଧାରୀ ଭଣ୍ଡ ଧର୍ମବକ ।
କହ ଦେବ ଦିବ୍ୟଦର୍ଶୀ ! ସାର୍ଦ୍ଧକୋଟି- ହୃଦୟ - ବିହାରି !
ସତେ କି ଏ ପଶୁରାଜ୍ୟ ଦିବ୍ୟ ଦୃଷ୍ଟି ନୋହିବ କାହାରି ?

[୧୯୩୪ 'ଉତ୍କଳସାହିତ୍ୟ' କାର୍ତ୍ତିକ ସଂଖ୍ୟାରେ ପ୍ରକାଶିତ]

ପ୍ରାର୍ଥନାସଭାର କାର୍ଯ୍ୟ ସରିଲାପରେ ଉପସ୍ଥିତ ସମସ୍ତ ଆଗନ୍ତୁକଙ୍କୁ ଜଗନ୍ନାଥ ମହାପ୍ରଭୁଙ୍କ ମହାପ୍ରସାଦ-ସେବାରେ ଆପ୍ୟାୟିତ କରାଯାଇଥିଲା । ଏହି ପଙ୍କ୍ତିସେବନ ସଭାର ବ୍ୟବସ୍ଥା ହୋଇଥିଲା ଦୁଇଟି ଭିନ୍ନ ଭିନ୍ନ ସ୍ଥାନରେ— ଗୋଟିଏ ସ୍ଥାନ ନିର୍ଦ୍ଦିଷ୍ଟ କରାହୋଇଥିଲା କେବଳ ସ୍ତ୍ରୀଲୋକଙ୍କପାଇଁ ଏବଂ ଅନ୍ୟଟି

କେବଳ ପୁରୁଷଲୋକଙ୍କପାଇଁ, କାରଣ ସଂସ୍କାରକ ବିଶ୍ୱନାଥ- ନିତ୍ୟ ନୂତନ ଓ ନବ୍ୟ ଧାରାର ପ୍ରବର୍ତ୍ତକ ହେଲେହେଁ ସାମାଜିକ ଶୃଙ୍ଖଳାଉପରେ କୁପ୍ରଭାବ ପଡ଼ିବା ଆଶଙ୍କାରେ ସ୍ତ୍ରୀ-ପୁରୁଷମାନଙ୍କ ଅବାଧ ଏକପଙ୍‌କ୍ତିଭୋଜର ସ୍ୱେଚ୍ଛାଚାରିତାକୁ ଆଦୌ ପ୍ରଶ୍ରୟ ଦେଉ ନ ଥିଲେ । ଏ ପ୍ରସଙ୍ଗରେ ଆଉ ଗୋଟିଏ କଥା କହିବାର ଅଛି । ପୂର୍ବକାଳର ଗ୍ରାମ୍ୟ ସମାଜରେ ନ୍ୟାସୁନମିତ୍ତିବ ଉପଲକ୍ଷରେ ଯେଉଁ ଭୋଜନ-ସଭା ବା ଭୋଜିସଭା ହେଉଥିଲା, ସେଥିରେ ସ୍ତ୍ରୀଲୋକମାନଙ୍କର ଯୋଗଦାନ ନିଷିଦ୍ଧ ଥିଲା । 'ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତା' ମାନ୍ତିବାକ୍ୟକୁ ସେକ୍ଷେତ୍ରରେ ଅବଜ୍ଞା କରାଯାଉଥିଲା । ଅଗ୍ରପୂଜ୍ୟା ନାରୀଜାତିପ୍ରତି ଏ ଅବହେଳା ବିଶ୍ୱନାଥଙ୍କ ପକ୍ଷରେ ଅସହ୍ୟ ହୋଇଥିଲା । ସେ ସ୍ୱଗ୍ରାମର ଯେକୌଣସି ଆନନ୍ଦ-ଉତ୍ସବରେ ମହିଳା ଓ ଯୁବତୀ ବାଳିକାମାନଙ୍କ ସଂଯତ ପ୍ରବେଶକୁ ଅଗ୍ରାଧିକାର ଦେବାର ମାନ୍ତି ପ୍ରବର୍ତ୍ତନ କରିଥିଲେ । ତା ଫଳରେ ମୂଳବସନ୍ତର ନ୍ୟାସୁନମିତ୍ତିବ ଉତ୍ସବରେ ପ୍ରଥମେ, 'ମାଇପିସଭା' ଓ ତତ୍ପରେ 'ଯିଣିପିସଭା' ବସିବାର ମାନ୍ତିଗତ ପଦ୍ଧତି ପ୍ରବର୍ତ୍ତିଥିଲା । ଘରେ ଘରେ ସେହି ପ୍ରୀତିପ୍ରଦ ପଦ୍ଧତିଟି ସମଗ୍ର ଗ୍ରାମାଞ୍ଚଳରେ ଅନୁସୃତ ହୋଇଥିଲା ଏବଂ ପରବର୍ତ୍ତୀ କାଳରେ ତାହାହିଁ ସର୍ବଜନାଦୃତ ପ୍ରଥାରୂପେ ସାରା ଓଡ଼ିଶାରେ ପ୍ରଚଳିତ ହେଲା ।

ପୁଣି ଅନ୍ୟ ଏକ ସ୍ଥାନରେ କାଙ୍ଗାଳିଭୋଜନର ସ୍ୱତନ୍ତ୍ର ବ୍ୟବସ୍ଥା ହୋଇ-ଥିଲା । ଯେତେ ଦୁଃଖୀ, ଭୋକୀ, ଭିକାରି, ଅନାଥ, ଅନ୍ନକଷ୍ଟ ଖାଦ୍ୟାହାର ଆଶାରେ ଆସିଲେ, ସମସ୍ତଙ୍କୁ ଜାତିବର୍ଣ୍ଣଧର୍ମନିର୍ବିଶେଷରେ ଓ ତଥାକଥିତ ସ୍ପୃଶ୍ୟାସ୍ପୃଶ୍ୟ-ଭେଦର ବିନା ବିଚାରରେ ଏକ ପଙ୍‌କ୍ତିରେ ବସାଇ ପୂର୍ଣ୍ଣଗ୍ରାସ ମହାପ୍ରସାଦ ଦେବାପାଇଁ ପରିବେଷକମାନେ ସୂର୍ଯ୍ୟାସ୍ତପର୍ଯ୍ୟନ୍ତ ସଦାପ୍ରସ୍ତୁତ ହୋଇ ରହିଥିଲେ; କାରଣ ଏଭଳି ନିରନ୍ନ ବୁଭୁକ୍ଷୁଙ୍କୁ ଅନ୍ନଦାନ କରିବାଲାଗି ଦୟାଶୀଳା ଜାନକୀ କି ନ୍ୟାସୁନମିତ୍ତ କି ପର୍ବପର୍ବାଣି ସବୁ ଦିନେ ଯଥୁଷ୍ଟ ପ୍ରସ୍ତୁତ ଥିଲେ ଏବଂ ମତିମାନ୍ ବିଶ୍ୱନାଥ ହୃଦୟବତୀ ପତ୍ନୀଙ୍କର ଏତାଦୃଶ ସଂବେଦନଶୀଳତାକୁ ପୂର୍ଣ୍ଣପ୍ରାଣରେ ପ୍ରୋତ୍ସାହିତ କରୁଥିଲେ ।



# ଶେଷ ବାଣୀ

ଗତିଶୀଳ ନବ୍ୟସାହିତ୍ୟର ଯୁଗସ୍ରଷ୍ଟା, ନୂତନତମ ଗଦ୍ୟଶୈଳୀର ପ୍ରାଣପ୍ରତିଷ୍ଠାତା ବିଶ୍ୱନାଥଙ୍କ ଅନ୍ତିମ ବାଣୀର କରୁଣ ଆବେଦନଟି ଏଠାରେ ଉଲ୍ଲେଖ ନ କରି ରହିହେଉ ନାହିଁ । ଅକ୍ଟୋବର ୧୭ ତାରିଖ ସନ୍ଧ୍ୟା ପ୍ରାୟ ସାତଟା । ଶଯ୍ୟାରେ ଅଙ୍ଗ ଢାଳି ବିଶ୍ରମିଥିବା ଅବସ୍ଥାରେ ସେ 'ଉତ୍କଳସାହିତ୍ୟ'ର ନିକଟ-ପ୍ରକାଶିତ ସଂଖ୍ୟାଟିକୁ ଉପାଧାନତଳୁ ଧୀରେ କାଢ଼ିଆଣିଲେ ଏବଂ ବକ୍ଷରେ ରଖି ତା ଉପରେ କିପ୍ରୁ ଉତ୍କଣ୍ଠିତ ଦୃଷ୍ଟି ନିଡ଼ାଇରଖିଲେ । ସେତେବେଳେ ତାଙ୍କ ନୟନକୋଣରୁ କେତୋଟି ଅଶ୍ରୁବିନ୍ଦୁ ଖସିଆସିଲା । ଏହା ଦେଖି ଉପସ୍ଥିତ ପୁତ୍ରକନ୍ୟାଦି ଆତଙ୍କିତ ହୋଇଉଠିଲେ । ସେହି ସମୟରେ ବିଶ୍ୱନାଥଙ୍କ ଉଜ୍ଜ୍ୱଳ ଲୋଚନଦ୍ୱୟଟି କ୍ଷଣକପାଇଁ ଊର୍ଦ୍ଧ୍ୱକୁ ବିସ୍ଫାରିତ ହୋଇ ପୁଣି ବକ୍ଷଃସ୍ଥାପିତ ପତ୍ରିକାଟିଉପରେ ଆସି ନିବଦ୍ଧ ହେଲା । ପିତୃଭକ୍ତ ମହାନନ୍ଦ ଶଙ୍କି ଶଙ୍କି ନମ୍ର-ସ୍ୱରରେ କହିଲେ, "ବାବା, 'ସାହିତ୍ୟ' କଥା ଭାବୁଚ ? ଆଗ ଭଲ ହୋଇସାର, ତାପରେ ଭାବିଲେ ହେବ ନାହିଁ ?"

ଆଲୋକପଥଯାତ୍ରୀ ବକ୍ଷୋନ୍ୟସ୍ତ ପତ୍ରିକାଟିଉପରେ କରତଳ ଥାପି ଅପେକ୍ଷାକୃତ ଦୁର୍ବଳସ୍ୱରରେ ଉତ୍ତର ଦେଲେ, "ଭାବିବାକୁ ବେଳ ଆଉ କାହିଁ ? ଏଇ ତ ଶେଷ ଅବସର ! 'ସାହିତ୍ୟ', 'ସାହିତ୍ୟ ପ୍ରେସ' ମୋର ସର୍ବାଧିକ ପ୍ରିୟ । ମୋ ଆଖିରେ ଦିଓଟିଯାକ ଏକ ଓ ଅଭିନ୍ନ । ଏହାରି ଭିତରେ ମୋ ଜୀବନର ସତ୍ତା, ମୋର ଅସ୍ତିତ୍ୱ—ଏ ଥିଲେ ମୁଁ ଅଛି, ଏ ନ ଥିଲେ ମୁଁ ନାହିଁ । ମୋ ଅନ୍ତେ ଏହା ଯଦି ବଞ୍ଚିରହେ, ତାହାହେଲେ ମୋର ସେହି ଅଶରୀରୀ ବଞ୍ଚିବାହିଁ ପ୍ରକୃତରେ ହେବ ମୃତ୍ୟୁହୀନ ।"

ଶତଦ୍ରୁହିର

## ଶେଷ ବାଣୀ

ପିତୃପ୍ରତିମ ବିଶ୍ୱନାଥଙ୍କ ଜରୁରୀ ଡାକରାରେ ମୁଁ (ଏହି ଲେଖକ) ଠିକ୍ ଏଥିପୂର୍ବରୁ ଆସି ଶଯ୍ୟାପାର୍ଶ୍ୱରେ ଉପସ୍ଥିତ ରହିଥିଲି । 'ଉତ୍କଳସାହିତ୍ୟ' ଓ 'ଉତ୍କଳସାହିତ୍ୟ ପ୍ରେସ'ର ଭବିଷ୍ୟତ ସ୍ଥାୟିତ୍ୱନିମନ୍ତେ ତାଙ୍କ ପ୍ରାଣରେ ଏଭଳି ବ୍ୟାକୁଳତା ଦେଖି ଆମ୍ଭେମାନେ ନିଶ୍ଚିତ ସୂଚନା ପାଇଗଲୁଁ ଯେ, ପୁଣ୍ୟାତ୍ମାଙ୍କର ଅନ୍ତିମ ମୁହୂର୍ତ୍ତ ଅତି ଆସନ୍ନ । ସନ୍ତ୍ରସ୍ତ ମହାନନ୍ଦ ବାଷ୍ପିଳ କଣ୍ଠରେ କହିଲେ, "ବା-ବା, ମୋର ତ ସାହିତ୍ୟ ସଂବନ୍ଧରେ ଅଣୁମାତ୍ର ଧାରଣା ନାହିଁ, 'ଉତ୍କଳ-ସାହିତ୍ୟ' କିପରି ଚଳାଇବି ? ସଂପାଦକର କାର୍ଯ୍ୟ କିଏ ତୁଲାଇବ ?"

ବିଶ୍ୱନାଥ ଉତ୍ତର ଦେଲେ, "ମୋ ଅନ୍ତେ ତୁହି ହେବୁ ସଂପାଦକ; କିନ୍ତୁ ସଂପାଦନା କାମ ତୁଲାଇବ ଏଇ 'କୃଷ୍ଣ' । ଯେତେ ଲେଖା ହସ୍ତଗତ ହେବ, ସବୁ ପଢ଼ି ସେଥିମଧ୍ୟରୁ ପ୍ରକାଶଯୋଗ୍ୟଗୁଡ଼ିକୁ ସେ ବାଛି ଓ ଭାଷାଦୋଷାଦି ନିରାକରଣ କରି କାହାପରେ କିଏ ରହିବ ତାର କ୍ରମ ସ୍ଥିର କରିଦେବ ଏବଂ ମୁଦ୍ରଣଗତ ନିର୍ଦ୍ଦୋଷତାରକ୍ଷାନିମିତ୍ତ ପ୍ରତ୍ୟେକ ଫର୍ମାର ପ୍ରୁଫ୍ ସଂଶୋଧନ କରିଦେବ । 'ସଂପାଦକୀୟ' ଆଲୋଚନାଟି କେବଳ ଲେଖିଦେବ 'ଚନ୍ଦ୍ର' ।"

ଏହାହିଁ ହେଲା 'ଉତ୍କଳସାହିତ୍ୟ'ପ୍ରାଣ ମହାପ୍ରୟାଣୋନ୍ମୁଖ ବିଶ୍ୱନାଥଙ୍କ ଶେଷ ବାଣୀ । ଆଠଗଡ଼ର ଏହି 'ଚନ୍ଦ୍ର' ହେଉଛନ୍ତି ସେତେବେଳେ ଉତ୍କଳ-ସାହିତ୍ୟ ପ୍ରେସର ଆଗନ୍ତୁକ ଚନ୍ଦ୍ରଶେଖର ମିଶ୍ର, ବି·ଏ·, ବି· ଏଲ୍·—'Lady of the Lake' ଇଂରାଜୀ କାବ୍ୟର ସରସାନୁବାଦ 'ସରସୁନ୍ଦରୀ'ର କବି । ସେ ମଧ୍ୟ ଡକରା ପାଇ ସେଠାରେ ହାଜର ଥିଲେ । ଆମେ ଦୁହେଁ ଯଶୋମୁକୁଟଧାରୀ ସାହିତ୍ୟଗୁରୁଙ୍କର ମୃତ୍ୟୁପୂର୍ବ ନିର୍ଦ୍ଦେଶବାଣୀକୁ କରୁଣାଭିଷିକ୍ତ ଆଶୀର୍ବଚନରୂପେ ମଥା ପାତି ଗ୍ରହଣ କରିନେଇଥିଲୁଁ ।

[ ପ୍ରକାଶ ଥାଉ କି, ଅଳ୍ପାୟୁଃ ମହାନନ୍ଦଙ୍କ ଦେହାବସାନପର୍ଯ୍ୟନ୍ତ ମୁଁ ମୋର ଗୁରୁଦାୟିତ୍ୱତକ ଯଥାସାଧ୍ୟ ଯତ୍ନର ସହିତ ନିର୍ବାହ କରିଥିଲି—ସେହି ପାଞ୍ଚ ବର୍ଷମଧ୍ୟରେ ଅଳ୍ପକାଳପାଇଁ ରାୟବାହାଦୁର ଚିନ୍ତାମଣି ଆଚାର୍ଯ୍ୟ, ଏମ୍.ଏ., ବି.ଏଲ୍. ସଂପାଦକ ଆସନର ଅଧିକାରୀ ହୋଇଥିଲେ ବି । ]



# ସମାଧିମନ୍ଦିର

ବାତ୍ସଲ୍ୟମୟ ପିତାଙ୍କୁ ହରାଇ ମହାନନ୍ଦ ଯେପରି ଶୋକାତୁର ହୋଇ-ପଡ଼ିଥିଲେ, ସେହିପରି ମଧ୍ୟ ପିତୃସ୍ମୃତିରକ୍ଷଣପାଇଁ ଉତ୍କଣ୍ଠିତ ହୋଇଉଠିଥିଲେ । ସାରସ୍ୱତ କୀର୍ତ୍ତିପୂତ 'ସତ୍ୟଚଉରା' ଶ୍ମଶାନପୀଠରେ ରାଧାନାଥ-ମଧୁସୂଦନଙ୍କ ସମାଧିସ୍ତମ୍ଭ ସନ୍ନିଧିରେ ପିତୃଦେବଙ୍କ ସମାଧିମନ୍ଦିର ନିର୍ମାଣର ଆୟୋଜନ ତାଙ୍କର ହେଲା ଆଶୁ କାର୍ଯ୍ୟ । ମୂଲ୍ୟବାନ୍ ମାର୍ବଲ ପ୍ରସ୍ତର ଓ ତା ଉପରେ ଅକ୍ଷରାଙ୍କନକାରୀ କୁଶଳୀ କାରିଗର ଓଡ଼ିଶାରେ ପାଇବା ଅସମ୍ଭବ ଥିଲା ସେତେବେଳେ । ସେଥିପାଇଁ ସୁଦୂର ପ୍ରଦେଶମାନଙ୍କ ଉପରେ ନିର୍ଭର କରିବାକୁ ପଡ଼ୁଥିଲା । ତେଣୁ ମନମାଫି ସୁଦୃଶ୍ୟ ଗଢ଼ଣର ସମାଧିମନ୍ଦିରଟିର ନିର୍ମାଣକାର୍ଯ୍ୟ ଶେଷ କରାଇବାକୁ ଦୀର୍ଘ ଚାରି ବର୍ଷ ଲାଗିଗଲା । ୧୯୩୮ ମସିହାର ପବିତ୍ର କାର୍ତ୍ତିକ ମାସରେ ତାହା ଆନୁଷ୍ଠାନିକଭାବରେ ଉନ୍ମୋଚିତ ହୋଇଥିଲା । ବହୁଜନସମାକୀର୍ଣ୍ଣ ସେହି ଐତିହାସିକ ଉତ୍ସବର ମନୋରମ ପରିବେଶରେ ପ୍ରାରମ୍ଭ ଗୀତିକାରୂପେ ଏହି ଲେଖକର ଯେଉଁ ସଂଗୀତଟି ଗୀତ ହୋଇଥିଲା, ତାହା ଏଠାରେ ପରିବେଷଣ କରାଗଲା :

## ସମାଧିସ୍ମୃତି

( ଧନାଶ୍ରୀ—ଆଠତାଳୀ )

କେ ଯାଅ ପଥିକ ହେ ! ଦଣ୍ଡେ ଏ ପଥେ ଆସି
ପୁଣ୍ୟ ଏ ସ୍ମୃତିପୀଠେ ଚାହାଁ ବାରେ । ୦ ।
ମାନବଦେବତା ଯେ
ଶୋଇଛୁ ରେଣୁଶେଯେ
ଖେଳାଇ ଦିବ୍ୟଜ୍ୟୋତି ନିରବରେ । ୧ ।

ଶତହେଉଅ

ତା ଘର ମହାପ୍ରାଣ
କର ସ୍ୱଦେଶେ ଦାନ
ଜାଳିଯାଇଛୁ ଦୀପ ଅନ୍ଧକାରେ । ୨ ।

ସାରସ୍ୱତ ଏ ଘର
ଜାତିର 'ସ୍ୱର୍ଗଦ୍ୱାର'
ପରଶେ ପ୍ରାଣ ନାଚେ ସଂଗୀତରେ । ୩ ।

ଆସ ହେ ପଥଗୃର !
ମାନସ-ଅର୍ଘ୍ୟ ଧର
ପୂଜିବ ଏ ବିଜନେ ଭକ୍ତିଭରେ । ୪ ।

[ ୧୯୩୮ 'ଉତ୍କଳସାହିତ୍ୟ' କାର୍ତ୍ତିକ ସଂଖ୍ୟାରେ ପ୍ରକାଶିତ ]



## ପିତୃପଦାଙ୍କଗୃରୀ ମହାନନ୍ଦଙ୍କ ପରେ

ସୁପୁତ୍ର ମହାନନ୍ଦଙ୍କ ନିୟନ୍ତ୍ରଣରେ 'ଉତ୍କଳସାହିତ୍ୟ' ବେଶ୍ ସୁସ୍ଥ କଳେବରରେ ନିୟମିତରୂପେ ପ୍ରକାଶିତ ହେଉଥିଲା । କିନ୍ତୁ ମହାନନ୍ଦଙ୍କ ଦୁର୍ଭାଗ୍ୟଜନକ ଅକାଳବିୟୋଗବଶତଃ ଉତ୍କଳସାହିତ୍ୟ ପତ୍ରିକା କେତେ ବର୍ଷ ବନ୍ଦ ରହିବାପରେ ତାଙ୍କ ଉଗ୍ରୀଧାସ୍ତ ତରଳମନା ପୁତ୍ର ସୁନନ୍ଦ ଯୌବନର ଉଦ୍ଦୀପନାରେ ଉଦ୍‌ବୁଦ୍ଧ ହୋଇ ଶ୍ରୁତକୀର୍ତ୍ତି ପିତାମହଙ୍କ ପ୍ରାଣାଧିକ-ପ୍ରିୟତର ପତ୍ରିକାଟିକୁ ସାହସର ସହିତ ଉଜ୍ଜୀବିତ କଲେ । କେତେକାଳୁଁ ଜନଶ୍ରୁତି ରହି-ଆସିଛି 'ଟୋକାଙ୍କ ଉତ୍ସାହ ଚାଳପତ୍ର ନିଆଁ ପରି ଅତି କ୍ଷଣସ୍ଥାୟୀ' । ଏହାର ସାକ୍ଷଲକ୍ଷିତ ନଜିର ଜକଜକ ଦିଶୁଛି ଆଖି ଆଗରେ—'ବାରୁଣୀ', 'ଆଧୁନିକ', 'ଶିଶିର' ସାହିତ୍ୟ ପତ୍ରିକାମାନ ଖୁବ୍ ଆଟୋପରେ ମୁହଁ କାଢ଼ିଥିଲା ଯେମିତି, ଖୁବ୍ ସନ୍ତାପରେ ମୁହଁ ମାଡ଼ିଥିଲା ସେମିତି ଗଜାମରୁଡ଼ିର ଗ୍ରାସରେ ପଡ଼ି । ସୁନନ୍ଦଙ୍କ ଉତ୍ସାହର ପରିଣାମ ଠିକ୍ ହେଲା ସେଇଆ । ପତ୍ରିକା କିଛି ବାଟ ଚାଲି ଥକିପଡ଼ିଲା ଏବଂ ଦୈବଦୁର୍ବଳକୁ ତରେଟ-କବଳରେ ପଡ଼ି ନିର୍ବାଣପ୍ରାପ୍ତ ହୋଇଗଲା । ତତ୍ପରକାଳରେ 'ଉତ୍କଳସାହିତ୍ୟ ପ୍ରେସ'ଉପରେ ଯେଉଁ ଅଶୁଭନକ ବାଧାଚଣ୍ଡକ ପଡ଼ିଲା, ତା ଫଳରେ ପ୍ରେସ ଯେ କେବଳ ବନ୍ଦ ହୋଇଗଲା ସେତିକି ନୁହେଁ, ପରେ ପରେ ତାର ବିରାଟ ସୌଧ ମଧ୍ୟ ୧୯୭୧ରୁ ୧୯୭୩ମଧ୍ୟରେ ଖଣ୍ଡଶଃ ବିକ୍ରି ହୋଇଯାଇ କରତଳ-ଆମଳକବତ୍ ଏକାଧିକ ବ୍ୟକ୍ତିଙ୍କ ହସ୍ତର ଅଧିକାରକୁ ଚାଲିଗଲା ।

ମର୍ମାନ୍ତକ ଜାଣ୍ଡସ୍ତ ବେଦନାର ଅତଳ ହ୍ରଦମଧ୍ୟରେ ଶାନ୍ତ-ଶତଦଳର ସୌରଭ ସଂକେତ ଏତିକି ଯେ, ମୁଖ୍ୟ ନବାଧିକାରୀଙ୍କ ମାନ୍ତ୍ରିକ ସାଧନା ପ୍ରଭାବରେ

ଶ୍ରବନ୍ଧଆଠ

୧୯୭୩ର ସମ୍ଭବତଃ ଅନ୍ତ୍ୟଭାଗରେ 'ଉତ୍କଳସାହିତ୍ୟ' ଚତା-ଖୋପରୁ ଚେଇଁଉଠି ତାର ଗତାସୁ ପିତାଙ୍କ ଜୀବନସତ୍ତାର ଜୈବସଂଗୀତ ଗାନପାଇଁ ଉଦାତ୍ତ କଣ୍ଠ ମାଜିବାକୁ ଆରମ୍ଭ କରିଦେଇଛି । ପତ୍ରିକାଟିର ଅତି ଆଦମିତ ଏହି ପୁନର୍ଜାଗରଣ ନବଜାଗ୍ରତ ଓଡ଼ିଶାର ସାହିତ୍ୟସାଧକ ଓ ବାଣୀସେବକଙ୍କପାଇଁ ଯେ ଅଗ୍ରଗାମୀ ଚିନ୍ତାର ବାହକ ହେବ ଏବଂ ନବ ନବ ଏଷଣା ଓ ଧିଷଣାର ମାର୍ଗ ପ୍ରଶସ୍ତତର କରିଦେବ, ଏପରି ବିଶ୍ୱାସ କରିବାରେ ବୈମତ୍ୟର ଅବକାଶ ନ ଥିଲାପରି ଜଣାଯାଏ ।

ତେବେ, ପୂର୍ବତନ ଉତ୍କଳସାହିତ୍ୟ ଓ ଇଦାନୀଂତନ ଉତ୍କଳସାହିତ୍ୟ-ମଧ୍ୟରେ ପାର୍ଥକ୍ୟ ଏହି ଯେ, ସେ ଥିଲି ସାତ୍ତ୍ୱିକୀ ନିଷ୍ଠାରେ ପୁଷ୍ଟ ନିୟମିତ ମାସିକୀ ଏବଂ ଏ ହେଉଛି ବ୍ୟବସାୟିକୀ ପରିକାଷ୍ଠାରେ କୁଣ୍ଠ କଣ୍ଠବିହୀନ ଅନିୟମିତ ସାମୟିକୀ । ମାସିକୀ ନ ହେବାର ପ୍ରଧାନ କାରଣ ବୋଧ ହୁଏ ମନୀଷୀ ବିଶ୍ୱନାଥଙ୍କ ନିର୍ଦ୍ଧାରିତ ଉଚ୍ଚ ମାନବିଶିଷ୍ଟ ଓ ଆବଶ୍ୟକତାନୁଗ-ଚିନ୍ତାପରିପୁଷ୍ଟ ଭାବଦ୍ୟୋତକ ଲେଖାର ଅପ୍ରାଚୁର୍ଯ୍ୟ ବା ଅସଦ୍ଭାବ । ଯାହାହେଉ, ପଠନପିପାସୁ ପାଠକପାଠିକାଙ୍କ ସଦାକାଂକ୍ଷା ପୂରଣ କରି ଏହା ଅଚିରେ ମାସିକୀରେ ପରିଣତ ହେବ ବୋଲି ଆଶା କରିବା ଅତି ସମୀଚୀନ ଓ ସ୍ୱାଭାବିକ । ବୋଲିବା ବାହୁଲ୍ୟ ଯେ, ଏହି ନୂତନ ପ୍ରସ୍ଥ 'ଉତ୍କଳସାହିତ୍ୟ'ର ସଂଖ୍ୟା ପ୍ରୟୋଜନାନୁପାତରେ ଅତି ଅଳ୍ପ ହେଲେହେଁ ଆଢ୍ୟତା ଓ ଦାଢ଼୍ୟତାରେ ଏହା ବିଶ୍ୱନାଥଙ୍କ ସଂପାଦକୀୟ ଓ ସଂପାଦମୀୟ ମର୍ଯ୍ୟାଦା ରକ୍ଷା କରିବାରେ ଏପର୍ଯ୍ୟନ୍ତ ତ୍ରୁଟି କରି ନାହିଁ ।

ଏ ସିନା ଗଲା 'ଉତ୍କଳସାହିତ୍ୟ' କଥା, ବାକି ରହିଛି କିନ୍ତୁ ତାର ଅଭିନ୍ନାଙ୍ଗ 'ଉତ୍କଳସାହିତ୍ୟ ପ୍ରେସ' । ଜୀବନ୍ୟାସ ମନ୍ତ୍ରରେ ତାର ଯେବେ ପୁନରୁତ୍‌ଥାନ ହୋଇପାରନ୍ତା ଏବଂ 'ଉତ୍କଳସାହିତ୍ୟ' ମାସିକ ପତ୍ରିକା ପୂର୍ବକାଳ ପରି ସେହି ମୁଦ୍ରଣାଳୟରୁ ଆତ୍ମପ୍ରକାଶ କରିପାରନ୍ତା, ତେବେ ଆଶାର୍ଥୀ ବିଶ୍ୱନାଥଙ୍କ ଅନ୍ତିମ ବାସନାପ୍ରତି ତାହାହିଁ ହୁଅନ୍ତା ସର୍ବଶ୍ରେଷ୍ଠ ସମ୍ମାନ, ତାଙ୍କ ପବିତ୍ର ସ୍ମୃତିପ୍ରତି ଉତ୍କୃଷ୍ଟତମ ଅର୍ଘ୍ୟଦାନ । ସର୍ବଜନାଦୃତ 'ଉତ୍କଳସାହିତ୍ୟ'ର ଅଧୁନାତନ ପରିଚାଳକ ଓ ସଂପାଦକ ଉତ୍ତରଦାୟିତ୍ୱବୋଧରେ ଏହି ମହତ୍ତର

ଶ୍ରୀକୃଷ୍ଣ

ସମ୍ଭାବନାର ସାର୍ଥକ ରୂପାୟନପାଇଁ ଆନ୍ତରିକ ଶ୍ରଦ୍ଧା ପୋଷଣ କରିବେ ବୋଲି ଜନସାଧାରଣ ଆଶା କରିବାରେ ମଧ୍ୟ ଯଥେଷ୍ଟ ଯଥାର୍ଥତା ରହିଛି ।

ଦରଦରହୁଲ ଦୂର ଅଞ୍ଚଳରେ ଅନ୍ଧାରି ଗମ୍ଭୀର-ସନ୍ଧିରେ ଅଯତ୍ନକ୍ଷିପ୍ତ ସ୍ମୃତି-ସିନ୍ଦୁକର ବୁଢ଼ିଆଣୀଜାଲଭିତରୁ ଅଣ୍ଡାଳି ଅଣ୍ଡାଳି ଯାହା ଗୋଟାଇହେଲା ସେତିକମାତ୍ରର ମୁସାବିଦା ଆଜି ଛପା ହରଫର ରୂପ ପାଇଲା । ଗୋଟିଆ ଚିଜରୁ କାହିଁରେ ଅଳନ୍ଧୁକଳା ବୋଲିହୋଇଯାଇଥିବା, ଆଉ କାହିଁରେ ମଉଡ଼ରୁ ମାଡ଼ିଯାଇଥିବା କିଂବା କାହାକୁ ଘୁଣ ଖାଇଯାଇଥିବା କି ଠାଏ ଦୁଇଠା ଉଇ ଚରିଯାଇଥିବା ବିଚିତ୍ର ନୁହେଁ ।



# ସ୍ୱର୍ଗତାତ୍ମାଙ୍କ ପରିବାରର ସର୍ବଶେଷ ସ୍ଥିତି

ଆତ୍ମପ୍ରାଜ୍ଞ ବିଶ୍ୱନାଥଙ୍କ ମୃତ୍ୟୁପର ପାରିବାରିକ ସ୍ଥିତିର ଚୁମ୍ବକ ଆଭାସ ଏଠାରେ ଦିଆଯାଉଛି । ତାଙ୍କର ସ୍ୱକୀୟ ବ୍ୟକ୍ତିଗତ ପରିବାର କହିଲେ ପତ୍ନୀ ଜାନକୀ ଏବଂ ଆତ୍ମଭୂ ସନ୍ତାନ (ଆତ୍ମଜ ଓ ଆତ୍ମଜା) ମାୟାଧର, ମହାନନ୍ଦ, ପୂର୍ଣ୍ଣାନନ୍ଦ ଓ ନର୍ମଦା, ପ୍ରତିଭା, ସୁପ୍ରଭା ଏମାନଙ୍କୁହିଁ ବୁଝାଏ । ଏହି ସାତ ଜଣଙ୍କ ମଧ୍ୟରୁ ପ୍ରଥମେ ସଂସାରରୁ ବିଦାୟ ନେଲେ ମହାନନ୍ଦ ୨୫. ୮. ୧୯୩୯ରେ । ତାଙ୍କ ପରେ ମୃତ୍ୟୁକ୍ରମ ହେଲା :

୧୪. ୮. ୧୯୪୨ରେ ଜାନକୀ ଦେବୀ

୧୨. ୫. ୧୯୫୦ରେ ପୂର୍ଣ୍ଣାନନ୍ଦ

୫. ୭. ୧୯୬୦ରେ ପ୍ରତିଭା

୩. ୯. ୧୯୭୩ରେ (ବିମଳହୃଦୟା ଜାୟା 'ବିମଳା'ଙ୍କୁ ୨୭. ୨. ୧୯୩୪ରେ ହରାଇଥିବା) ମାୟାଧର

୧୩. ୯. ୧୯୮୦ରେ (ସ୍ୱାମୀ ଜିତେନ୍ଦ୍ରକୁମାର ବିଶ୍ୱାସଙ୍କୁ ୧୪. ୧୨. ୧୯୭୫ରେ ହରାଇଥିବା) ନର୍ମଦା

ପରିବାରର ସର୍ବଶେଷ ପ୍ରଭା ସର୍ବକନିଷ୍ଠା ସୁପ୍ରଭାଙ୍କର ଜୀବନ-ପ୍ରଦୀପ ନିର୍ବାପିତ ହେଲା ୨୪. ୭. ୧୯୮୨ ରାତି ଗୋଟାଏ ବେଳେ ।

ଏମାନଙ୍କ ଛଡ଼ା ବିଶ୍ୱନାଥଙ୍କ ସର୍ବକନିଷ୍ଠ ସହୋଦର ପୁରସ୍ଥିନ କୃଷ୍ଣଚନ୍ଦ୍ରଙ୍କର ଜୀବନାବସାନ ହୋଇଥିଲା ୧୯୫୧ରେ ଓ ପୈତୃବ୍ୟେୟ ଭ୍ରାତା ରାମଚନ୍ଦ୍ରଙ୍କର ୧୫. ୧୨. ୧୯୬୯ରେ (୧୩୭୭ ସାଲ ମାର୍ଗଶିର ଶୁକ୍ଳ ସପ୍ତମୀ ତିଥିରେ) ।

### ସ୍ୱର୍ଗତାତ୍ମାଙ୍କ ପରିବାରର ସର୍ବଶେଷ ସ୍ଥିତି

ଉଲ୍ଲିଖିତ ମୃତ୍ୟୁସୂଚୀରୁ ସମସ୍ତେ ଜାଣିପାରିବେ ଯେ, ବିଶ୍ୱନାଥଙ୍କ ନିଜ ବୈସ୍ତକ୍ତିକ ପରିବାରର କୌଣସି ପୁତ୍ର ବା କନ୍ୟା ଆଉ ଇହଧାମରେ ନାହାନ୍ତି— ସହଧର୍ମିଣୀ ଜାନକୀ ମଧ୍ୟ। ସଂପୃକ୍ତ ବ୍ୟକ୍ତି ହିସାବରେ କେବଳ ସପରିବାର ଜୀବିତ ଅଛନ୍ତି ବିଶ୍ୱନାଥଙ୍କ ପୈତୃବ୍ୟେସ୍ତ ଭ୍ରାତା ରାମଚନ୍ଦ୍ରଙ୍କ କନିଷ୍ଠ ସହୋଦର (୧୯୯୪ ଅଗଷ୍ଟରୁ ପତ୍ନୀ ସୁଲେଖାଙ୍କୁ ହରାଇଥିବା) ଲକ୍ଷ୍ମଣ । ଅନ୍ୟ ଯେଉଁ ବ୍ୟକ୍ତିଗଣ 'ଝାପୁ ଝାପଣିଖା' ପ୍ରାପ୍ତ ଏବେ ବର୍ତ୍ତମାନ, ସେମାନେ ହେଲେ :

- ମାୟାଧରଙ୍କ ଦୁଇ ପୁତ୍ରମଧ୍ୟରୁ ଜ୍ୟେଷ୍ଠ ପୁତ୍ର ଅବସରପ୍ରାପ୍ତ ସିଭିଲ୍ ସର୍ଜନ୍ କ୍ଷିତୀନ୍ଦ୍ରନାଥ (ସପରିବାର) ଓ ଦ୍ୱିତୀୟ ପୁତ୍ର ଅବସରପ୍ରାପ୍ତ ଶିକ୍ଷା-ନିର୍ଦ୍ଦେଶାଳୟ କର୍ମଚାରୀ ରବୀନ୍ଦ୍ରନାଥ (ସପରିବାର)
- ନର୍ମଦାଙ୍କ ଏକମାତ୍ର ପୁତ୍ର ପ୍ରଫେସର ଦିଲ୍ଲୀପକୁମାର ବିଶ୍ୱାସ (ସପରିବାର)
- ମହାନନ୍ଦଙ୍କ ଏକମାତ୍ର ପୁତ୍ର ସୁନନ୍ଦ (ସପରିବାର ଓ ମାତା ଋମଳାଙ୍କ ସହ)
- ରାମଚନ୍ଦ୍ରଙ୍କ ଦୁଇ ପୁତ୍ର ଡାକ୍ତର (ପ୍ରଫେସର) ସତ୍ୟବ୍ରତ ଓ 'ଓଡ଼ିଶା ବୁକ୍ ଏମ୍ପୋରିୟମ୍' ପ୍ରକାଶନ ସଂସ୍ଥାର ସ୍ୱତ୍ୱାଧିକାରୀ ଦେବବ୍ରତ (ଉଭୟେ ସପରିବାର)

* * *

# ବିଶ୍ୱନାଥ-ଚନ୍ଦନର ଉଣ୍ଟିନସାର

୧୯୩୪ ଅକ୍ଟୋବରଠାରୁ ଆରମ୍ଭ କରି ଆଜପର୍ଯ୍ୟନ୍ତ ପ୍ରତିବର୍ଷ ଓଡ଼ିଶାର ପ୍ରତିପଲ୍ଲୀରେ ଇସ୍ପାତ ପୁରୁଷ ମନସ୍ୱୀ ବିଶ୍ୱନାଥଙ୍କର ବହୁମୁଖୀ ପ୍ରତିଭା, ସାହସିକ କାର୍ଯ୍ୟାବଳୀ ଓ ଦୁର୍ଲଭ ଗୁଣଗାଥାର ଅଜସ୍ର କୀର୍ତ୍ତନ ହୋଇଆସୁଛି । କେହି ତାଙ୍କୁ ବାଗ୍ମିଶ୍ରେଷ୍ଠ, କେହି ସାହିତ୍ୟସ୍ରଷ୍ଟା ତଥା ସାହିତ୍ୟିକସ୍ରଷ୍ଟା, କିଏ ମହାନୁଭବ ବା ମହାନୁଭାବ, କିଏ ବିପ୍ଳବୀ ବା ବିଦ୍ରୋହୀ, କିଏ ସ୍ୱାଧୀନଭାବୁକ, କିଏ ସଂସ୍କାରକ, କିଏ ବା ସାଧକ, କେହି ସତ୍ୟସନ୍ଧ, କେହି ମିତକଠୋର, କେହି ମତିମାନ୍ ଓ ହୃଦୟବାନ୍, କେହି ଅକୁତୋଭୟ ବା ନିର୍ଭୀକଚେତା, ପୁଣି କେହି ବ୍ରହ୍ମଜ୍ଞ ବା ବ୍ରହ୍ମଦର୍ଶୀ, ଆଉ କିଏ ବା ଗଭୀରତମ ଆତ୍ମବିଶ୍ୱାସୀ ବୋଲି ନାନା-ଭାବରେ ନିଜ ନିଜ ଦୃଷ୍ଟିକୋଣରୁ ବିଚାର କରିଥାନ୍ତି । କିନ୍ତୁ ଉପଲବ୍ଧିକ ଜ୍ଞାନରେ ବିଚାର କଲେ ସ୍ପଷ୍ଟ ଜଣାଯାଏ ଯେ, ଏ ସବୁଗୁଡ଼ିକ ଆଖ୍ୟା ଯେଉଁ ସର୍ବାଙ୍ଗୀଣ ସାଧନାରୁ ଉଦ୍ଭୂତ, ତାହାର ମୂଳ ଉପାଦାନ ଥିଲା ନିରପେକ୍ଷ ଓ ମନନନିଷ୍ଠ ସୂକ୍ଷ୍ମାନୁସୂକ୍ଷ୍ମ ବିଚାରଶୀଳତା । ସେ ଯାହାହେଉ, ବହୁଚର୍ଚ୍ଚିତ ସେହିସବୁ ଚର୍ବିତ-ଚର୍ବଣର ପୁନଃଶ୍ରୋମନ୍ଥନକୁ ଅନାବଶ୍ୟକତା ଦୃଷ୍ଟିରୁ ଏହି ଆଲୋଚନାର ପରିସରବାହାରେ ରଖିଦିଆଗଲା । କେବଳ ବିଧିଲଙ୍ଘନ ଦୋଷର କ୍ଷାଳନ ଓ ପାଠକପାଠିକାଙ୍କ କଲ୍ୟାଣାନ୍ଵେଷଣ ନିମିତ୍ତ ସେହି ବରବରେଣ୍ୟ ମହାରଥୀଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଥିବା ଓ ତାଙ୍କ ପ୍ରଚଣ୍ଡ ବ୍ୟକ୍ତିତ୍ୱକୁ ନିବିଷ୍ଟଭାବରେ ସ୍ୱାଧ୍ୟାୟ କରିଥିବା ପ୍ରବୀଣ ନବୀନ ଉଭୟ ଶ୍ରେଣୀର ପ୍ରତିଷ୍ଠାପନ୍ନ ଲେଖକ-ଲେଖିକାଗଣଙ୍କ ନିବିଡ଼ ଅନୁଭବଗୁଡ଼ିକ ଅକ୍ଟୋବର ୨୮ ଦଶାହର ଆଦ୍ୟ-ଶ୍ରାଦ୍ଧ ଦିବସରେ ପ୍ରକାଶିତ 'ଉତ୍କଳସାହିତ୍ୟ' ୧୯୩୪ କାର୍ତ୍ତିକ ସ୍ମୃତିସଂଖ୍ୟାରୁ ଉଦ୍ଧୃତ ହୋଇ ନିମ୍ନମତେ ସଂକଳନ କରାଯାଉଛି :

ଶିବ ପ୍ରକ୍ଷେତେର୍

# ବିଶ୍ୱନାଥଙ୍କ ବୈଶିଷ୍ଟ୍ୟ

(ବଙ୍ଗଳାର ଅନୁବାଦ)

ମୃତ୍ୟୁ ଆମର ଚିରପରିଚିତ । ଯେତେବେଳେ ମୃତ୍ୟୁ ଆସେ, ସେତେବେଳେ ସେ ଆମ୍ଭମାନଙ୍କମଧ୍ୟରେ ଗୋଟିଏ ଶୂନ୍ୟତା ସୃଷ୍ଟି କରେ । ଯିଏ ଜଗତରେ ଯେତେ ସ୍ଥାନ ଅଧିକାର କରିଥାଏ, ତାର ମୃତ୍ୟୁରେ ସେତିକ ସ୍ଥାନ ଶୂନ୍ୟ ହୁଏ ଏବଂ ତହିଁରୁହିଁ ଆମ୍ଭେମାନେ ବୁଝିପାରୁଁ ତା ଜୀବନର ମୂଲ୍ୟ କେତେ ଥିଲା । ଜୀବିତାବସ୍ଥାରେ ଆମେ ଯାହାଙ୍କର ପ୍ରକୃତ ମର୍ଯ୍ୟାଦା ବୁଝିପାରି ନ ଥାଉଁ, ସେ ଆମ୍ଭମାନଙ୍କମଧ୍ୟରୁ ଚାଲିଗଲାପରେ ବୁଝିପାରୁଁ ତାଙ୍କ ଅଧିକୃତ ସ୍ଥାନ କେତେ ଅଧିକ ଥିଲା ।

ସ୍ୱର୍ଗୀୟ ବିଶ୍ୱନାଥ କର ମହାଶୟଙ୍କ ସମ୍ବନ୍ଧରେ ମଧ୍ୟ ଏଇ କଥାଟି ଆମ୍ଭେମାନେ ଏବେ ସ୍ପଷ୍ଟଭାବରେ ଉପଲବ୍ଧି କରୁଛୁଁ । × × × × ତାଙ୍କ ପାର୍ଥିବଜୀବନର ଅବସାନରେ ଯେତେବେଳେ ତାଙ୍କ ଜୀବନୀ ଓ ଜୀବନର କାର୍ଯ୍ୟାବଳି ଆଲୋଚନା କରିବାର ସମୟ ଆସିଛି, ସେତେବେଳେ ଆମେ ଦେଖୁଛୁଁ ଯେ, ତାଙ୍କ ପରଲୋକଗମନରେ ଓଡ଼ିଶାର ସକଳ କ୍ଷେତ୍ରରେ ଗୋଟାଏ ମହାଶୂନ୍ୟତା ଆସିଛି ଏବଂ ସେହି ମହାଶୂନ୍ୟତାକୁ ପୂର୍ଣ୍ଣ କରିପାରିବା ଭଳି ଲୋକର ଅଭାବ ଅନୁଭୂତ ହେଉଛି ।

ସାଧୁ ମଧୁସୂଦନ ରାଓ ମହାଶୟଙ୍କ ତିରୋଧାନପରେ ଅନ୍ୟୂନ କୋଡ଼ିଏ ବର୍ଷ ବିଶ୍ୱନାଥ ଯେଉଁ ଧର୍ମସମାଜର ପ୍ରଧାନ ପ୍ରତିନିଧିରୂପେ ସାଧାରଣଙ୍କ ନିକଟରେ ପରିଚିତ ଥିଲେ, ସେଇ 'ବ୍ରାହ୍ମସମାଜ'ର ଉତ୍କଳ ଶାଖା ପକ୍ଷରେ ତାଙ୍କର ମୃତ୍ୟୁ ଯେ କି କଠିନ ଅବସ୍ଥା ଆଣିଦେଇଛି, ତାହା ହୃଦୟଙ୍ଗମ କରିବା ସହଜ ନୁହେଁ । ଏହି 'ସମାଜ'ପାଇଁ ସେ ଜୀବନର ପ୍ରାରମ୍ଭରେହିଁ ସ୍ୱୀୟ ଜ୍ଞାତି, ପରିବାର, ସମସ୍ତ ତ୍ୟାଗ କରିଥିଲେ; ଆଜୀବନ ନିଜର ଶ୍ରଦ୍ଧା, ଭକ୍ତି ଓ ବିଶ୍ୱାସ-ଦ୍ୱାରା ଏହାକୁ ପୁଷ୍ଟ ଓ ଜୀବିତ ରଖିବାକୁ ଯତ୍ନ କରିଥିଲେ ଏବଂ ଶେଷପର୍ଯ୍ୟନ୍ତ ଏହାର ରକ୍ଷା ଓ ଉନ୍ନତି ଲାଗି ବ୍ୟଗ୍ରତା ପ୍ରକାଶ କରୁଥିଲେ । ଏହି ଧର୍ମର ଆଦର୍ଶର ପୁଷ୍ଟି ଓ ବିକାଶରେ ସେ ସମଗ୍ର ଭାରତର ଭବିଷ୍ୟତ୍ ମଙ୍ଗଳର ବୀଜ ଦେଖିବାକୁ ପାଇଥିଲେ ବୋଲିହିଁ ଏହାକୁ ପ୍ରତିଷ୍ଠିତ କରିବାପାଇଁ ତାଙ୍କର ଏତେ

ଐକାନ୍ତିକତା ଥିଲା । ସେହିପରି, ଏହି ଆଦର୍ଶ ଅନୁଯାୟୀ ସମାଜସଂସ୍କାରରେ ତାଙ୍କର ଚେଷ୍ଟା ଓ ଉଦ୍ୟମର ଅନ୍ତ ନ ଥିଲା । ପୁରାତନର ଯାହା କିଛି ଦୋଷ, ତ୍ରୁଟି ଓ ଅପୂର୍ଣ୍ଣତା, ତାହା ଦୂର କରିବାକୁ ଏବଂ ତା ସ୍ଥାନରେ ଯାହା କିଛି ଜାତିପକ୍ଷରେ ହିତକର, ମଙ୍ଗଳକର, ତାହା ପ୍ରବର୍ତ୍ତନ କରିବାକୁ ସେ ବଦ୍ଧ-ପରିକର ଥିଲେ । ସ୍ତ୍ରୀଶିକ୍ଷା ପ୍ରସାର କରିବା, ଜାତିଭେଦ ଦୂର କରିବା, ଉନ୍ନତ ଆଦର୍ଶର ପଥରେ ଚାଲିବାପାଇଁ ଦେଶକୁ ଉଦ୍‌ବୁଦ୍ଧ କରିବାର ଚେଷ୍ଟା ସେ ଶେଷପର୍ଯ୍ୟନ୍ତ କରିଯାଇଛନ୍ତି ଏବଂ ନିଜ ପରିବାରରେ ତାହାର ଦୃଷ୍ଟାନ୍ତ ଦେଖାଇଯାଇଛନ୍ତି ।

ଉତ୍କଳରେ ଉନ୍ନତ ଆଦର୍ଶର ସାହିତ୍ୟ ପ୍ରତିଷ୍ଠିତ କରିବା ବିଶ୍ୱନାଥଙ୍କର ଅନ୍ୟ ଏକ ମହାନ୍ ପ୍ରଚେଷ୍ଟା । ନାନା ଅଭାବ ଓ ବାଧାବିଘ୍ନ ସତ୍ତ୍ୱେ ଏହି ଦରିଦ୍ର ପ୍ରଦେଶରେ ଉତ୍କୃଷ୍ଟ ସାହିତ୍ୟର ଆଦର୍ଶ ସମସ୍ତଙ୍କ ସମ୍ମୁଖରେ ଉପସ୍ଥାପିତ କରିବାରେ ତାଙ୍କ ଅକ୍ଳାନ୍ତ ଯତ୍ନ ଓ ପରିଶ୍ରମର ପରିଚୟ ହିଏ ତାଙ୍କଦ୍ୱାରା ପ୍ରତିଷ୍ଠିତ ମାସିକପତ୍ରିକା 'ଉତ୍କଳସାହିତ୍ୟ' । ପ୍ରାୟ ଚାଳିଶ ବର୍ଷକାଳ ସେ ସାହିତ୍ୟ-ମାଧ୍ୟମରେ ସ୍ୱୀୟ ପ୍ରଦେଶର ସେବାରେ ନିଜକୁ ନିୟୋଜିତ ରଖିଥିଲେ ଏବଂ ଏ ଦେଶରେ ସାହିତ୍ୟର ଉନ୍ନତିସାଧନରେ ଅନେକାଂଶରେ ସଫଳ ହୋଇଥିଲେ । ତାଙ୍କ ଭଳି ଏକାଗ୍ରତା ଓ ଉନ୍ନତ ଭାବ ନେଇ ସାହିତ୍ୟସେବା କରିବା ଲୋକର ଏକ୍ଷଣି ଏ ଦେଶରେ ବିଶେଷ ଅଭାବ । ପୁଣି ଅନ୍ୟ କ୍ଷେତ୍ରରେ, ଯେଉଁଠି ଭାଷା ଓ ଭାବଦ୍ୱାରା ମଣିଷ ମଣିଷକୁ ଉଦ୍‌ବୁଦ୍ଧ ଓ ଉତ୍ସାହିତ କରିପାରେ ଏବଂ ଓଜସ୍ୱିନୀ ବକ୍ତୃତାଦ୍ୱାରା ଶ୍ରୋତୃମଣ୍ଡଳୀକୁ ମୁଗ୍‌ଧ ଓ ଚମତ୍କୃତ କରିପାରେ, ସେହି ବାଗ୍ମିତାର କ୍ଷେତ୍ରରେ ମଧ୍ୟ ତାଙ୍କ ପ୍ରାୟ ଆଉ କେହି ବର୍ତ୍ତମାନ ଦେଖାଯାନ୍ତି ନାହିଁ । ଉତ୍କଳର ସମସ୍ତେ ସ୍ୱୀକାର କରନ୍ତି ଯେ, ତାଙ୍କ ଶୁଣିଃସୃତ ଭାବ ଓ ଉଦ୍ଦୀପନାପୂର୍ଣ୍ଣ ବକ୍ତୃତା ଉତ୍କଳରେ ଦୁର୍ଲଭ । ଯେତେବେଳେ ଯେଉଁ ବିଷୟରେ ସେ ବକ୍ତୃତା ପ୍ରଦାନ କରନ୍ତି, ସେତେବେଳେ ସେ ଆପଣାର ସମସ୍ତ ଶକ୍ତି, ଭାବ ଓ ଚିନ୍ତା ନିୟୋଜିତ କରି ଶ୍ରୋତାମାନଙ୍କର ପ୍ରାଣ ସ୍ପର୍ଶ କରନ୍ତି ।

ଦେଶର ମହାକର୍ମକ୍ଷେତ୍ରରେ ତାଙ୍କର ଏହି ବିଶିଷ୍ଟ ସ୍ଥାନ ଥିଲା ଯେପରି, ମନୁଷ୍ୟ ସ୍ୱଭାବରେ ମଧ୍ୟ ବୈଶିଷ୍ଟ୍ୟ ଥିଲା ସେହିପରି । ତାଙ୍କ ସଂସ୍ପର୍ଶରେ ଯେଉଁ-ମାନେ ଆସିଛନ୍ତି, ସେମାନେ ସମସ୍ତେହିଁ ତାଙ୍କ ସୌଜନ୍ୟ ଓ ଆନ୍ତରିକତାରେ ମୁଗ୍‌ଧ ହୋଇଛନ୍ତି । ମତଭେଦ ତାଙ୍କର ଅନେକ ବିଷୟରେ ଅନେକଙ୍କ ସହିତ

ଶହେପନ୍ଦର

ହୋଇଛି, କିନ୍ତୁ ତଦ୍ଦ୍ୱାରା ତାଙ୍କ ସୌଜନ୍ୟରେ କେବେହେଲେ ତ୍ରୁଟି ଘଟିବାର ଦେଖାଯାଇ ନାହିଁ ଏବଂ ଆଳାପରେ ଓ ବ୍ୟବହାରରେ ମଧ୍ୟ କେବେହେଁ ଅମାୟିକତାର ଅଭାବ ଲକ୍ଷ୍ୟ କରାଯାଇ ନାହିଁ ।

ଆଉ ଗୋଟିଏ ତାଙ୍କର ବିଶେଷ ଗୁଣ ଥିଲା—ସଦାପ୍ରଫୁଲ୍ଲ ଭାବ । ଯେତେବେଳେ ଯାହା ସହିତ ମିଳିତ ହୁଅନ୍ତି, ଆନନ୍ଦ ଓ ପ୍ରଫୁଲ୍ଲତା ତାଙ୍କ ବାକ୍ୟରେ ଓ ବ୍ୟବହାରରେ ପ୍ରକାଶ ପାଇଥାଏ । ବନ୍ଧୁମାନଙ୍କମଧ୍ୟରେ ତାଙ୍କ ଆଗମନ ହାସ୍ୟ, ଆନନ୍ଦ ଓ ପ୍ରୀତିବର୍ଦ୍ଧନର କାରଣ ହୋଇଥାଏ, ଏବଂ ଏହି କାରଣରୁହିଁ ସେ ବାଳକ, ଯୁବକ ଓ ବୃଦ୍ଧ ସବୁରି ସଙ୍ଗେ ସମାନଭାବରେ ମିଳିତ ହୋଇପାରନ୍ତି । ବନ୍ଧୁମଣ୍ଡଳୀରେ ସେଥିପାଇଁ ସଭିଏଁ ତାଙ୍କ ସଙ୍ଗ ଲାଭ କରି ସୁଖୀ ହୋଇଥାନ୍ତି । ଏହା ତାଙ୍କ ଚରିତ୍ରର ଗୋଟିଏ ବିଶେଷ ଦିଗ ।

ଅନ୍ୟ ଦିଗରେ, କର୍ତ୍ତବ୍ୟସାଧନରେ ତାଙ୍କର ଉତ୍ସାହ ଯେପରି ଅପରିସୀମ ଥିଲା, ଦୃଢ଼ତା ଓ ଚରିତ୍ରବଳ ସେହିପରି ପ୍ରକଟିତ ହେଉଥିଲା । ଚିରକାଳ ତାଙ୍କୁ ନାନାପ୍ରକାର ସଂଗ୍ରାମମଧ୍ୟରେ ଜୀବନ କଟାଇବାକୁ ହୋଇଛି, ନାନା ପରୀକ୍ଷାର ଭିତର ଦେଇ ଗତି କରିବାକୁ ପଡ଼ିଛି; କେତେବେଳେ ବନ୍ଧୁମାନଙ୍କର ସହାୟତା ପାଇଛନ୍ତି ତ ଆଉ କେତେବେଳେ ସେମାନଙ୍କର ତୀବ୍ର ସମାଲୋଚନାର ଶରବ୍ୟ ହୋଇଛନ୍ତି—ସମ୍ମାନ ଓ ଅପମାନ ଉଭୟହିଁ ତାଙ୍କ ଜୀବନରେ ଆସିଛି; କିନ୍ତୁ କିନେହେଲେ କର୍ତ୍ତବ୍ୟସାଧନରେ ତାଙ୍କର ଉତ୍ସାହର ଅଭାବ ଘଟି ନାହିଁ, ବା ରେ ହେଲେ ତାଙ୍କ ପ୍ରତିଜ୍ଞାର ଦୃଢ଼ତା ଖର୍ବ ହୋଇ ନାହିଁ ।

ସର୍ବୋପରି ସେ ଉତ୍କଳକୁ ପ୍ରାଣର ସହିତ ଭଲ ପାଉଥିଲେ ଏବଂ ସକଳ ବିଷୟରେ ଏହାର ସର୍ବବିଧ ଉନ୍ନତିର ଚେଷ୍ଟାରେ ବ୍ୟସ୍ତ ରହିଥିଲେ । ତାଙ୍କ ଦେଶପ୍ରେମ ସଂକୀର୍ଣ୍ଣ ଗଣ୍ଡିମଧ୍ୟରେ ଆବଦ୍ଧ ନ ଥିଲା କିଂବା ବାହ୍ୟ ଆଡ଼ମ୍ବରର ବସ୍ତୁ ନ ଥିଲା । ଯାହାଦ୍ୱାରା ସମଗ୍ର ଭାରତ ସଙ୍ଗେ ଭାବରେ ଓ ଆଦର୍ଶରେ ମିଳିତ ହୋଇ ଉତ୍କଳଦେଶ ତାର ନ୍ୟାଯ୍ୟ ସ୍ଥାନ ଲାଭ କରିପାରିବ, ସେ ବିଷୟରେ ତାଙ୍କର ଅକ୍ଲାନ୍ତ ଚେଷ୍ଟା ଓ ତୀକ୍ଷ୍ଣ ଦୃଷ୍ଟି ଥିଲା । ସକଳ ଉଚ୍ଚ ଭାବ ଓ ଉଦାର ଆଦର୍ଶ ସେ ଏଠାରେ ପ୍ରତିଷ୍ଠିତ ହେବାର ଦେଖିବାକୁ ଚାହୁଁଥିଲେ ଏବଂ ସେଇଥି-ପାଇଁ ଲୋକମତକୁ ଅପେକ୍ଷା ନ କରି ନିଜ ଆଦର୍ଶାନୁଯାୟୀ କର୍ମରେ ଜୀବନ ବ୍ୟୟିତ କରିଯାଇଛନ୍ତି ।

—ପ୍ରଫେସର ଶ୍ରୀ ନିରଞ୍ଜନ ନିୟୋଗୀ

ଶଦ୍ଦେଷୋହ୍ଳ

# ଶେଷ ଶୟନ

ଏଇ ଯେ ଅଦୂରେ ଶୁଭେ ଚଟିଘର ଗୀତନସଙ୍ଗୀତ
ବଶି ବଶି ବହାସୂସେ ଫିଟିପଡ଼େ ଜ୍ୟୋଛର ଇଙ୍ଗିତ
ଏଇ ଯେ ବିହଗ ଡାକେ ମୁହୁର୍ମୁହୁ କଳିତ କାକଳି
ପ୍ରଭାତସମୀର-ସ୍ପର୍ଶେ ହସେ ପୁଷ୍ପ ନାଚେ ପତ୍ରାବଳି—
ହେ ଯୋଗୀନ୍ଦ୍ର ! କହ କହ ସତେ
ରୁଚିଲା ନାହିଁ କି ମନ ତବ ଆଉ ଏ ମର ଜଗତେ ?

ଗୀତନର ଇତିହାସ ଏତେ ହାସ ହର୍ଷପରଂପର
ଯା ଲଗି ମାନବଶିଶୁ ସୁଖମୟ ମଣେ ଏହି ଧରା—
ବରଜ ସକଳ ଦେବ ! କହ ଥରେ କହ ଭଲ ଥରେ
ପଶ୍ଚାତେ ଚାହିଁଲ ନାହିଁ କ୍ଷଣେ ହେଲେ କପା ମରତରେ ?
ହେ ଅଟଳ ଅମୃତବିଶ୍ୱାସି !
ଏତେ ବନ୍ଧୁ ପରଜନେ କେ କହିବ ଆଉ ହେ ଆଶ୍ୱାସି ?

ଏ ଜନ୍ମର କର୍ମଗ୍ରନ୍ଥି ଶିଥିଳାଇ ସଂଗୋପନେ ଆଜ
କେମନ୍ତେ ହେ କ୍ଷଣଜନ୍ମା ! ନିମିଷକେ ପକାଇଲ ଭାଜ ?
ସାଧନାର ଜ୍ୱଳନ୍ତଶିଖା ଉଚ୍ଚେ ଥାପି ଏ ଉତ୍କଳପୁରେ
କହ କହ କି ଆବେଗେ ଗଲ ଚଳି କାହିଁ କେତେ ଦୂରେ ?
ହେ ସୁନ୍ଦର-ସତ୍ୟ-ଶିବାନ୍ୱେଷି !
'ଚିଜସ୍ୱା'ର ମଧୁ ଲଗ୍ନେ ଆତ୍ମା କିବା ଉଠିଲା ଉନ୍ମେଷି ?

ଜଳିଲା ନିର୍ବାଣ-ଦୀପ ଯେବେ ଦେବ ! ହିମାଚଳ-ଶିରେ
ଝଳିଲା ରତନ-ଜ୍ୟୋତି ଅତଳ ସେ ରତ୍ନାକର-ନୀରେ
ପ୍ରକୃତି-ଉତ୍ସଙ୍ଗେ ଯେବେ ଆରମ୍ଭିଲା ଶାଶ୍ୱତ ଅର୍ଚ୍ଚନା,
ଅନ୍ତରେ ଖେଳିଲା ତବ ସଙ୍ଗୀତର ଅନନ୍ତ ମୂର୍ଚ୍ଛନା
ହେ ସାଧକ ପୁରୁଷରତନ !
ସେ ମହାସନ୍ଧାନେ କିବା ମହାଯୋଗେ ହୋଇଲ ମଗନ ?

ଶଦ୍ଧେସତର୍

ଶରତର ମଧୁରାତ୍ରେ ମରତର ଗୃହତର ଲୀଳା
ଦଶମୀର ଜ୍ୟୋସ୍ନାହାସେ ହସିଉଠେ ଅବନୀମଣ୍ଡଳା
ଏ ଯୋଗେ ଲଭିଲ ତବ ପ୍ରାଣପୁରେ ଚିର ମଧୁ ରାସ
ଭାସିଲା ହୃଦୟାକାଶେ ଉଚ୍ଛଳିତ ଚିରଜ୍ୟୋସ୍ନାହାସ;
କିଏ ଚେଣ୍ଣୁ ଶରୀର-ବିନାଶ
ଲଭିଲା ଆତ୍ମାର କିବା ଅନଶ୍ୱର ଅମର୍ତ୍ତ୍ୟ ବିକାଶ ?

ଏଥି ଯେ ଉଚ୍ଚିମା-ତଟେ ଶ୍ମଶାନର ଶାନ୍ତିମୟ କୋଳ
ହୋଇଛନ୍ତି କେତେ ଏଥି ତୁମ ସମ ଚିରଶାନ୍ତିଭୋଳ;
ଧନ୍ୟ ଆଜ ଏ ମୃତ୍ତିକା ଲଭି ତବ ପୁଣ୍ୟ ତନୁସ୍ପର୍ଶ
ବିଚ୍ଛେଦ-ବିଳାପ ସଙ୍ଗେ ଜନମାଏ କିବା ଦିବ୍ୟ ହର୍ଷ !
ହେ ଅମରସରଣୀ-ବିଳାସି !
ଘେନ ତବ ପଦରଜ ମହନିତ ଏ ମସ୍ତକରାଶି ।

କୋମଳ କୁସୁମଶେଯେ ଶୋଇ ଗୁରୁ ! ଅସୀମ ଆଶ୍ୱାସେ
ଭାସୁଅଛ ସ୍ୱପ୍ନେ କିବା ଦେବଭୂର ନିମୁକ୍ତ ବିଳାସେ ?
ନିସ୍ପନ୍ଦ ଅଧରଧାର ନିମୀଳିତ ନୟନଯୁଗଳ
ନିଦ୍ରାର ଆବେଶେ କିବା କର୍ମକ୍ଷାନ୍ତ ଇନ୍ଦ୍ରିୟସକଳ ?
କେ କହେ ରେ ତୁମେ ମହାଯାତ୍ରୀ ?
କେ-କହେ ରେ ଯୋଡିଅଛୁ ତୁମ ସନେ ମହାକାଳରାତ୍ରି ?

କହାଁ ହେ ଡାକୁଛ ସର୍ବେ ନେତ୍ରଯୁଗୁ ଲୋତକ-ନିର୍ଝର
କହାଁ ହେ କରୁଛ ପ୍ରାଣେ ସନ୍ତାପିତ ବିଳାପ-ଜର୍ଜ୍ଜର ?
ଫିଟାଅ ଦେବତା ! ବାରେ ସଂପୁଟିତ ଡୋଳା-ଇନ୍ଦୀବର
ଫୁଟାଅ ସ୍ପନ୍ଦନ ବାରେ— ଥରିଉଠୁ ଘାସ୍ତ ଓଷ୍ଠଧାର
କହ କହ କହ ଭଲ ବାରେ
କପାଇଁ ଭସାଅ ଏତେ ଅନୁଗତ ଜନେ ଶୋକ-ପାରାବାରେ ?

ବିଶ୍ୱନାଥ-ଚନ୍ଦନର ଉଦ୍ଘାଟନସାର

ରହ ରହ ସର୍ବେ—ଏବେ ଜଡ଼ତନୁ ତୋଳିବାରେ ମଥା
ଭାଜିବ ସପନଭୋଳ ବିବଶାଙ୍ଗୁ ଘର୍ଘ ମାରିବଟା;
ବିଜଣିବ ମୁଖେ ପୁଣି ମଧୁମଖା ବଚନମ.ଧୁରା,
ତାପିତ ଏ ଶତ ବକ୍ଷ ପୁଲକରେ ଉଠିବ ରେ ଫୁରି ।
ହେ ଦେବତା ଜାତିର ଜନକ !
ତବ ସ୍ମିତ-ରଶ୍ମି ପାତେ ଝଟକାଅ ଆନନ୍ଦ-କନକ !

ସତେ ସତେ ସତେ ତେବେ ସତ୍ୟର୍ଷି ହେ ! ଯାଇଅଛ ଚାଲି
ଭଙ୍ଗୁର ଜୀବନ-ପାତ୍ର କ୍ଷଣକରେ କରିଦେଇ ଖାଲି !
ଶୂନ୍ୟ ହେଲ ଆଜି ତବ ଆଦର୍ଶର ବିନ୍ଧ୍ୟାଦ୍ରି ଶିଖର
ନୟନର ଅଶ୍ରୁଧାରେ ରହିଲ ଯା ସ୍ମୃତି ମାତର !
ଅମଳିନ ତବ ସ୍ମୃତିରେଖା
ଏ ଜାତିର ଇତିହାସେ ଚିରଦିନ ସ୍ୱର୍ଣ୍ଣାକ୍ଷରେ ଲେଖା ।

ବିପୁଳସାହସଧର ଧୀରବର ତ୍ରଙ୍କାପାରମିତ !
ଶତଯୋଧ-ମନୋବଳ ଥିଲା ତବ ଅପାର ଅମିତ ।
ସମଗ୍ର ଜୀବନ ତୁମେ ରଚିଅଛ ପ୍ରଚଣ୍ଡ ତାଣ୍ଡବ
ଦହିଅଛ ଭ୍ରଷ୍ଟାଚାର- କୁସଂସ୍କାର- ଦୁର୍ନୀତି-ଖାଣ୍ଡବ ।
ସମାଜର ହେ ବୀର ନାୟକ !
ହୋଇ ନାହିଁ ଲକ୍ଷ୍ୟଚ୍ୟୁତ କେବେ ତବ ଅବ୍ୟର୍ଥ ସାୟକ ।

ଅକ୍ଲାନ୍ତ ଅଦମ୍ୟ ଶ୍ରମେ ଜୀବନର ଶେଷ ଶ୍ୱାସଯାଏ
ପାଳିଛ କର୍ତ୍ତବ୍ୟ ତବ— ନିରୁତ୍ସାହେ ଥକି ନାହିଁ ଠାଏ ।
ଅତିକ୍ରମି ଲକ୍ଷ ବାଧା ସାଧିଅଛ ନିର୍ଭୟେ ଏକାକୀ
ବୁଝିଛ ଯା ସତ୍ୟ ଯେବେ— ଯାଇ ନାହଁ ରଖି କିଛି ବାକୀ ।
ହେ ବିଜୟୀ ଅମୃତସନ୍ତାନ !
ନିୟତ ନାଦିତ ତବ ପ୍ରାଣତନ୍ତ୍ରେ ବିଶ୍ୱ-ଐକ୍ୟତାନ ।

ଶତଦ୍ରୁଶେଖର

ଉତ୍କଳ ଭାରତୀ-ତରୀ- କର୍ଣ୍ଣଧାର ହେ ଉନ୍ନତମନା !
କାଣ୍ଡାରୀ ବିହୁନେ କହ କେମ୍ନେ ଆଉ ହେବ ତା ତୁଳନା ?
ତିରୋଭାବେ ତବ ଆଜ ପିତୃହୀନ ସାହିତ୍ୟ-ମନ୍ଦିର
ତା ଟେକ ସମ୍ମାନପାଇଁ ହେବ କାର ହୃଦୟ ମନ୍ଦିର ?
ଶୃଦ୍ଧନସ୍ତୁ ହେ ସାଧୁ ସାଧକ !
ନାହିଁ ଆନ କେହି ତାର ଆଜୀବନ- ସୁଷମାବର୍ଦ୍ଧକ ।

ଅକ୍ଷୟ ଯୌବନ ତବ ଥିଲା ଅଙ୍ଗେ ବାର୍ଦ୍ଧକ୍ୟଜୀବନେ
ଅମର ପ୍ରତିଭା ଯେଣ ଜନ୍ମିଥିଲ ଉତ୍କଳଭୁବନେ,
ନିର୍ମାଣିଲ ଭଗ୍ନସ୍ତୂପେ ଅମରାର ସୁରଭି 'ନନ୍ଦନ'
ତୁମରି ତୁଳନା ତୁମେ ମହାମନା ହେ ବୀରବନ୍ଦନ !
'ସାହିତ୍ୟ'ରେ ସାଇତି ସ୍ମୃତିରେ
ଜାଗୃତିର ମହାମନ୍ତ୍ର ଦେଇଗଲ ସୁପ୍ତ ଏ ଜାତିରେ ।

ଆସିଥିଲ ହସିହସି ବିଶ୍ୱକୋଳେ, ଗଲ ହସି ହସି
ଜଟିଳ ଜୀବନପଥେ ରଖି ନାହିଁ ବନ୍ଧୁ ହେଲେ ମସି;
ବେଦନ ବିଷାଦ ଶୋକ ଆତୁରତା ତିଳେ ନାହିଁ ପଶି
ଅନାବିଳ ହୃଦେ ତବ— ଯାଇଅଛ ଅମୃତ ବରଷି ।
ଶୁଣି ଶୂନ୍ୟେ ଅମର ସଂଗୀତ
ସେ ଗାନେ ମିଶିବା ଲାଗି ଉଚ୍ଛକିତ ହେଲା ତବ ଚିତ୍ତ ।

ଏଇ ଯେ ଜଳିଲା ଶେଷେ ଶିଖା ତୋଳି ଲହଲହ ଚିତା
ଲେଲିହାନ ମୁଖେ ତାର ଲୀନ ହେଲେ ସାହିତ୍ୟର ପିତା ।
ସେହି ଚିତାଭସ୍ମ-କୋଳେ ଯତେ ଦେଖ ରମ୍ୟ ଉଜ୍ଜଳ
ତୋଳିବ କେ ଆସ ଧାଇଁ ଶୋଭାସହ ବିକଚ କମଳ;
ସୌରଭେ ତା ମହକଇ ମହୀ
ଜାତି-ଦେବତାର ପିଣ୍ଡି ଏତିକ ଯେ ଯାଇଅଛି ରହି ।

—ଶ୍ରୀ କୃଷ୍ଣଚନ୍ଦ୍ର କର

## ୧. ଗୁଣାବଳି

'ସ୍ୱର୍ଗତ ଶ୍ରୀ ବିଶ୍ୱନାଥ କର'—ବିଶ୍ୱନାଥ ବାବୁ ସର୍ବାଞ୍ଚଳବାସୀ ଉତ୍କଳୀୟ ଜାତିର ହୃଦୟ-ସିଂହାସନରେ ସ୍ନେହମୟ ସ୍ଥାନ ଅଧିକାର କରିଥିଲେ । ଏପରି କି ସେ ଜୀବିତ ଥିଲାବେଳେ ଯେଉଁମାନେ ତାଙ୍କୁ ଅସମ୍ମାନ-ଚକ୍ଷୁରେ ଦେଖୁଥିଲେ, ବ୍ୟଙ୍ଗବିଦ୍ରୂପ କରୁଥିଲେ, ଆଜି ତାଙ୍କ ଅନ୍ତର୍ଦ୍ଧାନରେ ସେମାନେ ମଧ୍ୟ ବାଷ୍ପପୂରିତଲୋଚନ ହୋଇଛନ୍ତି । ସମାଜ ପ୍ରସଙ୍ଗରେ, ରାଜନୀତି ପ୍ରସଙ୍ଗରେ, ଧର୍ମ ପ୍ରସଙ୍ଗରେ, ସାହିତ୍ୟ ପ୍ରସଙ୍ଗରେ ଯେଉଁମାନେ ତାଙ୍କର ବିରୋଧବାଦୀ ଥିଲେ, ଆଜି ସେମାନେ ମଧ୍ୟ ତାଙ୍କ ତିରୋଧାନରେ ମ୍ରିୟମାଣ । ଏଥିରୁ ଏତିକିମାତ୍ର ବୁଝାଯାଉଛି ଯେ, ଯେଉଁ ଦେବସୁଲଭ ମନୁଷ୍ୟତା ଜଗତରେ ଶତ୍ରୁମିତ୍ର ନିର୍ବିଶେଷରେ ପୂଜା ପାଏ, ତାଙ୍କଠାରେ ତାହାହିଁ ଥିଲା । ସେ ସରସ୍ୱତୀସେବାପାଇଁ, ସତ୍ୟର ସନ୍ଧାନପାଇଁ, ନ୍ୟାୟମାର୍ଗାନୁସରଣପାଇଁ, ଧର୍ମସାଧନପାଇଁ ଜୀବନ ଉତ୍ସର୍ଗ କରିଥିଲେ ।

ଏଥିଲାଗି ଆଜି ତାଙ୍କୁ ହରାଇ ଉତ୍କଳ ସାଧକହୀନ ହୋଇଅଛି, ଉତ୍କଳମାତା ସୁପୁତ୍ରହୀନା ହୋଇଅଛନ୍ତି । ସାମାଜିକ, ସାଂସାରିକ, ସାହିତ୍ୟିକ, ରାଜନୀତିକ, ଧର୍ମନୀତିକ, ସବୁ କ୍ଷେତ୍ରରେ ତାଙ୍କର ସତ୍ୟନିଷ୍ଠା, ଈଶ୍ୱରବିଶ୍ୱାସ, ବିଶ୍ୱାସ ଅନୁଯାୟୀ କର୍ମ ଓ ନୈତିକ ସାହସ ଦେଖି ମୁଁ ମୁଗ୍ଧ ଓ ସ୍ତମ୍ଭିତ ହୋଇଅଛି । ଅନ୍ୟ ବ୍ୟକ୍ତିର ବିପରୀତ ମତବାଦପ୍ରତି ଉଦାରତା ମଧ୍ୟ ତାଙ୍କର ଅନନ୍ୟସାଧାରଣ ଥିଲା ।

—ରାୟବାହାଦୁର ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ

'ପୁଣ୍ୟାତ୍ମା ବିଶ୍ୱନାଥ'—ବାହାରେ ଗୋଟିଏ ଭାବ ଓ ଭିତରେ (ଅନ୍ୟ)ଏକ ଭାବ ତାଙ୍କ ପ୍ରକୃତିରେ କେବେହେଲେ ଆମେ ଲକ୍ଷ୍ୟ କରି ନାହୁଁ । ଏ ଭାବ ତାଙ୍କ ପିତୃପ୍ରକୃତିଗତ ବା ଜନ୍ମଗତ ସଂସ୍କାର ବୋଲିବାକୁ ହେବ ।

—ପଣ୍ଡିତ ଶ୍ରୀ କୁଳମଣି ଦାଶ କାବ୍ୟତୀର୍ଥ

'ବିଶ୍ୱନାଥ-ଶୋକସ୍ମୃତି'—ଦେଶାନ୍ତରର ଦାରୁଣ ବନ୍ଧନ, ସମାଜର ଭ୍ରୂକୁଟିଭଙ୍ଗୀ ଯାହାଙ୍କର କର୍ତ୍ତବ୍ୟ ବୁଦ୍ଧିର ସ୍ରୋତକୁ କେବେହେଁ ବିପରୀତ ମୁଖକୁ

ଯେ ବାଇପାରି ନାହିଁ, ଯେ ନିଜ ଜୀବନ ଦେଇ ମନୁଷ୍ୟତ୍ୱର ଆଦର୍ଶ ଆମ୍ଭମାନଙ୍କ ସମ୍ମୁଖରେ ଧାରଣ କରିଅଛନ୍ତି, ସେ କେବଳ ପୁରୁଷସିଂହ ବିଶ୍ୱନାଥ ।

—ଶ୍ରୀ ଶଶିଭୂଷଣ ରାୟ

'ବିଶ୍ୱନାଥ-ବିୟୋଗ'—ବିଶ୍ୱନାଥ ଜଣେ ଅସାଧାରଣ ପ୍ରତିଭାଶାଳୀ ବ୍ୟକ୍ତି ଥିଲେ । ତାଙ୍କର ଜୀବନ କର୍ମମୟ ଥିଲା । ସର୍ବସାଧାରଣ କ୍ଷେତ୍ରରେ ସେ ବହୁତ କାର୍ଯ୍ୟ କରୁଥିଲେ । ତାଙ୍କର ପ୍ରତିଷ୍ଠା-ଲାଳସା ନ ଥିଲା । ପୂର୍ଣ୍ଣ ସତୁରି ବର୍ଷ ବୟସର ନିକଟବର୍ତ୍ତୀ ହୋଇଥିଲେହେଁ ଜୀବନର ଶେଷକାଳପର୍ଯ୍ୟନ୍ତ ସେ ମଙ୍ଗ ଧରି ବସିଥିଲେ । ତାଙ୍କ ପରି ଚିନ୍ତାଶୀଳ ଲେଖକ ଓ ତେଜସ୍ୱୀ ବକ୍ତା ବିରଳ ।

ମନୁଷ୍ୟର ଅବୟବ ଦେଖି ତାହାର ଚରିତ୍ର ନିର୍ଣ୍ଣୟ କରିବାର କ୍ଷମତା ଯାହାର ଥିବ, ସେ ବିଶ୍ୱନାଥଙ୍କ ସଂସ୍ରବରେ ଆସିଥିଲେ ନିଶ୍ଚେ କହିଥିବ—ଏ ମୂର୍ତ୍ତିଟି ସାମାନ୍ୟ ମୂର୍ତ୍ତି ନୁହେଁ, ଏହା ବହୁ ସଦ୍‌ଗୁଣର ଆଧାର । ନିର୍ମଳ ଗୁଣ, ନିର୍ମଳ ଚରିତ୍ର, ଧର୍ମନିଷ୍ଠା, ସତ୍ୟନିଷ୍ଠା, କର୍ମନିଷ୍ଠା, ସରଳତା, ନମ୍ରତା, ଏ ଗୁଣମାନ ତାଙ୍କଠାରେ ଏକରୁ ଆରେକ ବଳି ଥିଲା । ମନ୍ଦ ଭାବ, ଅପବିତ୍ର ଭାବ ତାଙ୍କ ମନରେ ପ୍ରବେଶ କରିପାରୁ ନ ଥିଲା । ସେ ସ୍ୱାଧୀନଭାବରେ ଯେଉଁ ମତ ଗଠନ କରୁଥିଲେ, ଦୃଢ଼ଭାବରେ ତାହା ଘୋଷଣା କରୁଥିଲେ ଏବଂ ସହଜରେ ମତ ପରିବର୍ତ୍ତନ କରୁ ନ ଥିଲେ । ଯେ ତାଙ୍କ ସଂସ୍ରବରେ ଆସୁଥିଲା, ସେ ତାଙ୍କ ଗୁଣରେ ମୁଗ୍‌ଧ ହେଉଥିଲା, ତାଙ୍କ ସ୍ନେହବନ୍ଧନ ତୁଟାଇପାରୁ ନ ଥିଲା । ହୁଏତ କେହିତାଙ୍କ ମୁହଁରୁ ଅଶିଷ୍ଟ ବାକ୍ୟ ଶୁଣି ନ ଥିବ । ଆଡ଼ମ୍ବର ତାଙ୍କର ସ୍ୱଭାବବିରୁଦ୍ଧ ଥିଲା ।

—ରାୟବାହାଦୂର ଶ୍ରୀ ଶ୍ରୀକୃଷ୍ଣ ମହାପାତ୍ର

'ଉତ୍କଳସାହିତ୍ୟ'—ଉତ୍କଳରେ ନୂତନ ଶିକ୍ଷାପଦ୍ଧତି ପରେ ପରେ ଆରମ୍ଭ ହେଲା । ଇଂରାଜୀ ଶିକ୍ଷାପ୍ରାପ୍ତ ଲୋକଙ୍କର ପ୍ରଥମେ ଘୋର ବିତୃଷ୍ଣା ଥିଲା । ବିଶ୍ୱନାଥ ପ୍ରାୟ ସେହି ଯୁଗର ଲୋକ । ସେ ବହୁତଗୁଡ଼ାଏ ଇଂରାଜୀ ପଢ଼ି ନ ଥିଲେ କିଂବା ବିଶ୍ୱବିଦ୍ୟାଳୟର ଉଚ୍ଚ ଉପାଧିରେ ଭୂଷିତ ହୋଇପାରି ନ ଥିଲେ; କିନ୍ତୁ ସେ ଯାହା କିଛି ଜ୍ଞାନ ଲାଭ କରିଥିଲେ, ତାହା ବଡ଼ ଉଜ୍ଜ୍ୱଳତର । ସେ ସାରଗ୍ରାହୀ

ପଣ୍ଡିତ ଥିଲେ—ପକ୍ଷବଗ୍ରାହୀ ନ ଥିଲେ । ଦେଶର ଅଭାବ-ଅସୁବିଧା ସେ ପ୍ରାଣରେ ଅନୁଭବ କରିପାରିଥିଲେ ଏବଂ ସେସବୁର ଦୂରୀକରଣ ଲାଗି ତାଙ୍କ ମନରେ ତୀବ୍ର ଉନ୍ମାଦନା ଜନ୍ମିଥିଲା । ବିଶ୍ୱନାଥଙ୍କ ସହିତ କାହାରି କାହାରି ମତଭେଦ ଥାଇପାରେ; କିନ୍ତୁ ଜାତିର କଲ୍ୟାଣ ଲାଗି, ଜାତିର ହିତ ଲାଗି, ଜାତୀୟ ସାହିତ୍ୟର ଉନ୍ନତି ଲାଗି ସେ ଯେଉଁତକ ଦାନ କରିଯାଇଛନ୍ତି, ତାହାର ମୂଲ୍ୟାବଧାରଣ ଆମ୍ଭମାନଙ୍କର କର୍ତ୍ତବ୍ୟ, କାରଣ ସେ ଦାନ ଜାତିର ଧନ ।

ବିଶ୍ୱନାଥଙ୍କର ଆତ୍ମପ୍ରତ୍ୟୟ ଥିଲା; ଯେତେବେଳେ ଯେଉଁ କଥା କର୍ତ୍ତବ୍ୟ ବୋଲି ସେ ବିଶ୍ୱାସ କରୁଥିଲେ, ସେ କାର୍ଯ୍ୟ କଲେ କେହି ନିନ୍ଦା କରିବ ବା ସ୍ତୁତି କରିବ, ସେଥିପ୍ରତି ତିଳେମାତ୍ର ଭ୍ରୂକ୍ଷେପ କରୁ ନ ଥିଲେ । ଏହା ତାଙ୍କ ଜୀବନର ବିଶେଷତ୍ୱ ।

ଅଦମ୍ୟ ଧୈର୍ଯ୍ୟ ଓ ସାହସ ବଳରେ ସେ ନିଜର ବ୍ୟକ୍ତିତ୍ୱ ଫୁଟାଇ-ପାରିଥିଲେ ଏବଂ ସମଗ୍ର ଉତ୍କଳରେ ଜଣେ ଲବ୍ଧପ୍ରତିଷ୍ଠ ଲୋକ ହୋଇପାରି-ଥିଲେ । ଅଳ୍ପ ଲୋକଙ୍କ ଭାଗ୍ୟରେ ଏପରି ଘଟେ । 'ଉତ୍କଳ ସାହିତ୍ୟ ସମାଜ' ଓ ଉତ୍କଳ ସାହିତ୍ୟ ସମାଜ ମନ୍ଦିର 'ଶ୍ରୀରାମଚନ୍ଦ୍ର ଭବନ' ସଂସ୍ଥାପନ କାର୍ଯ୍ୟରେ ବିଶ୍ୱନାଥଙ୍କ ହାତ ଥିଲା ଏବଂ ବିଶ୍ୱନାଥ ଉକ୍ତ ସମାଜ ସହିତ ଆଜୀବନ ସଂପୃକ୍ତ ଥିଲେ ।

ଜଣେ ଟାଣୁଆ ପୁଅ ଚାଲିଗଲା; ଏଥିରେ ସମସ୍ତ ଉତ୍କଳର କ୍ଷତି ହୋଇଅଛି । ବିଶ୍ୱନାଥଙ୍କ ଜୀବନୀରୁ ଅନେକ ଶିକ୍ଷଣୀୟ ବିଷୟ ଉତ୍କଳପକ୍ଷରେ ଉପାଦେୟ ।

—ଉତ୍କଳ ଶ୍ରୀ ଜଗବନ୍ଧୁ ସିଂହ

'ଶୋକୋଚ୍ଛ୍ୱାସ'—ବାଲ୍ୟକାଳରେ ମୋର ସାଂସାରିକ ଅବସ୍ଥା ନିତାନ୍ତ ମନ୍ଦ ଥିଲା । ମୁଁ ଅପର ପ୍ରାଇମେରି ବୃତ୍ତିଟିଏ ପାଇ ଭକ୍ତକବି ମଧୁସୂଦନଙ୍କ କଟକ ଟାଉନ ସ୍କୁଲର ସର୍ବନିମ୍ନ ଶ୍ରେଣୀରେ ନାମ ଲେଖାଇଲି । ସେସମୟରେ ବିଶ୍ୱନାଥ ବାବୁ ଉକ୍ତ ଟାଉନ ସ୍କୁଲ-ଅନ୍ତର୍ଗତ ମଧ୍ୟଇଂରାଜୀ ବା ମାଇନର ସ୍କୁଲର ହେଡ୍‌ମାଷ୍ଟର ଥିଲେ । ...............ଏହିସବୁ କଥା ବିବେଚନା କରି ବିଶ୍ୱନାଥ ବାବୁ ମତେ ଡବଲ୍ ପ୍ରମୋସନ୍ (ଦୋହରି କ୍ଲାସଡିଆ) ଦେଇ ଯେକୌଣସିପ୍ରକାରେ ପ୍ରାୟ ଦେଢ଼ ବର୍ଷ କି ଅଢ଼େଇ ବର୍ଷମଧ୍ୟରେ 'ମାଇନର

ପ୍ରଥମ (1st) ଶ୍ରେଣୀକୁ ନେଇଗଲେ । କିନ୍ତୁ ଏତେ ଚେଷ୍ଟା ସତ୍ତ୍ୱେ ମାଇନର ଶେଷ ପରୀକ୍ଷାର ପାଞ୍ଚ କି ଛଅ ମାସ ପୂର୍ବରୁ ମୋ ବୃତ୍ତିର ମିଆଦ ଶେଷ ହୋଇଗଲା । ମତେ ଅର୍ଥସାହାଯ୍ୟ (ମାସିକ ତିନି ଟଙ୍କା ମାତ୍ର) ଦିଆଇବାପାଇଁ ଗୁରୁଦେବ ବିଶ୍ୱନାଥ କେତେ ଆଡ଼େ କେତେ ଚେଷ୍ଟା କଲେ; କିନ୍ତୁ ସେସମସ୍ତ ଚେଷ୍ଟା ନିଷ୍ଫଳ ହେଲା । ଶେଷରେ ଦିନେ ସକାଳେ (ସମ୍ଭବତଃ ଜୁଲାଇ ମାସର ପ୍ରାରମ୍ଭରେ) ମୁଁ ମୋ ବହିପତ୍ର ବାନ୍ଧି ଗ୍ରାମକୁ ଫେରିଯିବାକୁ ବାହାରିଲି ଓ ଯିବାପୂର୍ବରୁ ଗୁରୁଦେବଙ୍କଠାରୁ ବିଦାୟ ନେବାକୁ ତାଙ୍କ ହଡ଼ହଡ଼ିଘାଟସ୍ଥ ବସାକୁ ଗଲି । ଗୁରୁଦେବ ସେତେବେଳେ ଖଣ୍ଡିଏ ପୁସ୍ତକ ପଢୁଥିଲେ । ମୁଁ ତାଙ୍କ ଆଗରେ ଠିଆ ହୋଇ 'ମୁଁ ଗାଆଁକୁ ଯାଉଛି' ଏତିକି କହି କାନ୍ଦିପକାଇଲି । ମୋ କଷ୍ଟ ଦେଖି ଦୟାସାଗର ଗୁରୁଦେବ ଆଉ ସମ୍ଭାଳିହୋଇ ନ ପାରି ତତ୍‌କ୍ଷଣାତ୍ କହିଲେ, "ଏମିତି କାହିଁକି ହଉଚ ? ପଢ଼ାପଢ଼ି କରିବ ଯାଅ । ନିତି ଆମ ବସାରେ ଗଣ୍ଡାଏ ଗଣ୍ଡାଏ ଖାଇ ଯିବ ।"

ମୋ ମନ ଆନନ୍ଦରେ ନାଚିଉଠିଲା । ମୋ ବସା ସ୍କୁଲ୍‌ଘରଭିତରେ ଥିଲା । ବର୍ଷାକାଳରେ ସେଠାରୁ ହଡ଼ହଡ଼ିଘାଟକୁ ନିତି ଖାଇବାପାଇଁ ଯିବାରେ ଅସୁବିଧା ଘଟିଲା । ଏହା ଦେଖି ଗୁରୁଦେବ ମତେ ନିଜ ବସାକୁ ନେଇଗଲେ ଓ ପୁତ୍ରବତ୍ ପାଳନ କରି ପଢ଼ାଇଲେ । ମୁଁ ସେ ବର୍ଷ ମାଇନର ପରୀକ୍ଷାରେ ଓଡ଼ିଶାରେ ପ୍ରଥମ ସ୍ଥାନ ଅଧିକାର କଲି ଓ ମାସିକ ଦଶ ଟଙ୍କା ବୃତ୍ତି ପାଇଲି (ସରକାରୀ ମାଇନର ବୃତ୍ତି ପାଞ୍ଚ ଟଙ୍କା ଏବଂ କ୍ଷେତ୍ରତତ୍ତ୍ୱ ଓ କ୍ଷେତ୍ରପରିମାଣରେ ଓଡ଼ିଶାରେ ପ୍ରଥମ ହୋଇଥିବାରୁ ସେଥିପାଇଁ ବିଜୟନଗର ବୃତ୍ତି ପାଞ୍ଚ ଟଙ୍କା) । ତାପରେ ଏଣ୍ଟ୍ରାନ୍‌ସ୍ ପାସ୍ କରି ପନ୍ଦର ଟଙ୍କା ବୃତ୍ତି ପାଇଲି ଓ ଏଫ୍.ଏ. ପାସ୍‌କରି କୋଡ଼ିଏ ଟଙ୍କା ବୃତ୍ତି ପାଇ ବି.ଏ. ପାସ୍ କଲି । ଏ ସମସ୍ତର ନିଦାନ ଗୁରୁଦେବ ବିଶ୍ୱନାଥଙ୍କର ଅପାର ଦୟା ଓ ସ୍ନେହ । ............ ତାଙ୍କର ଦୟା ଓ ସ୍ନେହ କେବଳ ମୋହରିଠାରେ ସୀମାବଦ୍ଧ ନ ଥିଲା । ତାଙ୍କ ଛାତ୍ରମାନଙ୍କୁ ସେ ଯେଉଁ ଅମୂଲ୍ୟ ନୀତିଶିକ୍ଷାମାନ ଦେଇଯାଇଅଛନ୍ତି, ସେସବୁ ସେମାନଙ୍କର ଆଜୀବନ ନୈତିକ ସମ୍ବଳ ହୋଇ ରହିଚି । ମୋ ନିଜ ଜୀବନରେ ମୁଁ ଦେଖିଅଛି, ତାଙ୍କ ଦୃଷ୍ଟାନ୍ତର ଓ ଉପଦେଶାବଳୀର ପବିତ୍ର ସ୍ମୃତି ମୋର ଚିରସହଚର ହୋଇ ମତେ ସଂସାରମାର୍ଗରେ ପଦେ ପଦେ ବିପଦରୁ ରକ୍ଷା କରିଅଛି ଓ କରୁଅଛି ।'

—ରାୟସାହେବ ଶ୍ରୀ ଆନନ୍ଦଚନ୍ଦ୍ର ପଣ୍ଡା

'ସ୍ମୃତିପଥରେ ବିଶ୍ୱନାଥ'—ସାମାଜିକତା ଦିଗରୁ ଦେଖିଲେ ବିଶ୍ୱନାଥଙ୍କୁ ଶ୍ରଦ୍ଧା ନ କରି ରହିହୁଏ ନାହିଁ । ଶାସ୍ତ୍ରରେ ଅଛି 'କନ୍ୟାପ୍ୟେବଂ ପାଳନୀୟା ଶିକ୍ଷଣୀୟାତିଯତ୍ନତଃ' । ସେ ପୁତ୍ରମାନଙ୍କୁ ଶିକ୍ଷା ଦେବାପାଇଁ ଯେପରି ଯତ୍ନ କରିଥିଲେ, କନ୍ୟାମାନଙ୍କର ଶିକ୍ଷା ନିମିତ୍ତ ତାଙ୍କର ଯତ୍ନ ତହିଁରୁ କୌଣସି ଅଂଶରେ ନ୍ୟୂନ ନ ଥିଲା । ତାହାଙ୍କର ସେହି ଯତ୍ନ ଯୋଗୁଁ ମହାନନ୍ଦ ଆଜି 'ସାହିତ୍ୟ ପ୍ରେସ'ର ଗୃହକ ଓ କନ୍ୟାମାନେ ସୁଶିକ୍ଷିତା । ଭ୍ରାତା ଓ ଭ୍ରାତୁଷ୍ପୁତ୍ରମାନେ ମଧ୍ୟ ତାଙ୍କ ସ୍ନେହପୂର୍ଣ୍ଣ ଯତ୍ନରୁ ବଞ୍ଚିତ ହୋଇ ନାହାନ୍ତି । ସେ ଯେଉଁମାନଙ୍କ ସହିତ ବନ୍ଧୁତା-ସୂତ୍ରରେ ଆବଦ୍ଧ ଥିଲେ, ସମସ୍ତେ ତାଙ୍କ ଗୁଣରେ ଆକୃଷ୍ଟ ।

ବିଶ୍ୱନାଥ ସ୍ୱାସ୍ଥ୍ୟ ରକ୍ଷା କରିବାପାଇଁ ସଦାସର୍ବଦା ଯତ୍ନଶୀଳ ଥିଲେ । ପରିଚ୍ଛନ୍ନତା ଯେ ଧର୍ମାତ୍ମା ପୁରୁଷର ଗୋଟିଏ ଲକ୍ଷଣ, ତାହା ତାଙ୍କଠାରେ ପରିଦୃଷ୍ଟ ହେଉଥିଲା । ସେହି ଦୀର୍ଘଶ୍ମଶ୍ରୁଧାରୀ, ଗୌରବର୍ଣ୍ଣ, ରୁଚିସଙ୍ଗତ ବେଶଭୂଷାସଂପନ୍ନ ବିଶ୍ୱନାଥ ରାଜମାର୍ଗରେ ଚାଲିଯିବା ସମୟରେ ଲୋକେ ସେହି ସୌମ୍ୟ ମୂର୍ତ୍ତି ଦର୍ଶନ କରିବା ସଙ୍ଗେ ସଙ୍ଗେ ଆତ୍ମପ୍ରସାଦ ଅନୁଭବ କରୁଥିଲେ । ସେ ସ୍ୱାସ୍ଥ୍ୟର ନିୟମମାନ ପାଳନ କରି ସୌମ୍ୟତ୍ୱ ଅର୍ଜନ କରିଥିଲେ । ସେ ଯେଉଁପରି ଅଳ୍ପାହାରୀ, ସେହିପରି ଭ୍ରମଣ-ବ୍ୟାୟାମପ୍ରିୟ ଥିଲେ । ସର୍ବଦା କର୍ମରେ ପ୍ରବୃତ୍ତ ରହିବା ତାହାଙ୍କର ବିଶେଷତ୍ୱ । ଆଳସ୍ୟକୁ ସେ ସର୍ବଦା ଘୃଣା କରୁଥିଲେ ଏବଂ ଯେଉଁପରିଭାବରେ ଜୀବନ ଯାପନ କଲେ ଆଳସ୍ୟର ଆକ୍ରମଣରୁ ରକ୍ଷା ପାଇ-ପାରିବେ, ସେହିପରିଭାବରେ କାଳାତିପାତ କରୁଥିଲେ ।

ବିଶ୍ୱନାଥଙ୍କ ଦୀର୍ଘ ଜୀବନ ବହୁ ସଦ୍‌ଗୁଣର ସମଷ୍ଟି । ସେ ଘରେ, ବାହାରେ, ସଭାସମିତିରେ, ସର୍ବତ୍ର ନିର୍ଭୀକ । ସରଳତା ତାହାଙ୍କର ଅନ୍ୟତମ ଗୁଣ । ତେଣୁ କୌଣସିଠାରେ କୁଟିଳତା ଦେଖିଲେ ତାହାଙ୍କ ପ୍ରାଣ ବ୍ୟଥିତ ହେଉଥିଲା । ତାଙ୍କପରି ମନସ୍ୱୀ ଉତ୍କଳରେ ବିରଳ । ସେହି କ୍ଷୀଣ ତନୁମଧ୍ୟରେ କେଡ଼େ ବଡ଼ ମନର ବାସ ! ସେ ଏହି ମନସ୍ୱିତା ଯୋଗୁ ବଙ୍ଗୋତ୍କଳର ମନସ୍ୱୀ ବ୍ୟକ୍ତିମାନଙ୍କ ସାହଚର୍ଯ୍ୟ ଲାଭ କରିପାରିଥିଲେ । କ୍ଷୁଦ୍ର ଗୃହ, କ୍ଷୁଦ୍ର ଉଦ୍ୟାନ, କ୍ଷୁଦ୍ର ଯାନ ପ୍ରଭୃତି ତାହାଙ୍କ ମନରେ ସ୍ଥାନ ପାଉ ନ ଥିଲା । କ୍ଷୁଦ୍ର ଭାବନାର ମଧ୍ୟ ସେ ପୋଷକ ନ ଥିଲେ । ହୀନଭାବରେ ଜୀବନଯାପନ ତାହାଙ୍କ କଳ୍ପନାର ଅତୀତ । ସେ ବଡ଼ ହୋଇ ଜନ୍ମ ଲାଭ କରିଥିଲେ, ବଡ଼ ହୋଇ ଚାଲିଯାଇଛନ୍ତି । ସେ ଚିରକାଳ ଭୋଗୀ—କାର୍ପଣ୍ୟ କେବେହେଁ ତାଙ୍କଠାରେ ଦେଖାଯାଇ ନାହିଁ ।

ବିଶ୍ୱନାଥଙ୍କ ସମସ୍ତ ମାନସିକ ଗୁଣମଧ୍ୟରେ ଆତ୍ମସମ୍ମାନ ଉଚ୍ଚତମ ସ୍ଥାନ ଅଧିକାର କରିଥିଲା । ସେ ଆତ୍ମସମ୍ମାନର ପ୍ରତିକୂଳ କୌଣସି କାର୍ଯ୍ୟ ବା ଚିନ୍ତାପ୍ରତି ମନ ବଳାଇ ନାହାନ୍ତି । ଯେଉଁମାନେ ତାଙ୍କ ସଂପର୍କରେ ଆସିଛନ୍ତି, ସମସ୍ତେ ତାଙ୍କର ଏହି ଗୁଣରେ ଚମତ୍କୃତ ହୋଇଅଛନ୍ତି । ବିଶ୍ୱନାଥ ଆତ୍ମସମ୍ମାନବଳରେ ରାଜା, ମହାରାଜା, ଜମିଦାର ପ୍ରଭୃତି ସର୍ବଶ୍ରେଣୀୟ ଲୋକଙ୍କ ଶ୍ରଦ୍ଧାର ପାତ୍ର ହୋଇଥିଲେ । ତାଙ୍କ ଅମର ଆତ୍ମା ଯେଉଁ ସଦ୍‌ଗୁଣରାଜିରେ ଭୂଷିତ ଥିଲା, ଭଗବତ୍‌କୃପାରୁ ଉତ୍କଳସନ୍ତାନଗଣ ସେଗୁଡ଼ିକ ଅର୍ଜନ କରନ୍ତୁ । ବିଶ୍ୱନାଥଙ୍କ ମହିମାମୟ ଜୀବନଯାପନ ସାର୍ଥକ ହେଉ ।

—ଶ୍ରୀ କୃଷ୍ଣଚନ୍ଦ୍ର ସେନଗୁପ୍ତ

'ସ୍ୱର୍ଗତ ବିଶ୍ୱନାଥ'—ଯେତେବେଳେ ଓଡ଼ିଶାରେ ଆଧୁନିକ ଶିକ୍ଷାର କେବଳ ଅରୁଣ-ଆଭାମାତ୍ର ପଡ଼ୁଥିଲା, ଆଦର୍ଶ ନ ଥିଲା, ଉତ୍ସାହ ନ ଥିଲା, ସୁଯୋଗ ବା ସୁବିଧା ନ ଥିଲା, ସେତେବେଳେ ବିଶ୍ୱନାଥ ଗୋଟିଏ ସାମାନ୍ୟ ପଲ୍ଲୀ-ବେଷ୍ଟନୀରୁ ବାହାରି ପଡ଼ିଥିଲେ ନେପୋଲିଅନଙ୍କ ପରି । ଯୌବନର ପ୍ରାରମ୍ଭରେ ସଖାସହାୟଶୂନ୍ୟ ହୋଇ କଟକ ନଗରର ଅଗଣିତ ଜନତାମଧ୍ୟରେ ସେ············ଅଜ୍ଞାତ ବା ଅବହେଳିତ ହୋଇ ରହିପାରିଲେ ନାହିଁ । ବିଶ୍ୱନାଥ ଯେତେବେଳେ କର୍ମକ୍ଷେତ୍ରରେ ପଦାର୍ପଣ କଲେ, ତାଙ୍କ ବଜ୍ରଗମ୍ଭୀର ଧ୍ୱନି ସମସ୍ତଙ୍କୁ ବିସ୍ମିତ କରିପକାଇଲା । (ବୃଦ୍ଧଙ୍କ) ମଧୁସୂଦନ ତାଙ୍କ ଧ୍ୱନିରେ ଆକୃଷ୍ଟ ହୋଇ ପ୍ରଥମେ ତାଙ୍କ ଉପରେ ନଜର ପକାଇଲେ । ମଧୁବାବୁଙ୍କର ତୀକ୍ଷ୍ଣ ଅନ୍ତର୍ଦୃଷ୍ଟି ବିଶ୍ୱନାଥଙ୍କ ଯୁବପ୍ରାଣରେ କି ଶକ୍ତିର ପରିଚୟ ପାଇଲା କେଜାଣି, ସେହି ଦିନଠାରୁ ସେ ତାଙ୍କୁ ଆପଣାର କରିନେଲେ । ବିଶ୍ୱନାଥ ବାବୁଙ୍କର ମଧୁବାବୁଙ୍କ ସଂପର୍କରେ ଆସିବା ଏକ ଅଭିନବ ଇତିହାସ ।

ବିଶ୍ୱନାଥ ନିଜର କୋମଳ ସ୍ନେହମୟ ଗୁଣରେ ସମସ୍ତଙ୍କୁ କିଣିନେଉଥିଲେ । ଧର୍ମପରିବର୍ତ୍ତନ ସମୟରେ କୌଣସି ଶତ୍ରୁପ୍ରତି ମଧ୍ୟ ସେ କେବେହେଁ ବିଦ୍ୱେଷଭାବ ପୋଷଣ କରି ନାହାନ୍ତି । ତାଙ୍କ ଚିରସ୍ନେହମୟ ଜୀବନର ଏହାହିଁ ବିଶେଷତ୍ୱ । ତାଙ୍କର ଏହି ସ୍ନେହଗୁଣ ଯୋଗୁଁ, ଲୋକେ ତାଙ୍କପ୍ରତି ଅନ୍ୟାୟ ଆଚରଣ କଲେ ସୁଦ୍ଧା, ସେ କାହାରିପ୍ରତି ବିରକ୍ତ ହେଉ ନ ଥିଲେ । ତାଙ୍କର ଏହି ଗୁଣ ତାଙ୍କୁ ଜୀବନପଥରେ ବରାବର ଆଲୋକମୟ ପଥ ଚଲାଇନେଇଯାଇଅଛି ।

ସେ ଯାହାକୁ ଜୀବନରେ ସତ୍ୟ ବୋଲି ବୁଝିଥିଲେ, ତାକୁ ଲକ୍ଷ୍ୟ କରି ଚାଲିଥିଲେ । ତାଙ୍କ ଲକ୍ଷ୍ୟପଥରେ ସହସ୍ର ବାଧାବିଘ୍ନ ସତ୍ତ୍ୱେ ସେ ତିଳେମାତ୍ର କାତର ହୋଇ ନାହାନ୍ତି । ତାଙ୍କର ଏହି ଅପରିମିତ ସାହସ ଓ ପ୍ରତିଭା କି ସାମାଜିକ, କି ରାଜନୈତିକ, କି ସାହିତ୍ୟିକ, ପ୍ରତ୍ୟେକ କ୍ଷେତ୍ରରେ ବେଶ୍ ଫୁଟିଉଠିଛି । ଯେଉଁ ଲୋକ ଏ ଭସ୍ମାବୃତ ବହ୍ନିର ଅଥବା ଧୀର ଜଳସ୍ରୋତର ପରିଚୟ ଲାଭ କରିଥିବେ, ସେ ବୁଝିଥିବେ ତାହାର କି ଅପ୍ରତିହତ ଶକ୍ତି । ବିଶ୍ୱନାଥ ବନ୍ୟା-ଜଳପରି, ପ୍ରଭଞ୍ଜନ ପରି ଉଚ୍ଛୃଙ୍ଖଳ ନ ଥିଲେ, କିନ୍ତୁ ନୀରବ ନିର୍ବିକାରଭାବରେ ସରଳ ପ୍ରାଣରେ କର୍ତ୍ତବ୍ୟ କରିଯାଉଥିଲେ । ଏପରି ସତ୍ୟର ଆଶ୍ରୟୀ, ଏପରି ଚରିତ୍ରବାନ୍ ବ୍ୟକ୍ତି ଆଜି ଦେଖିବାକୁ ବିରଳ ।

ବିଶ୍ୱନାଥ କୁଟିଳ ପଥର ପଥିକ ନ ଥିଲେ । ସେ ସଂସାରର କ୍ଷଣିକ ସୁଖକୁ ବଡ଼ ବୋଲି ମନେ କରୁ ନ ଥିବାରୁ ଏକମାତ୍ର ନିର୍ଭୀକ ସତ୍ୟରେ ଶରଣାପନ୍ନ ଲୋଡ଼ୁଥିଲେ । ସେ ସମ୍ମାନଲାଳସୀ ନ ଥିଲେ । ସମ୍ମାନ ଆପେ ଆପେ ତାଙ୍କ ହାତକୁ ଆସିଛି; କିନ୍ତୁ ସେ ତାହାକୁ ତୁଚ୍ଛ ମନେ କରି ଫିଙ୍ଗିଦେଇଛନ୍ତି । ତାଙ୍କ ଜୀବନର ପ୍ରତ୍ୟେକ ସ୍ତର, ପ୍ରତ୍ୟେକ ବିଭାଗ ଆଦରଣୀୟ, ଅନୁକରଣୀୟ, ଶିକ୍ଷଣୀୟ ।

—କବି ଶ୍ରୀ ଚନ୍ଦ୍ରଶେଖର ମିଶ୍ର

'ବିଶ୍ୱନାଥସ୍ମୃତି'—ଫୁଲଟି ଅଳ୍ପକାଳଭିତରେ ମଉଳିଯାଏ—ଯାହା ବା ଟିକିଏ ରହିଯାଏ, ତାହା ତାର ସୌରଭ । ଫୁଲ ପକ୍ଷରେ ଯାହା, ମାନବ-ଜୀବନ ପକ୍ଷରେ ଠିକ୍ ସେହି କଥା । ଯାହାଙ୍କୁ ଜୀବନକାଳପରେ ପାଞ୍ଚ ଜଣ ମନେ ରଖନ୍ତି, ସେହି ଏକା ଏ ସଂସାରରେ ଧନ୍ୟ—ଏ ମରଣଶୀଳ ସଂସାରରେ ଅମର । ଯାହାଙ୍କ ଜୀବନର କଥା ଆଲୋଚନାର ବିଷୟ ହୋଇଅଛି, ତାହାଙ୍କ ଜୀବନରେ ସେହିପରି ସୌରଭ ଥିଲା । ଆଜି ସେହି ଜୀବନର ଗୌରବକୁ ଭାଳି ପାଞ୍ଚ ଜଣ ହାହାକାର କରୁଛନ୍ତି ।

ତେଜସ୍ୱିତା ବିଶ୍ୱନାଥଙ୍କ ଜୀବନର ବିଶେଷତ୍ୱ । ଯାହା ଥରେ ସେ ସତ୍ୟ ବୋଲି ବୁଝି ଗ୍ରହଣ କରୁଥିଲେ, ସେଥିରୁ ତାଙ୍କୁ ଫେରାଇନେବା ବଡ଼ ସହଜ ନ ଥିଲା । ସେହି ତେଜସ୍ୱିତା ତାଙ୍କୁ ଅତି ତରୁଣ ବୟସରେ ହିନ୍ଦୁ-ସମାଜର ରକ୍ଷଣଶୀଳ ଗଣ୍ଡିରୁ ଟାଣିଆଣି ରାଜପଥରେ ଏକାକୀ ଓ ଅସହାୟ

ଶତବାର୍ଷିକୀ

କରି ଠିଆ କରିଦେଇଥିଲେ ମଧ୍ୟ ସେ ସେହି ଅବସ୍ଥାକୁ ପରମାନନ୍ଦରେ ବରଣ କରିଥିଲେ । ଆଜି କେତେ ସହଯାତ୍ରୀ ସମାଜର ଲାଞ୍ଛନାକୁ ଡରି, ମନର ଦୁଃଖ ମନରେ ମାରି ପୁଣି ପ୍ରାଚୀନ ସମାଜ-ଗଣ୍ଡିକୁ ଫେରିଗଲେ; ମାତ୍ର ବିଶ୍ୱନାଥ ଯେଉଁ ପ୍ରତିଜ୍ଞା କରି ବାହାରିଥିଲେ, ସେହି ପ୍ରତିଜ୍ଞାହିଁ ତାଙ୍କର ଅଟଳ ଅଚଳ ରହିଲା । ସେହି ନଗଣ୍ୟ ଅବସ୍ଥାରୁ ଉଠି ଏ ଉତ୍କଳଖଣ୍ଡରେ ସେ ଯେଉଁ ସ୍ଥାନ ଅଧିକାର କରିଥିଲେ, ତାହା ତାଙ୍କ ବ୍ୟକ୍ତିତ୍ୱର ପ୍ରଧାନ ପରିଚୟକ ।

ତାଙ୍କ ହୃଦୟରେ ପ୍ରେମର ଝରଣା ବୋହୁଥିଲା । ସେହି ପ୍ରେମର ଝରଣାରେ ଯେ ଅବଗାହନ କରିଛି, ସେ ଜାଣେ ତାହା କେଡ଼େ କ୍ଳାନ୍ତିହର, କେଡ଼େ ମଧୁର ଓ ଶୀତଳ । ଭଗବାନଙ୍କପ୍ରତି ଭକ୍ତି ଓ ମାନବସମାଜପ୍ରତି ପ୍ରୀତି ତାଙ୍କୁ ଏତେ ପ୍ରିୟ କରିଥିଲା । ସେ ଯେପରି ସହାସ୍ୟ ବଦନରେ କଥା କହି କହି ଶ୍ରୋତାଙ୍କୁ ପ୍ରେମ-ଡୋରିରେ ବାନ୍ଧିପକାଉଥିଲେ, ତାହା ବର୍ତ୍ତମାନ ମନେ କରି ତାଙ୍କର ଅସଂଖ୍ୟ ବନ୍ଧୁବାନ୍ଧବ ଅଶ୍ରୁପାତ କରୁଛନ୍ତି ।

ସେ ଧନଦୃଷ୍ଟିରେ ବଡ଼ ଦରିଦ୍ର ଥିଲେ; ମାତ୍ର ତାଙ୍କର ଗୋଟିଏ ରାଜ-ସୁଲଭ ମନ ଥିଲା । ସେଥିରେ କ୍ଷୁଦ୍ରତା, ନୀଚତା ସ୍ଥାନ ପାଉ ନ ଥିଲା । ଗରିବ, ଦୁଃଖୀଙ୍କପ୍ରତି ତାଙ୍କର ଦୟା ଅସୀମ ଥିଲା । କାହାକୁ କିଛି ଦେବାକୁ ହେଲେ ସେ ନିଜର ଦାରିଦ୍ର୍ୟ କଥା ଭୁଲିଯାଉଥିଲେ । ବୟସରେ ସେ ଅନେକ ବଡ଼ ଥିଲେ ମଧ୍ୟ ସ୍କୁଲ-କଲେଜର ଛାତ୍ରମାନଙ୍କ ସଙ୍ଗେ ଏହି ପ୍ରେମର ବଳରେ ଅକ୍ଲେଶରେ ମିଳିମିଶିପାରୁଥିଲେ । ଯୁବକମାନେ ତାଙ୍କ ସଙ୍ଗରେ ସମାଜ ଓ ସାହିତ୍ୟ ପ୍ରଭୃତି ବିଷୟରେ ଆଲୋଚନା କଲାବେଳେ ପରସ୍ପରମଧ୍ୟରେ ଥିବା ବୟସର ପ୍ରଭେଦକୁ ଭୁଲିଯାଉଥିଲେ ।

ସେ ଯୌବନରେ ଯେଉଁ ଜ୍ଞାନାର୍ଜନ-ପିପାସା ଅର୍ଜନ କରିଥିଲେ, ତାଙ୍କ ବୃଦ୍ଧବୟସରେ ମଧ୍ୟ ତାହାର ହ୍ରାସ ଘଟି ନ ଥିଲା । ଓଡ଼ିଆ, ଇଂରାଜୀ, ବଙ୍ଗଳା, ସଂସ୍କୃତର ଭଲ ଭଲ ବହି ଅଧ୍ୟୟନ କରିବା ତାଙ୍କର ଚିରନ୍ତନ ଅଭ୍ୟାସ ଥିଲା । ଛାପାଖାନାରୁ ଓଡ଼ିଆ, ଇଂରାଜୀ ଓ ବଙ୍ଗଳାର ପ୍ରସିଦ୍ଧ ପୁସ୍ତକମାନ ବାହାରିଲାକ୍ଷଣି ସେ ସେମାନ ଆଦରରେ କିଣି ଓ ମନୋଯୋଗ ସହକାରେ ପାଠ କରୁଥିଲେ । କଟକ ସହରର ଜ୍ଞାନପିପାସୁ ଯୁବକମାନେ ତାଙ୍କର ଗୃହ-ପୁସ୍ତକାଗାରରୁ ନୂତନ ନୂତନ ପୁସ୍ତକ ପାଇପାରୁଥିଲେ ।

ମତାମତ ପ୍ରକାଶ କରିବା ବିଷୟରେ ସେ କେତେବେଳେ ଅଧାଅଧି ପନ୍ଥା ଗ୍ରହଣ କରୁ ନ ଥିଲେ । ସବୁ ବିଷୟରେ ତାଙ୍କର ମତ ସେ କାହାରି ଚକ୍ଷୁଲଜ୍ଜା ବା ଲୋକମତକୁ ଅପେକ୍ଷା ନ କରି ବଡ଼ ସ୍ୱାଧୀନ, ସତେଜ ଓ ନିର୍ଭୀକଭାବରେ ପ୍ରକାଶ କରୁଥିଲେ । ସେ ସମାଲୋଚନାରେ ବଡ଼ କଠୋର ଓ ନିର୍ମମ; ମାତ୍ର ଯେଉଁଠାରେ ଗୁଣ ଦେଖୁଥିଲେ, ତାହାକୁ ଆଦର କରି ଯେପରି ପ୍ରାଣ ଖୋଲି ମୁକ୍ତ କଣ୍ଠରେ ପ୍ରଶଂସା କରୁଥିଲେ, ଏ ଉତ୍କଳଖଣ୍ଡରେ ଆଉ ସେପରି କେହି କରିବାର ଦେଖି ନାହୁଁ । କବି ନନ୍ଦକିଶୋର ତାଙ୍କ ପ୍ରଥମ ବୟସରେ ଯେତେବେଳେ ଭାବ ଓ ଭାଷାର ନୂତନତ୍ୱ ନେଇ ଉତ୍କଳସାହିତ୍ୟ-ସଂସାରରେ ପଦାର୍ପଣ କଲେ ଏବଂ ତାଙ୍କ ଜ୍ଞାନପ୍ରଦ ଭାବପ୍ରଚୁର କବିତାପୁସ୍ତକ 'ପଲ୍ଲୀଚିତ୍ର' ଓ 'ନିର୍ଝରିଣୀ', ସୁନ୍ଦର ମଧୁର ଗୀତିକବିତା 'ବସନ୍ତକୋକିଳ' ଯେତେବେଳେ ପ୍ରକାଶିତ ହେଲା, ସେତେବେଳେ କି ଆନନ୍ଦରେ, କି ପରିପୂର୍ଣ୍ଣ ପ୍ରାଣରେ ସେ କବିତାଗୁଡ଼ିକୁ ପ୍ରଶଂସା କରି 'ଉତ୍କଳସାହିତ୍ୟ'ରେ ସମାଲୋଚନା କରିଥିଲେ, ତାହା ସେକାଳର ଅନେକ ସାହିତ୍ୟସେବକଙ୍କର ମନେ ଥିବ ।

ପରିବାରରେ ତାଙ୍କର ବ୍ୟବହାର ବଡ଼ କୋମଳ ଓ ମଧୁର ଥିଲା । ସେ ଅଭାବ ଓ ଅସୁବିଧାରେ ପଡ଼ି ମଧ୍ୟ ନିଜର ପିଲାମାନଙ୍କୁ କୌଣସିପ୍ରକାରେ ସୁଖସ୍ୱାଚ୍ଛନ୍ଦ୍ୟରୁ ବଞ୍ଚିତ କରିବାକୁ କେବେହେଲେ ଇଚ୍ଛୁକ ନ ଥିଲେ । ଅଧୀନସ୍ଥ କର୍ମଚାରୀ ଓ ଭୃତ୍ୟମାନଙ୍କପ୍ରତି ତାଙ୍କର ବ୍ୟବହାର ଅତି ମଧୁର ଓ ସଦୟ ଥିଲା । ଗୋଟିଏ ଗୋଟିଏ ଭୃତ୍ୟ ତାଙ୍କର ସ୍ନେହମମତାରେ ଆବଦ୍ଧ ହୋଇ ତାଙ୍କ ନିକଟରେ ତିରିଶ ଚାଳିଶ ବର୍ଷ ରହି ଆଜି ତାଙ୍କ ବିଚ୍ଛେଦକୁ ଝୁରୁଛନ୍ତି ।

—ରାୟସାହେବ ଶ୍ରୀ ପଦ୍ମଚରଣ ପଟ୍ଟନାୟକ

'ସଂସ୍କାରକ ବିଶ୍ୱନାଥ'—ନିଜର ଅନ୍ତର୍ନିହିତ ଶକ୍ତିବଳରେ, ନିଜର ପ୍ରଳୟରୂପିଣୀ ଚେଷ୍ଟାରେ ମନୁଷ୍ୟ କି ଉଚ୍ଚ ଆସନ ଅଧିକାର କରିପାରେ, ବିଶ୍ୱନାଥ ତାହା ନିଜ ଜୀବନରେ ଦେଖାଇଯାଇଛନ୍ତି । ଜଣେ ସମ୍ବଳହୀନ ସନ୍ତାନ ଜାତିର ସାମାଜିକ ଇତିହାସରେ ପ୍ରାୟ ବିଂଶତି ବର୍ଷପର୍ଯ୍ୟନ୍ତ ଯୁବକମଣ୍ଡଳୀର ଆଦର୍ଶ ହୋଇପାରେ, ଏହା କେତେ ଲୋକର ଭାଗ୍ୟରେ ଘଟିଥାଏ ? ବିଶ୍ୱନାଥ ୧୯୦୦ ଠାରୁ ୧୯୨୦ ପର୍ଯ୍ୟନ୍ତ ଉତ୍କଳ ଯୁବକମଣ୍ଡଳୀର ଆଦର୍ଶସ୍ଥାନୀୟ ଥିଲେ—ଏହା କିଏ ନ ଜାଣେ ?

ଶହେଅଣତିରିଶ

ଧନସମ୍ପତ୍ତିରେ ଗରିବ ଥିଲେ ସୁଦ୍ଧା ହୃଦୟରେ, ମନରେ, କାର୍ଯ୍ୟରେ ଓ ନିର୍ଭୀକତାରେ ସେ ଗରିବ ନ ଥିଲେ।.........ମନୁଷ୍ୟ ଗରିବ ବୋଲି ଘୃଣିତ ହେବ, ଏହା ଶୁଣିବାମାତ୍ରେ ସେ ଯେପରି ଆପାଦମସ୍ତକ କମ୍ପିଉଠୁଥିଲେ। କେତେ କେତେ ଅଭାବଗ୍ରସ୍ତ ଦୁଃସ୍ଥ ଲୋକ ତାଙ୍କଠାରୁ ଅଯାଚିତଭାବରେ ସାହାଯ୍ୟ ପାଇ ନାହାନ୍ତି ! ତାଙ୍କ ହୃଦୟ କି ଦୟାର୍ଦ୍ର, କି ବିଶାଳ !

—ନାରୀନେତ୍ରୀ ଶ୍ରୀମତୀ ସରଳା ଦେବୀ

'ପିତୃସ୍ମୃତି'—ତୁମେ ଦେଇଥିଲ, ତୁମେ ସେହି ଅଦୃଶ୍ୟ ରାଜ୍ୟକୁ ବାବାଙ୍କୁ ନେଇଯାଇଅଛ। ସେ ରାଜ୍ୟର ସଂବାଦ ଆମକୁ ଜଣା ନାହିଁ। ସେ ରାଜ୍ୟରେ ତୁମେ ଏକା ଆତ୍ମାର ଆଶ୍ରୟ। ତୁମେ ଆମମାନଙ୍କ ପିତାଙ୍କୁ ତୁମର ଅମୃତ-କୋଡ଼ରେ ଆଶ୍ରୟ ଦେଇଅଛ। ଆଜି ସେ ଏହି ସଂସାରର ଦୁଃଖ-ତାପ-ପରୀକ୍ଷା-ପ୍ରଲୋଭନରୁ ଅତୀତ ସେହି ଆନନ୍ଦଧାମର ଅଧିବାସୀ—ହେ ଶୋକ-ସନ୍ତାପହାରି !

କି ଅପୂର୍ବ ସ୍ନେହମୟ ଥିଲେ ବାବା ! କୌଣସି ଅପରାଧ ସନ୍ତାନ-ମାନଙ୍କର ତାଙ୍କ ପାଖରେ ଅମାର୍ଜନୀୟ ନ ଥିଲା। ଆମେ ଅପରାଧ କଲେ ବାବାଙ୍କୁ ରାଗିକରି ଗାଳି ଦେବାର କେବେ ଶୁଣି ନାହୁଁ। ବଡ଼ ବେଶୀ କଷ୍ଟ ଅନୁଭବ କଲେ ବାବା ଚୁପ୍ କରି ରହୁଥିଲେ; କିନ୍ତୁ ବାବାଙ୍କର ସେହି ନୀରବତା ଆମକୁ ପୀଡ଼ା ଦେଉଥିଲା ବେଶୀ। ସେଥିପାଇଁ ବାବାଙ୍କ ମନରେ କଷ୍ଟ ହେବ ବୋଲି ତାଙ୍କର ଅପ୍ରିୟ କାର୍ଯ୍ୟ କରିବାକୁ ମନରେ ସଂକୋଚ ଓ ବେଦନା ଅନୁଭବ କରୁଁ। ସେ ଦୁଃଖ ଆଘାତ କିଛି କମ୍ ପାଇ ନାହାନ୍ତି ଜୀବନରେ, କିନ୍ତୁ ସେଥିପାଇଁ କୌଣସି ଅଭିଯୋଗ କରିବାର କିଂବା ବିଚଳିତ ହୋଇ-ପଡ଼ିବାର କେବେ ତାଙ୍କୁ ଦେଖି ନାହୁଁ। କେତେ ଥର ବାବାଙ୍କର କେତେ ଅପ୍ରିୟ ଆଚରଣ କରିଛୁଁ, ବାବା କେବେ ଜୋର୍ କରି ନିଷେଧ କରି ନାହାନ୍ତି—ଅନୁତପ୍ତ ହେବାକୁ ଅବସର ଦେଇଛନ୍ତି।

—କୁମାରୀ ସୁପ୍ରଭା କର

'ସ୍ମୃତି'—ବିଶ୍ୱନାଥ ବାବୁ ଜଣେ ଦେଶନାୟକ, ଏକ ସଶିଖ ବହ୍ନି। ତାଙ୍କ ନାମର ଖୁବ୍ ଡାକ—ଶକ୍ତିଶାଳୀ ସାହିତ୍ୟିକଭାବରେ, ନିର୍ଭୀକ ଧର୍ମସଂସ୍କାରକଭାବରେ, ସ୍ୱାଧୀନ ମତବାଦୀ ଓ ଓଜସ୍ୱୀ ବକ୍ତାଭାବରେ। ତାଙ୍କ

କଥା ମନରେ ପଡ଼ିଲେ ସ୍ୱତଃ ମହର୍ଷି ଦେବେନ୍ଦ୍ରନାଥ ଠାକୁର ଓ କେଶବଚନ୍ଦ୍ର ସେନଙ୍କ କଥା ମନେ ପଡ଼େ ।

ପ୍ରବୀଣ ସଂପାଦକଭାବରେ ସେ ଓଡ଼ିଶାରେ ବିଖ୍ୟାତ । ଉତ୍କଳସାହିତ୍ୟକୁ ତାଙ୍କର ଅମୂଲ୍ୟ ଦାନ 'ବିବିଧ ପ୍ରବନ୍ଧ'ର ସ୍ଥାନ ପ୍ରବନ୍ଧସାହିତ୍ୟ-ଜଗତରେ ଅତି ଉଚ୍ଚ । ଉତ୍କଳରେ ସାଂବାଦିକତାର ସେ ସର୍ବପ୍ରଥମ ଓ ସର୍ବଶ୍ରେଷ୍ଠ ପ୍ରତିଷ୍ଠାତା । ଓଡ଼ିଆ ସାହିତ୍ୟର ଉନ୍ନତିପାଇଁ ତାଙ୍କ ପ୍ରାଣ ସର୍ବଦା ବ୍ୟାକୁଳ ଥିଲା । ସେ ଥରେ କହିଥିଲେ, "ଦେଖନ୍ତୁ, 'ସାହିତ୍ୟ'କୁ ବଞ୍ଚାଇବାକୁ ମତେ କେତେ କଷ୍ଟ ସହିବାକୁ ପଡ଼ୁଛି; ତା ବୋଲି ମୁଁ ଯାହାକୁ ତାହାକୁ ତୋଷାମଦ ଗୁଡ଼ାଏ କରିପାରିବି ନାହିଁ ।" କଥା ଯାହା, କାର୍ଯ୍ୟ ତାହା । ବୋଧ ହୁଏ ଓଡ଼ିଶାର ଅଧିକାଂଶ ଆଧୁନିକ ବିଶିଷ୍ଟ ଲେଖକ ତାଙ୍କର ହାତରେ ଗଢ଼ା ।

—ଶ୍ରୀ ଗଙ୍ଗାଧର ମିଶ୍ର, ବି·ଏ· (ଢେଙ୍କାନାଳ)

'ସ୍ମୃତିତର୍ପଣ'—

ଚିରମୁକ୍ତ ତୁମେ ବନ୍ଧୁ ! ଲଭି ବ୍ରହ୍ମଭୂତି
ମରଣକୁ ଅମୃତରେ ଦେଇଛ ଆହୁତି ।

ଧୂଳିରୁ ଜନମି ବନ୍ଧୁ ! ମିଶିଛ ଧୂଳିରେ
ଦେବ ନାହିଁ ଧରି ସ୍ୱାର୍ଥ ଅଶ୍ରୁ-ବନ୍ଧନୀରେ ।

ଶୂନ୍ୟର ଶବଦ ତୁମେ ଲଭିଛ ବିଶ୍ରାମ
ମହାଶୂନ୍ୟେ, ପୂରିଅଛି ସ୍ରଷ୍ଟା-ମନସ୍କାମ ।
ବିପୁଳ ତରଙ୍ଗ ସିନ୍ଧୁବକ୍ଷେ କ୍ଷଣେ ଉଠି
ଭାଙ୍ଗି ବାଲିସ୍ତୂପ ପୁଣି ଯାଇଛି ଲେଉଟି ।

ମଙ୍ଗଳସୃଷ୍ଟିରେ ହିଁଶେ ସକଳ ସୁନ୍ଦର
ପରମଆନନ୍ଦ-ସ୍ପର୍ଶେ ସବୁ ଅନଶ୍ୱର ।

× × ×

ତୁଚ୍ଛ ସେ ଶ୍ମଶାନଭସ୍ମ ତୁଚ୍ଛ ଚିତାନଳ
ସର୍ବତ୍ର ବିକାଶ ସୃଷ୍ଟି-ଅମୃତ-କମଳ ।

ସ୍ମରଇ ବିରହବହ୍ନି, ମୃତ୍ୟୁ ଲଭେ ଲୁଚେ
ଲୁପ୍ତ କରି ସଷ୍ଟି ଯେବେ ସେ ଧ୍ୱନି ମୁରୁଛେ ।
ସ୍ଥିରଲକ୍ଷ୍ୟ ସେ ବିହଙ୍ଗମେ ଡେଉଁରହେ ହିଁଟି
ବିଜୟଗରବେ ପୋତି ଯାଏ ଯେ ଚହଟି ।

ମହାଶୂନ୍ୟେ ପ୍ରାଣବାୟୁ ହସି ଯାଏ ଲେଉଟି
ଭ୍ରମେ ମୁକ୍ତ ହଂସ, ନ ଛାଡ଼ଇ ପରଗୋଟି ।
ଏକାକୀ ମରାଳ କେଉଁ ଶୂନ୍ୟେ ଗଲା ଉଡ଼ି
ରଖିଗଲା ପଛେ କିସ ? ଆସିଥିଲା ହୁଡ଼ି ?

କି ଭାବ ଆସିଲା ଏଥି ? ପୁଚ୍ଛେ ମୁହିଁ ସୃଷ୍ଟି
ଉତ୍ତରେ ନୟନ ହସି—ଶୂନ୍ୟ, ମହାଶୂନ୍ୟ !

× × ×

ଶୈଶବ ଲଭିଛି ଲୟ ତରୁଣ-ସ୍ୱପନେ
ତାରୁଣ୍ୟ ସ୍ଥବିର-ଜ୍ଞାନେ, ସ୍ଥବିର ମରଣେ ।
ନିମୀଳିତ ହେଉ ଦିବା, ପଦ୍ମ ନିମୀଳିତ
ମଉଳୁ ପଛକେ କ୍ଷଣେ ଧ୍ୱନି ଅତନ୍ଦ୍ରିତ;

କୌମୁଦୀ ଝାଉଁଳିପଡ଼ୁ ଗହନ ବନାରେ
ଅମୃତର ସ୍ମୃତି ଆଉ ଭୁଲି ହେବ କି ରେ ?
ତରଙ୍ଗ ଲେଉଟିଯାଉ ଦିଗନ୍ତ ସାଗରେ
ସ୍ଫୁରିତ ବିଦ୍ୟୁତଆଭା ମିଶୁ ଅନମ୍ବରେ;

ନ ଫେରୁ ପଛକେ ପ୍ରୀତିମଦିର ନୟନ
ମଉଳୁ କୁସୁମ, ଶୁଖୁ ଠଙ୍କର ଜୀବନ;
କଣ୍ଠେ ମରୁ ପଛେ ମୋର ବ୍ୟଥିତର ଭାଷା
ମରିବାର ନୁହେଁ ଆଉ ଅମୃତର ଆଶା !

—ଶ୍ରୀ ବୈକୁଣ୍ଠନାଥ ପଟ୍ଟନାୟକ

## ୨. ସାହିତ୍ୟଗୁରୁ

ସାହିତ୍ୟରାଜ୍ୟରେ ବିଶ୍ୱନାଥ ବାବୁ ମୋର ଗୁରୁ ଥିଲେ । ଯେତେବେଳେ ପ୍ରଥମେ ୧୮୯୬ରେ ତାଙ୍କ ସଂସ୍ରବରେ ଆସିଲି, ସେତେବେଳେ ମୁଁ କଲେଜ-ପଢ଼ୁଆ ଉଚ୍ଛୃଙ୍ଖଳ ଯୁବକ । ତାଙ୍କ ଉତ୍ସାହ ଓ ପ୍ରଣୋଦନାରେ ମୁଁ ପ୍ରଥମେ ଶଙ୍କିତ ଚିତ୍ତରେ ଲେଖନୀ ଧାରଣ କଲି । ମୋର ପ୍ରଥମ ଲେଖା ଦେଖି ସେ ମୋତେ ସାହିତ୍ୟସାଧନା-କ୍ଷେତ୍ରକୁ ସ୍ୱାଗତ କଲେ ଓ କ୍ରମଶଃ ମୋ ପ୍ରବନ୍ଧମାନ ମୂଳରୁ ଶେଷପର୍ଯ୍ୟନ୍ତ ମୋ ଆଗରେ ପାଠ କରି ସେମାନ ଇସ୍କୁଲ ପିଲାଙ୍କ ଏକ୍ସର୍ସାଇଜ୍ ବହିରେ ଲେଖା ସନ୍ଦର୍ଭମାନଙ୍କୁ ଶିକ୍ଷକମାନେ ସଂଶୋଧନାଦି କଲାପରି ସଂଶୋଧନ, ମାର୍ଜନ, ପରିବର୍ତ୍ତନ ଓ ପରିବର୍ଦ୍ଧନ କରିଦେଉଥିଲେ ।

ମୁଁ ତାଙ୍କ ବଚନରେ ଉତ୍ସାହିତ ହୋଇ 'କାହାଣୀ' ଲେଖିବାକୁ ଆରମ୍ଭ କଲି । ମୋ ଲେଖାରେ ଇ, ଈ, ଉ, ଊ, ରି, ରୁ, ଶ, ଷ, ସ ଆଦି ବିଷୟରେ ଶତ ଶତ ବର୍ଣ୍ଣାଶୁଦ୍ଧି ଏବଂ ବ୍ୟାକରଣଦୋଷଯୁକ୍ତ ପଦ, ବାକ୍ୟ ଓ ପ୍ରୟୋଗମାନ ରହୁଥିଲା । ମୋ ଲିଖିତ ସନ୍ଦର୍ଭଗୁଡ଼ିକ ସେ ସହାସ୍ୟ ବଦନରେ ମୋ ଉପସ୍ଥିତିରେ ସଂଶୋଧନ କରିବାପରେ 'ଉତ୍କଳସାହିତ୍ୟ' ପତ୍ରିକାରେ ମୁଦ୍ରିତ ହେବାକୁ ଦେଉଥିଲେ । ମୋ 'କାହାଣୀ'ମାନ କ୍ରମଶଃ 'ଉତ୍କଳ-ସାହିତ୍ୟ'ରେ ପ୍ରକାଶିତ ହେବା ସଙ୍ଗେ ସଙ୍ଗେ ଆଉ ଗୋଟିଏ କନ୍ଦଳ ଉଠିଲା । ତହିଁପୂର୍ବରୁ ସାହିତ୍ୟର ଭାଷା ଓ ଲୋକମୁଖରେ ପ୍ରଚଳିତ ଭାଷା ସ୍ୱତନ୍ତ୍ର ଥିଲା ଏବଂ ଘରୋଇ ଭାଷାକୁ ସାହିତ୍ୟରାଜ୍ୟରେ ତଦାନୀନ୍ତନ ସାହିତ୍ୟରଥୀମାନେ ସ୍ଥାନ ଦେଇ ନ ଥିଲେ । 'କାହାଣୀ'ରେ ବ୍ୟବହୃତ ଘରୋଇ ଭାଷା ଦେଖି ଅନେକ ନାମକାମରା ସାହିତ୍ୟସେବକ ଚମକିଉଠିଲେ । ସୁଦୂର ବାମଣ୍ଡାରୁ ଆରମ୍ଭ କରି ବାଲେଶ୍ୱର ବାଟେ କଟକପର୍ଯ୍ୟନ୍ତ ଏ ଭାଷାର ପ୍ରତିବାଦସୂଚକ ଢେଉ ଖେଳିଗଲା । ବିଶ୍ୱନାଥ ବାବୁ ସେସବୁ ପ୍ରତିବାଦପ୍ରତି ଭ୍ରୂକ୍ଷେପ ନ କରି ମୋ କାହାଣୀମାନଙ୍କୁ ଧାରାବାହିକରୂପେ 'ସାହିତ୍ୟ' ପତ୍ରିକାରେ ସ୍ଥାନ ଦେଲେ ।

ତାଙ୍କରି ସୂଚନାକ୍ରମେ ମୋ କଲେଜସହପାଠୀ ଓଡ଼ିଆ ଯୁବକମାନେ ଗୋଟିଏ 'ସାହିତ୍ୟ ସମିତି' ପ୍ରତିଷ୍ଠା କଲେ ଓ ସେଥିରେ ଆମ୍ଭେମାନେ ଓଡ଼ିଆ-ସାହିତ୍ୟର ସେବା କଲୁଁ । ୰ନନ୍ଦକିଶୋର ବଳ, ୰କାମପାଳ ମିଶ୍ର, ୰ଅଭିରାମ

ଭଞ୍ଜ ପ୍ରମୁଖ ସହପାଠୀମାନେ ଏହି ସମିତିରେ ପ୍ରାଚୀନ ଓ ନବ୍ୟ ଓଡ଼ିଆସାହିତ୍ୟର ଆଲୋଚନାରେ ଲାଗିଲୁଁ । ................ ୮ ନନ୍ଦକିଶୋର ବଳ 'ନାନା ବାୟା ଗୀତ' ନାମରେ ଗୋଟି କେତେ ଶିଶୁଗୀତ ପ୍ରକାଶ କରିଥିଲେ ଓ ମୁଁ ତାଙ୍କ ଦେଖାଦେଖି 'ଧୋ ରେ ବାୟା ଧୋ' ନାମରେ ଗୁଡ଼ିଏ ଶିଶୁଗୀତ ପ୍ରକାଶ କଲି । ଏସବୁ (କାହାଣୀ, ଭାଗବତ ଟୁଙ୍ଗୀରେ ସନ୍ଧ୍ୟା, ଧୋ ରେ ବାୟା ଧୋ) ଲେଖାଦ୍ୱାରା ଓ ବିଶ୍ୱନାଥ ବାବୁଙ୍କ ପ୍ରଦତ୍ତ ଅଭୟ ବଚନ ଓ ଉତ୍ସାହବାଣୀଦ୍ୱାରା ମୋର ପ୍ରାଥମିକ ଚମକ ଭାଙ୍ଗି ଗଲା ଏବଂ ସେହି ସମୟରୁ ମୁଁ ମୋ କ୍ଷୁଦ୍ର ଶକ୍ତି ଅନୁସାରେ ସାହିତ୍ୟସେବାରେ ଲାଗିଲି । 'ଉତ୍କଳକାହାଣୀ' ଓ 'ଭାଗବତ ଟୁଙ୍ଗୀରେ ସନ୍ଧ୍ୟା' ଧାରାବାହିକଭାବରେ 'ଉତ୍କଳସାହିତ୍ୟ'ରେ ପ୍ରକାଶିତ ହେବାପରେ ସେମାନ ମଧ୍ୟ ପୁସ୍ତକାକାରରେ ପ୍ରକାଶିତ ଓ ବିଶ୍ୱନାଥ ବାବୁଙ୍କ ନାମରେ ଉତ୍ସୃଷ୍ଟ ହେଲା ।

—ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ

ହେ ସାହିତ୍ୟ-ମହୀରୁହ ! କେତେ ଯେ ସାହିତ୍ୟ-ଗୁଳ୍ମ ଓ ସାହିତ୍ୟ-ଲତା ତୁମ ଛାୟା ଓ ଆଶ୍ରୟରେ ବର୍ଦ୍ଧିତ ହୋଇଅଛନ୍ତି, କଳନା କରିବା ଦୁଃସାଧ୍ୟ । ଏହି ଗୁଳ୍ମ ଓ ଲତାଗୁଡ଼ିକ ସାହିତ୍ୟ-ପୁଷ୍ପଫଳ ଧାରଣ କରି ଉତ୍କଳରେ ସୌରଭ ବିସ୍ତାର କରିଅଛନ୍ତି ଓ ମାନସିକ ସ୍ୱାସ୍ଥ୍ୟବିଧାନର ସହାୟ ହୋଇଅଛନ୍ତି । ଅସାମାନ୍ୟ କାର୍ଯ୍ୟକୁଶଳତା, ଧୈର୍ଯ୍ୟ ଓ ସ୍ଥୈର୍ଯ୍ୟ ଗୁଣରେହିଁ ତୁମ୍ଭେ ଜୀବନ-ସଂଗ୍ରାମର ଜୟଟିକା ଲଲାଟରେ ଧାରଣ କରି ସାହିତ୍ୟକ୍ଷେତ୍ରରେ ଅସାମାନ୍ୟ ପ୍ରଭାବ ବିସ୍ତାର କରିଥିଲ । ଉତ୍କଳର ଜଣେ ଅମର କବିଙ୍କର ରଚନାସମୂହ ପ୍ରକାଶିତ ହେବାପୂର୍ବରୁ ତୁମ୍ଭ ନିକଟରେ ପରୀକ୍ଷିତ ହୋଇ କିପରି ସଂଶୋଧିତ ହୋଇଥିଲା, ତାହା ମୁଁ ସ୍ୱଚକ୍ଷୁରେ ଦେଖିଛି; ସୁତରାଂ ଏଥିରେ ଅତିରଞ୍ଜନର ଆଭାସମାତ୍ର ନାହିଁ ।

—ଶ୍ରୀ ଶଶିଭୂଷଣ ରାୟ

ବିଶ୍ୱନାଥ ବାବୁ ନବ୍ୟ ଉତ୍କଳସାହିତ୍ୟ-ପଥରେ ଜଣେ ଅଗ୍ରଗାମୀ ପଥିକ । ସେ ଜୀବିତ ଥିଲାପର୍ଯ୍ୟନ୍ତ ବଡ଼ ସଂଯତ ଓ ଅଟଳ ମାନଦଣ୍ଡ ଧରି ଆଧୁନିକ ଉତ୍କଳସାହିତ୍ୟର ଉଚ୍ଛୃଙ୍ଖଳ ଗତିକୁ ନିୟନ୍ତ୍ରିତ କରୁଥିଲେ । ସେ ଲେଖକମାନଙ୍କ ସଙ୍ଗେ ସଙ୍ଗେ ବନ୍ଧୁଭାବରେ ରହି ସେମାନଙ୍କୁ ଯେପରି ସ୍ନେହଗୁଣରେ ପରିଚାଳିତ କରୁଥିଲେ, ତାହା ଚିନ୍ତା କଲେ ବିସ୍ମିତ ହେବାକୁ

ହୁଏ । ସପ୍ତତି ବର୍ଷ ବୟସରେ ସୁଦ୍ଧା ଯେ ସେ ଯୁବକମାନଙ୍କ ମନୋଭାବ ସହିତ ନିଜର ମନୋଭାବ ମିଳାଇପାରୁଥିଲେ, ତାହା ଆହୁରି ବିସ୍ମୟକର । ସେ ତରୁଣ ଲେଖକମାନଙ୍କୁ ଉପଯୁକ୍ତ ଲଗାମଦ୍ୱାରା ସଂଯତ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ସହ ହସିଛନ୍ତି, କାନ୍ଦିଛନ୍ତି, କଥା କହିଛନ୍ତି ଓ ଗୀତ ଗାଇଛନ୍ତି । ସେଥିପାଇଁ ଆଜି ତାଙ୍କ ବିରହରେ ତାଙ୍କର ସମସାମୟିକ ବ୍ୟକ୍ତିମାନେ ଯେପରି ଶୋକାକୁଳ, ତହୁଁ ବଳି ଶୋକାକୁଳ ହୋଇଛନ୍ତି ତାଙ୍କର ତରୁଣ ବନ୍ଧୁମାନେ ।

ଆଜି ଉତ୍କଳଖଣ୍ଡରେ ଯେତେ କୃତୀ ସାହିତ୍ୟିକଙ୍କର ଆବିର୍ଭାବ ହୋଇଛି, ସେମାନଙ୍କମଧ୍ୟରୁ ଅଧିକାଂଶଙ୍କର ବିଧାତା ବା ବିଧାତ୍ରୀ ବିଶ୍ୱନାଥ । ପ୍ରତ୍ୟେକେ ତାଙ୍କର ରସାଣରେ ରସାଣିତ ହୋଇଛନ୍ତି, ତାଙ୍କର କରୁଣାକୋମଳ ହସ୍ତ ପ୍ରତ୍ୟେକ ଜଡ଼ ପିଣ୍ଡକୁ ନବୀନ ଜୀବନ ଦାନ କରିଅଛି । ସେ ପ୍ରଦୀପ ଧରି ଲେଖକଲେଖିକାମାନଙ୍କୁ ଆଲୋକକୁ ଟାଣିଆଣିଛନ୍ତି । ତାଙ୍କର ଉତ୍ସାହରେ ଉତ୍ସାହିତ ହୋଇ ପୁରପଲ୍ଲୀରୁ, ଏପରି କି ଅନ୍ତଃପୁରରୁ ମଧ୍ୟ ଲେଖକ ଓ ଲେଖିକାମାନେ ଆସି ସାହିତ୍ୟପୀଠରେ ପଦାର୍ପଣ କରିଛନ୍ତି ।

ତାଙ୍କର ଭୌତିକ ଶରୀର ଚାଲିଯାଇଛି ସତ୍ୟ, କିନ୍ତୁ ସେ ଅଗଣିତ ସାହିତ୍ୟିକ ଓ ଲେଖକଙ୍କ ହୃଦୟରେ ପ୍ରତିବିମ୍ବପରି ପ୍ରତିଫଳିତ ହୋଇ ରହିଛନ୍ତି । ଗୋଟିଏ ଉଜ୍ଜ୍ୱଳ ଆଲୋକ ଲିଭିଯାଇଅଛି, ତଥାପି ତାହାର ସାହାଯ୍ୟରେ ସହସ୍ର ଆଲୋକ ଜଳିଉଠିଛି । ବିଶ୍ୱନାଥଙ୍କର ସୃଷ୍ଟି ଏକ ଅଭିନବ ସୃଷ୍ଟି । ସେ ଜଣେ ପରମ ସାଧକ ଓ ପରମ ସ୍ରଷ୍ଟା ।

—ଶ୍ରୀ ଚନ୍ଦ୍ରଶେଖର ମିଶ୍ର

ବିଶ୍ୱନାଥଙ୍କର ବିଚକ୍ଷଣ ବୁଦ୍ଧିବଳରେ, ଗୁଣ ଚିହ୍ନିବା ଶକ୍ତିବଳରେ କେତେ କେତେ ଯୁବକ ତାଙ୍କ ସ୍ପର୍ଶରେ କବି ଓ ସାହିତ୍ୟିକ ହୋଇ ନାହାନ୍ତି ? ଆଧୁନିକ ଯୁଗର ଅଧିକାଂଶ ସାହିତ୍ୟିକ ଓ କବି ଯେ ତାଙ୍କଠାରେ ବିଶେଷ-ଭାବରେ ଋଣୀ, ଏହା କହିବା ବାହୁଲ୍ୟ ମାତ୍ର । ସେ ଦେଖିବାକ୍ଷଣି ମନୁଷ୍ୟକୁ ଚିହ୍ନିପାରୁଥିଲେ ବୋଲି ଏତେ ଲୋକଙ୍କୁ ଗଢ଼ିପାରିଥିଲେ ।

—ଶ୍ରୀମତୀ ସରଳା ଦେବୀ

ଶତ୍ଦେପଇଁତଶ୍ରଶ

## ୩. ଆଦର୍ଶ ସଂପାଦକ

'ଉତ୍କଳସାହିତ୍ୟ' ପତ୍ରିକାର ସଂପାଦକରୂପେ ସେ ମୋଭଳି ବହୁ ଲେଖକଙ୍କର କର୍ଣ୍ଣଧାର, ସଂଶୋଧକ, ଉତ୍ସାହଦାତା ଓ ଗୁରୁର ସ୍ଥାନ ଅଧିକାର କରିଥିଲେ । ଯେଉଁ ସମୟର କଥା ମୁଁ କହୁଛି, ସେସମୟରେ ଉତ୍କଳଖଣ୍ଡରେ 'ଉତ୍କଳସାହିତ୍ୟ'ହିଁ ଏକମାତ୍ର ସ୍ଥାୟୀ ସାହିତ୍ୟିକ ପତ୍ରିକା ଥିଲା ଓ ଉତ୍କଳର ତଦାନୀନ୍ତନ ପ୍ରାୟ ସମସ୍ତ ସାହିତ୍ୟସେବକଙ୍କର ପ୍ରବନ୍ଧ ଓ କବିତା ତାହାର କଳେବରକୁ ପୁଷ୍ଟ କରୁଥିଲା । ପତ୍ରିକାର ସଂପାଦକରୂପେ ବିଶ୍ୱନାଥ ବାବୁ ଯେଉଁସବୁ ସମାଲୋଚନା, ସଂପାଦକୀୟ ଲେଖ ଓ ଟିପ୍ପଣୀ ସଂପାଦନ କରୁଥିଲେ, ସେମାନ ଓଡ଼ିଆସାହିତ୍ୟର ସଂପଦରୂପେ ଚିରକାଳ ବିରାଜୁଥିବ ।

ବିଶ୍ୱନାଥଙ୍କ ଚକ୍ଷୁରେ ପତ୍ରିକା-ସଂପାଦନର ଅର୍ଥ ଥିଲା ଧର୍ମଦୃଷ୍ଟିରେ କର୍ତ୍ତବ୍ୟସାଧନ ଓ ସାହିତ୍ୟସେବା । ପତ୍ରିକା-ସଂପାଦନର ଅର୍ଥ ନ ଥିଲା । ନିଜର ଆତ୍ମବଡ଼ିମା ପ୍ରକାଶ, ନିଜର ଅଭିଷ୍ଟସାଧନ, ବ୍ୟକ୍ତିଗତ କୁତ୍ସା ବା ନିନ୍ଦାରଟନା ଓ ଶୋଧାଶୋଧି । ସାହିତ୍ୟିକ ପତ୍ରିକାର ସଂପାଦକଙ୍କ ପୂତ କର୍ତ୍ତବ୍ୟ ସେତେବେଳେ ପୂତିଗନ୍ଧମୟ ସ୍ୱାର୍ଥାନ୍ୱେଷଣର ସ୍ତରକୁ ଖସିଆସି ନ ଥିଲା ।

ବିଶ୍ୱନାଥ ବାବୁଙ୍କ ମନ ବ୍ୟକ୍ତିଗତ ଅଭିଷ୍ଟସାଧନର ବହୁ ଉଚ୍ଚ ସ୍ଥାନରେ ଅବସ୍ଥାନ କରୁଥିଲା । ତଥାପି ନିର୍ଭୀକ ସମାଲୋଚନା, ସତ୍ୟର ଜୟଘୋଷଣା, ନ୍ୟାୟମାର୍ଗାନୁସରଣରୁ ସଂପାଦକରୂପେ ସେ କ୍ଷଣକେମାତ୍ର ବିଚଳିତ ହୋଇ ନ ଥିଲେ । ଯୁବକଜନସୁଲଭ ଚାପଲ୍ୟ ଯୋଗୁଁ ମୋର ଯେଉଁ କେତେକ ପ୍ରବନ୍ଧରେ ସେ ବ୍ୟକ୍ତିଗତ ଆକ୍ରମଣର ଆଭାସ ପାଉଥିଲେ, ତାହା 'ସାହିତ୍ୟ' ପତ୍ରିକାରେ ପ୍ରକାଶ ନ କରି ମୋତେ ଫେରାଇଦେଉଥିଲେ—'ଅନ୍ୟେ ପରେ କା କଥା' !

—ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ

ନିଜର ପ୍ରବନ୍ଧ ବା କବିତାଦି 'ଉତ୍କଳସାହିତ୍ୟ'ରେ ପ୍ରକାଶିତ ହେଲେ ଲେଖକଗଣ ନିଜକୁ କୃତକୃତ୍ୟ ମନେ କରୁଥିଲେ । ଯଥାର୍ଥରେ 'ଉତ୍କଳ-ସାହିତ୍ୟ'ରେ କୌଣସି ଲେଖା ପ୍ରକାଶିତ ହେବା ଲେଖକଙ୍କ ପକ୍ଷରେ ସର୍ବଥା

ଗୌରବାବହ ବୋଲି ବିବେଚିତ ହେଉଥିଲା । ଏହାର ଏକମାତ୍ର କାରଣ ବିଶ୍ୱନାଥଙ୍କ ଭଳି ନିରପେକ୍ଷ ସାହିତ୍ୟରଥୀଙ୍କ ବ୍ୟକ୍ତିତ୍ୱ । ଅନ୍ୟ କେତେକ ପତ୍ରିକାରେ ଯେଉଁସବୁ ପ୍ରବନ୍ଧ-କବିତା ନିର୍ବିଘ୍ନରେ ସ୍ଥାନ ପାଉଛି, ସେଭଳି ଶତ ଶତ ଲେଖା ବିଶ୍ୱନାଥ ପ୍ରତ୍ୟାଖ୍ୟାନ କରି ନିଜ ପତ୍ରିକାର ମର୍ଯ୍ୟାଦା ଅକ୍ଷୁଣ୍ଣ ରଖିଥିଲେ । ଆମ୍ଭେମାନେ ମୁକ୍ତକଣ୍ଠରେ କହିପାରୁଁ ଯେ, 'ଉତ୍କଳସାହିତ୍ୟ'ରେ ପ୍ରବନ୍ଧ ଲେଖି ପ୍ରତିଷ୍ଠା ଲାଭ କରିବାପରେ ଆମ୍ଭମାନଙ୍କମଧ୍ୟରୁ ଅଧିକାଂଶ ଲୋକହିଁ ସାହିତ୍ୟସେବୀ ବା ସାହିତ୍ୟିକ ବୋଲି ପରିଚିତ ହୋଇଅଛନ୍ତି ।

ବିଶ୍ୱନାଥ ବାବୁ ପ୍ରଥମରୁ ଯେଉଁ ମାନଦଣ୍ଡଧାରୀ ସଂପାଦକୀୟ ଦାୟିତ୍ୱ ଗ୍ରହଣ କରିଥିଲେ, କେବେହେଁ ତାହାର ଖଣ୍ଡିତ ବିଧାନ କରି ନାହାନ୍ତି । ଭାଷା ଓ ଭାବ ସାହିତ୍ୟର ଦୁଇଟି ଅଙ୍ଗ । ପ୍ରତ୍ୟେକ ପ୍ରବନ୍ଧର ସଂପାଦନାବେଳେ ସେ ଏହି ଦୁଇଟି ଅଙ୍ଗପ୍ରତି ତୀବ୍ର ଦୃଷ୍ଟି ରଖୁଥିଲେ । ତାଙ୍କର ଯେଉଁସବୁ ସଂପାଦକୀୟ ଅଗ୍ରଲେଖ 'ଉତ୍କଳସାହିତ୍ୟ'ରେ ବାହାରୁଥିଲା, ସେଭଳି ଲେଖିବାର ଶକ୍ତି ବା ସାଧନା ଆମ୍ଭମାନଙ୍କ ସାହିତ୍ୟକ୍ଷେତ୍ରରେ ଅନ୍ୟ କାହାରି ଅଛି କି ନା ସନ୍ଦେହ । ତାଙ୍କର ଏହିସମସ୍ତ ଅଗ୍ରଲେଖଦ୍ୱାରା ଅନେକ ପଦସ୍ଥ ଲୋକଙ୍କର ଜ୍ଞାନଚକ୍ଷୁ ଉନ୍ମୀଳିତ ହୋଇଥିବା କଥା ଆମ୍ଭେମାନେ ଉତ୍ତମରୂପେ ଜାଣୁଁ ।

ସମାଲୋଚନା ମଧ୍ୟ ସାହିତ୍ୟର ଗୋଟିଏ ଅପରିହାର୍ଯ୍ୟ ଅଙ୍ଗ । ବିଶ୍ୱନାଥଙ୍କ ଭଳି ନିରପେକ୍ଷ ସମାଲୋଚକ ଓଡ଼ିଶାରେ ଅନ୍ୟ କେହି ହିଁଶାଏ ଜନ୍ମିଛନ୍ତି କି ନା ସନ୍ଦେହ । ଏକ ପକ୍ଷରେ ତାଙ୍କ ତୀବ୍ର ସମାଲୋଚନା ଭୟରେ ଯେପରି କେତେ ଲୋକ ଲେଖାଲେଖି ଚାଳନା ବନ୍ଦ କରିଦେବାକୁ ବାଧ୍ୟ ହୋଇଥିଲେ, ଅନ୍ୟ ପକ୍ଷରେ କେତେକ ଲେଖକ ସେହିପରି ଉତ୍ସାହିତ ହୋଇ ନୂତନ ଚିନ୍ତାଧାରାରେ ସାହିତ୍ୟ-କ୍ଷେତ୍ରକୁ ଉର୍ବର କରିଥିଲେ ।

—ଶ୍ରୀ କୁଳମଣି ଦାଶ

ଉତ୍କଳରେ ମାସିକ ସାହିତ୍ୟପତ୍ରିକାର ଯୁଗପ୍ରବର୍ତ୍ତକରୂପେ ତୁମ୍ଭର ନାମ ଅକ୍ଷୟ ହୋଇ ରହିଥିବ, ଏଥିରେ ସନ୍ଦେହ ନାହିଁ । ସାପ୍ତାହିକ ପତ୍ରିକାରେ ସାହିତ୍ୟାଲୋଚନା ତୁମ୍ଭର ଅନ୍ତରଙ୍ଗ ବନ୍ଧୁ ନୀଳମଣି ବିଦ୍ୟାରତ୍ନହିଁ 'ସମ୍ବଲପୁର ହିତୈଷିଣୀ' ପତ୍ରିକାରେ ସର୍ବପ୍ରଥମରୁ ଆରମ୍ଭ କରିଥିଲେ । ସେତେବେଳେ ତୁମ୍ଭେ ତାହାଙ୍କୁ ସର୍ବତୋଭାବରେ ସାହାଯ୍ୟ କରିଥିଲ । ଏହାଉତ୍ତାରୁ ତୁମ୍ଭର ପ୍ରାଣସ୍ୱରୂପ

‘ଉତ୍କଳସାହିତ୍ୟ’ର ଯେତେବେଳେ ଆବିର୍ଭାବ ହେଲା, ତାହାର ଲିପିଭଙ୍ଗୀ ଓ ବିଷୟନିର୍ବାଚନ ପଦ୍ଧତି ଯାହା ତୁମ୍ଭେ ଦେଖାଇଯାଇଅଛ, ତାହା ସମସ୍ତ ସାହିତ୍ୟପତ୍ରିକାର ଆଦର୍ଶ ହୋଇ ରହିଥିବ । ‘ଉତ୍କଳସାହିତ୍ୟ’ରେ ପ୍ରକାଶିତ ‘ବିବିଧପ୍ରସଙ୍ଗ’ରେ ତୁମ୍ଭର ସ୍ୱାଭାବିକତା ସର୍ବଦାହିଁ ସୁପରିସ୍ଫୁଟ ହେଉଥିଲା ଯେପରି ଭାଷାର ବିଶୁଦ୍ଧତା ଓ ଲାଳିତ୍ୟ, ସେହିପରି ମତର ଉଦାରତା ଓ ଯୁକ୍ତିଯୁକ୍ତତା, ସେହିଭଳି ନୀତିର ଉତ୍କର୍ଷ ସମପରିମାଣରେ ବିଦ୍ୟମାନ ଥିଲା । ଚିତ୍ତର ଏକାଗ୍ରତାହିଁ ଏହି ‘ବିବିଧ ପ୍ରସଙ୍ଗ’ର ମୂଳରେ ରହିଥିଲା । ଏଥିରେ ତୁମ୍ଭେ ଯାହା ଲେଖୁଥିଲ, ତାହାର ଏକ ପଙ୍‌କ୍ତି ସୁଦ୍ଧା କାହାରି ତୁଷ୍ଟିସାଧନପ୍ରତି ଦୃଷ୍ଟି ରଖି ଲେଖି ନାହିଁ । ଲୋକସମାଜରେ ଆଦୃତ ହେବାର ଲୋଭରେ, ଲୋକଙ୍କ ରୁଚି ଅଥବା ସଂସ୍କାରର ଅନୁରୂପ କରି ତୁମ୍ଭେ କିଛି କହୁ ନ ଥିଲ । ସ୍ୱୟଂ ଯାହା ସମଗ୍ର ହୃଦୟ ସହିତ ବିଶ୍ୱାସ କରୁଥିଲ, ତାହା ହୃଦୟୋନ୍ମୁକ୍ତ ଅକପଟ ଭାଷାରେ ବ୍ୟକ୍ତ କରୁଥିଲ । ଏହାହିଁ ‘ବିବିଧ ପ୍ରସଙ୍ଗ’ପ୍ରତି ସମସ୍ତଙ୍କର ସର୍ବପ୍ରଧାନ ଆକର୍ଷଣ ଥିଲା !

—ଶ୍ରୀ ଶଶିଭୂଷଣ ରାୟ

ଓଡ଼ିଆସାହିତ୍ୟ ଓ ବିଶ୍ୱନାଥ ଏହିଦୁହିଙ୍କମଧ୍ୟରେ ସୁଦୃଢ଼ ବନ୍ଧନ ଥିଲା । କେହି କାହାରିକୁ ଛାଡ଼ିପାରୁ ନ ଥିଲେ । ସାହିତ୍ୟସେବାରେ ସେ ଜୀବନ ଅତିବାହିତ କରିଥିଲେ । ଓଡ଼ିଆସାହିତ୍ୟର ଉନ୍ନତି ଆଶାରେ ସେ ‘ଉତ୍କଳସାହିତ୍ୟ’ ପତ୍ରିକା ସଂସ୍ଥାପନ କରିଥିଲେ । ମାନ୍ଦା ଯୁଗରେ, ସାମାନ୍ୟ ଅବସ୍ଥାରେ, ନିଜଉପରେ ନିର୍ଭର କରି ପତ୍ରିକାଟି ପରିଚାଳନ କରିଥିଲେ । ‘ଉତ୍କଳସାହିତ୍ୟ’ ତାହାର ଉଦ୍ଦେଶ୍ୟ ସାଧନ କରିଅଛି—ବହୁସଂଖ୍ୟକ ଓଡ଼ିଆ ଲେଖକ ଗଢ଼ିଦେଇଛି, ଓଡ଼ିଆସାହିତ୍ୟପ୍ରତି ଅନୁରାଗ ବୃଦ୍ଧି କରିଛି, ଭାଷା ଓ ଭାବର ନିର୍ମଳତାର ଆଦର୍ଶ ଦେଖାଇଅଛି । କ୍ଷୁଦ୍ର ଉତ୍କଳସାହିତ୍ୟ-ଭଣ୍ଡାରରୁ ଏକ ବୃହତ୍ ସଂପଦ ଚାଲିଗଲା । ତାଙ୍କ ବିୟୋଗରେ ଆଜ କେବଳ ଦୀର୍ଘନିଃଶ୍ୱାସ !

—ଶ୍ରୀ ଶ୍ରୀକୃଷ୍ଣ ମହାପାତ୍ର

ବିଶ୍ୱନାଥ ଯେତେବେଳେ ଉତ୍କଳସାହିତ୍ୟର ପ୍ରଚାର ଓ ପ୍ରସାର ଉଦ୍ଦେଶ୍ୟରେ ‘ଉତ୍କଳସାହିତ୍ୟ’ ପତ୍ରିକା ବାହାର କରିଥିଲେ । ଅନେକ ଲେଖକ ସେହି ପତ୍ରିକାରେ ଲେଖିବାପାଇଁ କ୍ଷେତ୍ର ପାଇଲେ । ମୁଁ ତାହାର ଜଣେ

ଧାରାବାହିକ ଲେଖକ ଥିଲି । ମୋର ପ୍ରଥମ ଲେଖା ସେହି 'ଉତ୍କଳସାହିତ୍ୟ'ରେ ପ୍ରକାଶିତ ହୋଇଥିଲା । ବିଶ୍ୱନାଥ ସେତେବେଳେ ଲେଖକମାନଙ୍କୁ ବହୁପ୍ରକାରେ ପ୍ରେରଣା ଦେଉଥିଲେ ।

—ଶ୍ରୀ ଜଗବନ୍ଧୁ ସିଂହ

କର୍ମକ୍ଷେତ୍ରରେ ତାଙ୍କ ପ୍ରତିଭା ବହୁତୋମୁଖୀ ଥିଲେହେଁ ସାହିତ୍ୟସେବାକୁ ସେ ନିଜ ଜୀବନର ପ୍ରଧାନ କର୍ତ୍ତବ୍ୟରୂପେ ବାଛିନେଇଥିଲେ । ତାଙ୍କ କର୍ମଜୀବନର ପ୍ରାରମ୍ଭରେ ନବ୍ୟ ଯୁଗର ଉତ୍କଳସାହିତ୍ୟର ଅବସ୍ଥା ଶୋଚନୀୟ ଥିଲା । ଉତ୍କଳ-ସାହିତ୍ୟର ପ୍ରାଚୀନ ବିଭବ ବିପୁଳ ଥିଲା ସତ୍ୟ, କିନ୍ତୁ କୌଣସି ଜାତି ବା ସମାଜ କେବଳ ପ୍ରାଚୀନ ସାହିତ୍ୟଦ୍ୱାରା ସବୁ ଦିନେ ଚଳି ନ ପାରେ; ତେଣୁ ପାଶ୍ଚାତ୍ୟ ସଭ୍ୟତାର ନବାଲୋକପ୍ରାପ୍ତ ଉତ୍କଳୀୟ ଜାତି କେବଳ ପ୍ରାଚୀନ ସାହିତ୍ୟ ଘେନି ଆଧୁନିକ ଯୁଗରେ ମୁଣ୍ଡ ଟେକନ୍ତା କିପରି ? ମାସିକ ପତ୍ରିକା ଜାତୀୟ ସାହିତ୍ୟର ଉନ୍ନତିସାଧନର ଗୋଟିଏ ପ୍ରଧାନ ଓ ପ୍ରକୃଷ୍ଟ ଉପାୟ । ଏଣୁ ବିଶ୍ୱନାଥ ଖଣ୍ଡିଏ ମାସିକ ସାହିତ୍ୟପତ୍ରିକାର ଅଭାବ ଅତି ତୀବ୍ରଭାବରେ ଅନୁଭବ କଲେ ଏବଂ ରାଧାନାଥ, ମଧୁସୂଦନ, ଫକୀରମୋହନ, ଗୌରୀଶଙ୍କର ପ୍ରମୁଖ ସୁଧୀବର୍ଗଙ୍କ ସାହାଯ୍ୟରେ 'ଉତ୍କଳସାହିତ୍ୟ' ପତ୍ରିକା ସଂପାଦନ କରିବାର ସ୍ଥିରପ୍ରାନ୍ତ କଲେ । ଏହି ପତ୍ରିକାର ସଂପାଦକ ଥାଇ ସେ ଉତ୍କଳୀୟ ଶିକ୍ଷିତମଣ୍ଡଳୀମଧ୍ୟରେ ଯେଉଁ ପ୍ରଗାଢ଼ ସାହିତ୍ୟାନୁରାଗ ଉଦ୍‌ବୋଧିତ ଓ ଜାଗରିତ କରିପାଇଅଛନ୍ତି ଏବଂ ଲେଖକସମାଜ ସୃଷ୍ଟି କରିପାଇଅଛନ୍ତି, ତାହା ନବ୍ୟ ଉତ୍କଳସାହିତ୍ୟର ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିଖିତ ହେବ । ଆଜକାଲି ଉତ୍କଳସାହିତ୍ୟ-କ୍ଷେତ୍ରରେ ଯେଉଁ କେତୋଟି ପତ୍ରପତ୍ରିକା ଦେଖାଯାଏ, ସେସବୁ 'ଉତ୍କଳସାହିତ୍ୟ' ପତ୍ରିକାର ସନ୍ତାନ-ସନ୍ତତି କହିଲେ ଅତ୍ୟୁକ୍ତି ହେବ ନାହିଁ; କାରଣ 'ଉତ୍କଳସାହିତ୍ୟ' ପତ୍ରିକାହିଁ ଏପରି ସାହିତ୍ୟସାଧନର ଉଦ୍‌ବୋଧକ ଓ ପଥପ୍ରଦର୍ଶକ । ସାହିତ୍ୟିକ କର୍ମୀବୀରମାନଙ୍କ-ମଧ୍ୟରେ ବିଶ୍ୱନାଥଙ୍କ ସ୍ଥାନ ଯେ ଅତି ଉଚ୍ଚ, ଏଥିରେ ଅଣୁମାତ୍ର ସନ୍ଦେହ ରହି ନ ପାରେ । ଗୋଟିଏ ମହାଭାରତୀୟ ଉପମା ଦେଲେ ବୋଧ ହୁଏ ତାହା ଆହୁରି ସ୍ପଷ୍ଟୀକୃତ ହୋଇପାରିବ । 'ମହାଭାରତ'ର ଏକ ସ୍ଥାନରେ ଲେଖାଅଛି :

"ଯୁଧିଷ୍ଠିରୋ ଧର୍ମମୟୋ ମହାଦ୍ରୁମଃ,
ସ୍କନ୍ଧୋଽର୍ଜୁନଃ, ଭୀମସେନୋଽସ୍ୟ ଶାଖା,
ମାଦ୍ରୀସୁତୌ ପୁଷ୍ପଫଳେ ସମୃଦ୍ଧେ,
ମୂଳଂ କୃଷ୍ଣୋ ବ୍ରହ୍ମ ଚ ବ୍ରାହ୍ମଣାଶ୍ଚ ।"

ଅର୍ଥାତ୍ "ଯୁଧିଷ୍ଠିର ଧର୍ମମୟ ମହାଦ୍ରୁମ—ଅର୍ଜୁନ ତାଙ୍କର ସ୍କନ୍ଧ, ଭୀମ ତାଙ୍କର ଶାଖା, ନକୁଳ ଓ ସହଦେବ ତାଙ୍କର ସମୃଦ୍ଧ ପୁଷ୍ପ ଓ ଫଳ ଏବଂ କୃଷ୍ଣ ବ୍ରହ୍ମ ଓ ବ୍ରାହ୍ମଣମାନେ ତାଙ୍କର ମୂଳ ।"

ସେହିପରି ଉତ୍କଳସାହିତ୍ୟକ୍ଷେତ୍ରରେ ଯୁଧିଷ୍ଠିରୋପମ ମଧୁସୂଦନ-ରାଧାନାଥ ସାହିତ୍ୟସାଧନରୂପ ମହାଦ୍ରୁମ, ଅର୍ଜୁନୋପମ କର୍ମବୀର ବିଶ୍ୱନାଥ ତାଙ୍କର ସ୍କନ୍ଧ, ଭୀମୋପମ ଉପନ୍ୟାସରସିକ ଉତ୍କଳବ୍ୟାସ ଫକୀରମୋହନ ଓ ନାଟକକାର ରାମଶଙ୍କର-କାମପାଳ ପ୍ରଭୃତି ତାଙ୍କର ଶାଖା, ନକୁଳ-ସହଦେବୋପମ ଆଧୁନିକ ସାହିତ୍ୟସାଧକମଣ୍ଡଳୀ ତାଙ୍କର ସମୃଦ୍ଧ ପୁଷ୍ପ ଓ ଫଳ ଏବଂ କୃଷ୍ଣ-ବ୍ରହ୍ମ-ବ୍ରାହ୍ମଣୋପମ ସ୍ୱୟଂ ପରମେଶ୍ୱର, ବେଦ-ବେଦାଙ୍ଗ ଓ ବାଲ୍ମୀକି-ବ୍ୟାସ-ସେକ୍ସପିଅର୍-ମିଲ୍‌ଟନ୍-କାର୍ଲାଇଲ୍-ଇମର୍ସନ୍ ପ୍ରଭୃତି ତାଙ୍କର ମୂଳ ।

—ଶ୍ରୀ ଆନନ୍ଦଚନ୍ଦ୍ର ପଣ୍ଡା

'ଉତ୍କଳସାହିତ୍ୟ' ପତ୍ରିକାଟି ବିଶ୍ୱନାଥଙ୍କ ସାହିତ୍ୟସେବାର ପ୍ରଧାନ ଅବଲମ୍ବନ ଥିଲା । ପତ୍ରିକାର ମିତ୍ର ଉତ୍ତମ ପ୍ରବନ୍ଧନିର୍ବାଚନରେ ତାହାଙ୍କର ବିଶେଷତ୍ୱ ଥିଲା । ସେହି ସମୟର ସମସ୍ତ ସୁଲେଖକଙ୍କ ଭାବନାପ୍ରସୂତ ଲେଖା 'ଉତ୍କଳ-ସାହିତ୍ୟ'ର ଅଙ୍ଗସୌଷ୍ଠବ ସମ୍ପାଦନ କରିଅଛି । 'ଉତ୍କଳସାହିତ୍ୟ'ର ସମ୍ପାଦନାରେ ସେ କେବେ କାଞ୍ଚନ ଲାଭ କରିଥିଲେ, ଆମ୍ଭେମାନେ ଜାଣୁ ନାହିଁ; କିନ୍ତୁ ଆମ୍ଭେମାନେ ଯେତିକି ସମୟରୁ ଏହି ପତ୍ରିକା ସହିତ ସଂପୃକ୍ତ, ସେହି ସମୟରୁ ଦେଖିଆସୁଅଛୁଁ ଯେ, 'ଉତ୍କଳସାହିତ୍ୟ'ପାଇଁ ତାହାଙ୍କୁ ବହୁ କ୍ଷତି ସହ୍ୟ କରିବାକୁ ହୋଇଅଛି । ବିଶ୍ୱନାଥ କିନ୍ତୁ ଅବିଚଳିତ ହୃଦୟରେ ଜଣେ ଗ୍ରାହକ ଥିବାପର୍ଯ୍ୟନ୍ତ 'ସାହିତ୍ୟ'ସଂପାଦନାର ସଂକଳ୍ପ ମନମଧ୍ୟରେ ପୋଷଣ କରିଥିଲେ ।

ଯେଉଁ ମଧୁସୂଦନଙ୍କ ପ୍ରେରଣାରେ ବିଶ୍ୱନାଥ 'ଉତ୍କଳସାହିତ୍ୟ'-ସଂପାଦନାରେ ବ୍ରତୀ ହୋଇଥିଲେ, ସେହି ମଧୁସୂଦନଙ୍କ ପ୍ରତିଷ୍ଠିତ 'ଉତ୍କଳସାହିତ୍ୟ-ସମାଜ' ମଧ୍ୟ ବିଶ୍ୱନାଥଙ୍କର ପ୍ରିୟ ବସ୍ତୁ ଥିଲା । ସେ ଏହାର ଉନ୍ନତିକଳ୍ପେ ଯେଉଁ ପରିଶ୍ରମ କରିଛନ୍ତି, ତାହା ସହଜରେ ବିସ୍ମୃତ ହେବାର ନୁହେଁ । 'ସାହିତ୍ୟ-ସମାଜ'ଗୃହର ନିର୍ମାଣରେ ବିଶେଷତ୍ୱ ଅଛି; ସେଥିପାଇଁ ବିଶ୍ୱନାଥ ଓ ତାଙ୍କ ସହକର୍ମିଗଣ ଧନ୍ୟବାଦର ପାତ୍ର । ତାହାଙ୍କୁ 'ସାହିତ୍ୟ ସମାଜ'ର ସଭ୍ୟ ଓ ସହକାରୀ ସଭାପତିରୂପେ ଆମ୍ଭେମାନେ ଦେଖିଅଛୁଁ । ଏହି ଦୁଇ ପଦବୀରେ ଥାଇ

ସେ ଯେପରି ନିର୍ଭୀକ, ପକ୍ଷପାତଶୂନ୍ୟ ଓ ସୁବିବେଚକରୂପେ କାର୍ଯ୍ୟ କରିଅଛନ୍ତି, ତାହା ଏପର୍ଯ୍ୟନ୍ତ ଆମ୍ଭମାନଙ୍କ ସ୍ମୃତିର ସଂପଦ କହିଲେ ଚଳେ ।

—ଶ୍ରୀ କୃଷ୍ଣଚନ୍ଦ୍ର ସେନଗୁପ୍ତ

ଜାତୀୟ ସାହିତ୍ୟ-ଜାଗରଣର ସେହି ଉଷାକାଳରେ ଅଗ୍ରଦୂତରୂପେ ସେ ଯାହା କରିଯାଇଅଛନ୍ତି, ତାହା ହୋଇ ନ ଥିଲେ ଆଜିର ଆମ୍ଭମାନଙ୍କ ଜାତୀୟ ସାହିତ୍ୟର କି ଦୁର୍ଦ୍ଦଶା ହୋଇଥାନ୍ତା, ତାହା ବୁଦ୍ଧିମାନ୍ ବ୍ୟକ୍ତିମାତ୍ରକେ ବୁଝି-ପାରିବେ । ସେକାଳର ମୁଷ୍ଟିମେୟ ସାହିତ୍ୟିକଙ୍କୁ ନେଇ ସେ କିପରି 'ଉତ୍କଳ-ସାହିତ୍ୟ' ମାସିକ ପତ୍ର ଚଳାଇବାକୁ ଲାଗିଲେ ଏବଂ ତାହାର ବଳରେ ଦେଶରେ କିପରି ସାହିତ୍ୟିକ ଆଲୋଚନାର ଆରମ୍ଭ କଲେ, ତାହା ଯେଉଁମାନେ ସେସମସ୍ତ ପୁରୁଣା 'ଉତ୍କଳସାହିତ୍ୟ' ଦେଖିବେ, ବୁଝିପାରିବେ ।·········ଜାଣିପାରିବେ ସେକାଳର 'ସାହିତ୍ୟ'ର ଆଦର୍ଶ କେତେ ଉଚ୍ଚ ଥିଲା ଏବଂ ସଂପାଦକ କି ବିବେଚନା ଓ ବିଚକ୍ଷଣତାର ସହିତ ସେହି ପତ୍ରଖଣ୍ଡି ଚଳାଉଥିଲେ ।

'ଉତ୍କଳସାହିତ୍ୟ' ଯୁଗପରେ ଯୁଗର ଲେଖକ ଓ କବି ସୃଷ୍ଟି କରିଯାଇଅଛି । ସଂପାଦକଙ୍କର ଆଲୋଚନା, ବିବିଧ ପ୍ରସଙ୍ଗ, ପୁସ୍ତକ ସମାଲୋଚନା 'ଉତ୍କଳ-ସାହିତ୍ୟ'ର ଏକ ବିଶେଷତ୍ୱ । ସେଥିରେ ଏକାଧାରରେ ନିର୍ଭୀକତା, ତେଜସ୍ୱିତା ଓ ଲିପିକୁଶଳତାର ଯେଉଁ ଚିହ୍ନ ଦେଖିବାକୁ ମିଳେ, ଏତେ ଶିକ୍ଷା-ସଭ୍ୟତାର ବୃଦ୍ଧି ସତ୍ତ୍ୱେ ଆଧୁନିକ ସାହିତ୍ୟପତ୍ରରେ ମଧ୍ୟ ତାହା ଦେଖିବାକୁ ମିଳେ ନାହିଁ । ସ୍ୱନାମପ୍ରସିଦ୍ଧ କବି ନନ୍ଦକିଶୋର ଓ ଗଙ୍ଗାଧର 'ଉତ୍କଳସାହିତ୍ୟ'ର ସଂସ୍ରବରେ ଆସି ସେମାନଙ୍କ କବିଜୀବନର ପୂର୍ଣ୍ଣତା ଆଣିପାରିଥିଲେ । ଶକ୍ତିଶାଳୀ ଉଦୀୟମାନ ଲେଖକମାନଙ୍କପ୍ରତି 'ସାହିତ୍ୟ' ଯେପରି ସସ୍ନେହ ଦୃଷ୍ଟି ଦେଇ ସେମାନଙ୍କୁ ସମାଦର କରୁଥିଲା, ତାହାର ତୁଳନା ଆଜିକାଲି କାହିଁ ? ··········· ତାଙ୍କର ଓଡ଼ିଆ-ସାହିତ୍ୟପ୍ରତି ଦାନର ମାପ କଳନା କରିହେବ ନାହିଁ ।

ରୁଚି ଓ ମତିର ଆଦର୍ଶ ରକ୍ଷା କରିବାରେ 'ସାହିତ୍ୟ' କେବେହେଁ ପଶ୍ଚାତ୍‌ପଦ ହୋଇ ନାହିଁ । ବ୍ୟକ୍ତିବିଶେଷର ମୁହଁକୁ ଅନାଇ 'ସାହିତ୍ୟ'ସଂପାଦକ କେତେବେଳେ ସତ୍ୟର ଅପଳାପ କରିଛନ୍ତି ବୋଲି ଆମ୍ଭମାନଙ୍କର ମନେ ହେଉ ନାହିଁ । ରାଧାନାଥ-ମଧୁସୂଦନଙ୍କ ଶିଷ୍ୟତ୍ୱ ଗ୍ରହଣ କରି ମଧ୍ୟ ସେମାନଙ୍କ ଲେଖା, କାର୍ଯ୍ୟ ବା ମତାମତପ୍ରତି ଅନେକମାନ ପକ୍ଷପାତୀ ନ ହୋଇ ଯାହା ନ୍ୟାୟସଙ୍ଗତ

ମନେ କରୁଥିଲେ, 'ଉତ୍କଳସାହିତ୍ୟ'ର ସଂପାଦକ ସେତକ ନିର୍ଭୀକଭାବରେ ଲେଖିବାକୁ କେତେବେଳେ କୁଣ୍ଠିତ ହେଉ ନ ଥିଲେ ।

ସାହିତ୍ୟସଂସାରରେ ଯାହା ସ୍ୱାଧୀନ ଚିନ୍ତା ବା ସ୍ୱାଧୀନ ଭାବପ୍ରକାଶ-ଶକ୍ତିର ପ୍ରଚଳନ ହୋଇଅଛି, 'ଉତ୍କଳସାହିତ୍ୟ' ସମାଦରରେ ସେହିସବୁ ନୂତନତ୍ୱକୁ ସ୍ଥାନ ଦେଇ ଏ ଦେଶର ସାହିତ୍ୟିକ-ସ୍ୱାଧୀନ ମତବାଦ-ପ୍ରଚଳନରେ ଯଥେଷ୍ଟ ସାହାଯ୍ୟ କରିଅଛି । କବି ମଦନମୋହନ, ଲକ୍ଷ୍ମୀକାନ୍ତ, ବୈକୁଣ୍ଠନାଥ ଓ କାଳନ୍ଦୀଚରଣ ପ୍ରଭୃତି କବିତାକ୍ଷେତ୍ରରେ ନୂତନ ଶକ୍ତି ଓ ନବୀନ ଭାବସମ୍ଭାର ଘେନି ଯେତେବେଳେ ଉପସ୍ଥିତ ହେଲେ, 'ଉତ୍କଳସାହିତ୍ୟ' ସେସବୁକୁ ଆନନ୍ଦରେ ସାଦର ନିମନ୍ତ୍ରଣ କରିଆସିଅଛି ।

ଏସବୁ ଲେଖିବାପରେ ଆଉ ଗୋଟିଏ କଥା ମନେ ହେଉଅଛି; ତାହା ଯୁବକ ଲେଖକମାନଙ୍କପ୍ରତି ତାଙ୍କର ବ୍ୟବହାର । 'ମୟୂରଭଞ୍ଜ ଗେଜେଟ୍'ରେ ଲେଖାଅଛି :

"His youthful vigour and zeal, and his Fatherly treatment towards the young writers will be lovingly remembered by all those who came in contact with him."

କଥାଟି ଅତି ସତ୍ୟ ଓ ଅନୁଭବଲବ୍ଧ । ଉଦୟମାନ ଯୁବକ ଲେଖକ-ମାନେ ତାଙ୍କର ସସ୍ନେହ ପୂର୍ଣ୍ଣ ପ୍ରବର୍ତ୍ତନାରେ ଆଧୁନିକ ଉତ୍କଳସାହିତ୍ୟ-କ୍ଷେତ୍ରରେ ଯାହା କରିପାରିଛନ୍ତି, ତାହାର ତୁଳନା ନାହିଁ ।

— ଶ୍ରୀ ପଦ୍ମଚରଣ ପଟ୍ଟନାୟକ

## ୪. 'ବିବିଧ ପ୍ରବନ୍ଧ'କାର

'ଉତ୍କଳସାହିତ୍ୟ'ର ସଂପାଦକତ୍ୱ ଛଡ଼ା ସେ 'ବିବିଧ ପ୍ରବନ୍ଧ'ର ରଚୟିତାରୂପେ ଉତ୍କଳସାହିତ୍ୟ-ଜଗତରେ ସୁବିଖ୍ୟାତ । 'ବିବିଧ ପ୍ରବନ୍ଧ'ର ଓଜସ୍ୱିନୀ ଭାଷା ଉତ୍କଳରେ ଖୁବ୍ କମ୍ ଲେଖକ ଅନୁକରଣ କରିବାରେ ସଫଳକାମ ହୋଇଅଛନ୍ତି—ସମକକ୍ଷ ହେବା କଥା ତ ଦୂରର ପାଠ ! ତାଙ୍କ ଓଜସ୍ୱିନୀ ଭାଷା ତାଙ୍କ ହୃଦୟର ଜ୍ୱଳନ୍ତ ଜୀବନ୍ତ ବିଶ୍ୱାସର ସ୍ଫୁଲିଙ୍ଗକୁ ପାଠକଉପରେ ବିକ୍ଷିପ୍ତ କରେ ।

—ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ

ଶତବାର୍ଷିକୀ ସ୍ମରଣିକା

ସରଳ ମଧୁର ଭାବଗର୍ଭକ ଗଦ୍ୟରଚନାହିଁ ବିଶ୍ୱନାଥଙ୍କ ବିଶେଷତ୍ୱ । ଉତ୍କଳସାହିତ୍ୟର ଅନ୍ୟତମ ରଥୀ ସୁବିଦ୍ୱାନ୍ ସୂକ୍ଷ୍ମଦର୍ଶୀ ସ୍ୱର୍ଗତ ଚନ୍ଦ୍ରମୋହନ ମହାରଣା ପ୍ରକାଶ କରିଥିଲେ :

"ବିଶ୍ୱନାଥଙ୍କ 'ବିବିଧ ପ୍ରବନ୍ଧ'ଭଳି ସ୍ୱଚ୍ଛବିସୁନ୍ଦର ଭାବୋଦ୍ଦୀପକ ଗଦ୍ୟରଚନା ଆମ ସାହିତ୍ୟରେ ଦ୍ୱିତୀୟ ନାହିଁ । ଚିନ୍ତା ଯେଉଁଭଳି ନିର୍ମଳ, ଭାଷା ଓ ଭାବ ସେହିପରି ନିର୍ମଳ । ଓଡ଼ିଆ ଭାଷା କିପରି ସମୁଚ୍ଚ ଭାବ ଧାରଣ କରିପାରେ, 'ବିବିଧ ପ୍ରବନ୍ଧ'ରେ ତାହାର ଆଦର୍ଶ ରହିଅଛି । ତାଙ୍କ ଲେଖାବଳୀର ଶୈଳୀ ଯେପରି ବୈଶିଷ୍ଟ୍ୟମୟ, ସେହିପରି ଚିତ୍ତାକର୍ଷକ ଓ ନିର୍ବାଧ । ସେସବୁ ପ୍ରବନ୍ଧ ପଢ଼ୁ ପଢ଼ୁ ମନେ ହୁଏ, ସତେ ଯେପରି ଗୋଟିଏ ଅନାବିଳ ସ୍ୱଚ୍ଛ ପୟଃସ୍ରୋତ ଅଭ୍ରଂକଷ ଗିରିଶୃଙ୍ଗରୁ କଳକଳ ନାଦରେ ବହିଆସୁଅଛି ।"

—ଶ୍ରୀ କୁଳମଣି ଦାଶ

ତୁମ୍ଭେ କେବେହେଁ ଚର୍ବିତ ବସ୍ତୁର ପୁନଶ୍ଚର୍ବଣ କରିବାକୁ ସୁଖ ପାଉ ନ ଥିଲ । ତୁମ୍ଭେ ତୁମ୍ଭର ପ୍ରଥମ ରଚନାଦ୍ୱାରହିଁ ଉତ୍କଳର ବିଦ୍ୱଜ୍ଜନସମାଜର ସୁଦୃଷ୍ଟି ଆକର୍ଷଣ କରିଥିଲ । ତୁମ୍ଭେ 'ଉତ୍କଳସାହିତ୍ୟ'ର ଆମରଣ ସେବା କରି ସାହିତ୍ୟକୁ ଯାହା ଦେଇଯାଇଅଛ, ସେ ଦାନର ପରିମାଣ ପ୍ରଚୁର ନୋହିଲେ ମଧ୍ୟ ତାହାର ମୂଲ୍ୟ ଅସାମାନ୍ୟ ।

—ଶ୍ରୀ ଶଶିଭୂଷଣ ଗୁପ୍ତ

'ଉତ୍କଳସାହିତ୍ୟ' ଓ 'ଉତ୍କଳ ସାହିତ୍ୟ ସମାଜ' ସହିତ ସଂପୃକ୍ତ ଥାଇ ତାହାଙ୍କୁ ଯେଉଁରିଭାବରେ ସାହିତ୍ୟର ସେବା କରିବାକୁ ହୋଇଥିଲା, ତଦ୍‌ବ୍ୟତୀତ ସେ ସାଧାରଣଭାବରେ ମଧ୍ୟ ସାହିତ୍ୟର ସେବା କରିଅଛନ୍ତି । 'ବିବିଧ ପ୍ରବନ୍ଧ' ତାହାଙ୍କ ସାହିତ୍ୟସେବାର ଅନ୍ୟତମ ସାକ୍ଷୀ । ସେ ବହୁ ପୁସ୍ତକ ପ୍ରଣୟନ କରି ନାହାନ୍ତି ସତ୍ୟ, କିନ୍ତୁ 'ବିବିଧ ପ୍ରବନ୍ଧ'ରେ ଯେଉଁ ବିଶୁଦ୍ଧ ଓଜସ୍ୱିନୀ ଭାଷା, ସଦ୍‌ଭାବନା ଓ ସ୍ୱାଧୀନ ଚିନ୍ତାର ନିଦର୍ଶନ ରଖିଯାଇଅଛନ୍ତି, ତାହା ଚିରକାଳ ସାହିତ୍ୟସେବୀମାନଙ୍କର ପଥପ୍ରଦର୍ଶକରୂପେ କାର୍ଯ୍ୟ କରିବ ।

—ଶ୍ରୀ କୃଷ୍ଣଚନ୍ଦ୍ର ସେନଗୁପ୍ତ

ପଦ୍ଧକ ସାହିତ୍ୟକ୍ଷେତ୍ରରେ ପ୍ରାପ୍ତ ଅର୍ଦ୍ଧଶତାବ୍ଦୀକାଳ ଅକାତରଭାବରେ ଖାରି ପରି ଯୁଦ୍ଧ କରି ସେ ଦାନ ଦେଇଗଲେ କ'ଣ ? ସୃଷ୍ଟି କରିଗଲେ କ'ଣ ?

ଶଦହେଭେସ୍ଥାଳଙ୍କ

ସେ ଗ୍ରନ୍ଥାବଳୀ ରଚିଯାଇ ନାହାନ୍ତି, କାବ୍ୟ-କବିତା ବା ବିବିଧ ପୁସ୍ତକ ଲେଖିଯାଇ ନାହାନ୍ତି । ସେ ଲେଖିଯାଇଛନ୍ତି ଗୋଟିଏ ବଳିଷ୍ଠ ଓ ଓଜସ୍ୱୀ ଗଦ୍ୟ-ସାହିତ୍ୟର ଆଦର୍ଶ । ତାହା ଗଦ୍ୟ-ପ୍ରାଣର ଉଚ୍ଛ୍ୱାସରେ ଉଚ୍ଛ୍ୱସିତ, ଦେବତାଙ୍କ ଆଶୀର୍ବାଦପରି ପବିତ୍ର, ଋଷିମୁଖନିଃସୃତ ଓଁକାରନିନାଦପରି ଋଜୁ ଓ ଗମ୍ଭୀର ଏବଂ ପ୍ରସ୍ରବିଣୀର କ୍ଷୀଣକଳଧାରପରି ତରଳ । ତାହା ଏକାଧାରରେ କହିବା, ଗାଇବା ଓ ଉପଦେଶ ଦେବାଭଳି ମନେ ହୁଏ ।

—ଶ୍ରୀ ଚନ୍ଦ୍ରଶେଖର ମିଶ୍ର

ସେ ଏକ ଅପୂର୍ବ ଲିପିକୁଶଳତାର ଅଧିକାରୀ ଥିଲେ । ତାଙ୍କର ପ୍ରାଞ୍ଜଳ, ଓଜସ୍ୱିନୀ ଲିଖନଭଙ୍ଗୀର ତୁଳନା କେବଳ ତାଙ୍କର ଲେଖାରେ ମିଳେ । ତାଙ୍କର ଲେଖାଭିତରେ ଭାବ କିଛି ଲୁଚି ରହିପାରୁ ନ ଥିଲା । ତାଙ୍କର ଲେଖାର ଭଙ୍ଗୀ ବକ୍ତୃତାର ଭଙ୍ଗୀପରି ବିଶଦ, ପ୍ରାଞ୍ଜଳ ଓ ମର୍ମସ୍ପର୍ଶୀ । ଓଡ଼ିଶାଖଣ୍ଡରେ ଆଜି କେହି ସେପରି ଲେଖା ଲେଖିପାରନ୍ତି ବୋଲି ଆମ୍ଭମାନଙ୍କୁ ଜଣା ନାହିଁ ।

—ଶ୍ରୀ ପଦ୍ମଚରଣ ପଟ୍ଟନାୟକ

## ୪. ବକ୍ତା

ଓଡ଼ିଆ ଭାଷାରେ ବକ୍ତାରୂପେ ବିଶ୍ୱନାଥ ବାବୁଙ୍କର ଯେଉଁ ବୈଶିଷ୍ଟ୍ୟ ଥିଲା, ତାହା ତାଙ୍କ ପୂର୍ବରୁ କେହି ଦେଖାଇ ନ ଥିଲେ, ତାଙ୍କ ସମସାମୟିକ କେହି ଦେଖାଇ ନାହାନ୍ତି ଓ ନିକଟ ଭବିଷ୍ୟତରେ ଯେ କିଏ ଦେଖାଇବେ, ଏହା ମନରେ କଳ୍ପନା କରିହେଉ ନାହିଁ ।

—ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ

ବିଶ୍ୱନାଥଙ୍କଭଳି ସୁବକ୍ତା ଏ ଯୁଗର ରଙ୍ଗମଞ୍ଚରେ ଅତ୍ୟଳ୍ପ ଦେଖା ଦେଇଛନ୍ତି । ଶୁଷ୍କ ଇନ୍ଧନରେ ଅଗ୍ନି ସଂଯୋଗ ହେଲାପରି ଭାବର ମାଧୁରୀ ଓ ଭାଷାର ସ୍ନିଗ୍ଧତା କ୍ରମେ ଶ୍ରୋତାର ମାନସପଟରେ ଅଙ୍କିତ ହୋଇ ରହି-ଯାଉଥିଲା । ବଙ୍ଗଦେଶରେ ଏ ନବ ଯୁଗରେ ମାନନୀୟ ସୁରେନ୍ଦ୍ରନାଥ ବାନାର୍ଜି ଓ ବିପିନଚନ୍ଦ୍ର ପାଲ ଯେଉଳି ବକ୍ତା ଥିଲେ, ଉତ୍କଳରେ ଏକମାତ୍ର ବିଶ୍ୱନାଥହିଁ ସେ ସ୍ଥାନର ଅଧିକାରୀ ।

—ଶ୍ରୀ କୁଳମଣି ଦାଶ

ଶତବାର୍ଷିକୀ

ହେ ବାଗ୍ମିପ୍ରବର ! ଉତ୍କଳରେ ଜନ୍ମଗ୍ରହଣ କରି ଏଭଳି ହୃଦୟସ୍ପର୍ଶିନୀ ଓଜସ୍ୱିନୀ ଭାଷାରେ ବକ୍ତୃତା କରିବାକୁ ତୁମ୍ଭ ବ୍ୟତୀତ ଆଉ କିଏ କ୍ଷମ ? ବକ୍ତୃତା ସମୟରେ ଅପୂର୍ବ ଶବ୍ଦସମ୍ଭାର ହଠାତ୍ ତୁମ୍ଭ ସ୍ମୃତିପଟକୁ କେଉଁଠାରୁ ଯେ ଆସିଯାଏ, ତାହା କେହି ସ୍ଥିର କରିପାରନ୍ତି ନାହିଁ । ମାତ୍ର ଏହି ଅପୂର୍ବ ଶକ୍ତି ଧାରଣ କରି ସୁଦ୍ଧା ସଭାସ୍ଥଳକୁ କେତେବେଳେ କର୍ମକ୍ଷେତ୍ର ଏବଂ ନିଜର ବାଗ୍ମିତାକୁ ଜୀବନର ମହାବ୍ରତ ବୋଲି ଗ୍ରହଣ କରିବା ତୁମ୍ଭର ଅଭ୍ୟାସ ନ ଥିଲା ।

—ଶ୍ରୀ ଶଶିଭୂଷଣ ରାୟ

ବିଶ୍ୱନାଥ ପ୍ରଥମେ କଂଗ୍ରେସବାଦୀ ଥିଲେ; କେବଳ ସେତିକି ନୁହେଁ, ସେ ଜଣେ ଚରମପନ୍ଥୀ ଥିଲେ । ମୁଁ ନିଜେ ତାଙ୍କର ତତ୍କାଳୀନ ବକ୍ତୃତା ଶୁଣିବାର ସୁଯୋଗ ପାଇଥିଲି । ତାଙ୍କ ବକ୍ତୃତା ଓଜସ୍ୱିନୀ ଭାଷାପୂର୍ଣ୍ଣ ଏବଂ ପ୍ରତି ପଦରେ ଅଗ୍ନିସ୍ଫୁଲିଙ୍ଗ ବର୍ଷଣ କରୁଥିଲା । ସେପ୍ରକାର ବକ୍ତୃତା କଂଗ୍ରେସର ବର୍ତ୍ତମାନ ଆନ୍ଦୋଳନବେଳେ ଉତ୍କଳର କୌଣସି ବକ୍ତାଙ୍କଠାରୁ ଶୁଣି ନାହିଁ ।

—ଶ୍ରୀ ଜଗବନ୍ଧୁ ସିଂହ

ତାଙ୍କର ଆଉ ଗୋଟିଏ ଅସାଧାରଣ ଶକ୍ତି ହେଲା ତାଙ୍କର ବାଗ୍ମିତା । ଉତ୍କଳଖଣ୍ଡରେ ତାଙ୍କପରି ବଜ୍ରନିର୍ଘୋଷରେ ଅନର୍ଗଳ ବକ୍ତୃତା କରିପାରିବାର ଶକ୍ତି ଆଉ କାହାରି ନ ଥିଲା । ତାଙ୍କ ବକ୍ତୃତାର ଭାଷା ଲେଖାର ଭାଷାପରି ଓଜସ୍ୱିନୀ । ଆଗ୍ନେୟଗିରିରୁ ତରଳ ଧାତୁସ୍ରୋତ ବହିଲାପରି ତାଙ୍କ ବକ୍ତୃତାର ସ୍ରୋତ ଛୁଟିଆସୁଥିଲା । ସେକାଳର ଯେକୌଣସି ସାଧାରଣ ସଭା ସମିତିରେ ବିଶ୍ୱନାଥଙ୍କ ବକ୍ତୃତା ଶୁଣିବା ଗୋଟିଏ ପ୍ରୀତିକର ଓ ଉନ୍ମାଦକର ଘଟନା ଥିଲା । ଜନଗଣଅଧିନାୟକ ମଧୁସୂଦନ ଓ ଗୋପବନ୍ଧୁ ଉତ୍କଳଖଣ୍ଡରେ ବକ୍ତୃତା ଦେଇ ଜନମନ ହରଣ କରିପାରୁଥିଲେ; ମାତ୍ର ବିଶ୍ୱନାଥଙ୍କ ବକ୍ତୃତାରେ ଯେଉଁ ଓଜସ୍ୱିତା ଥିଲା, ତାହା ଆଉ କାହାରିଠାରେ ଦେଖାଯାଇ ନାହିଁ । ସେ ବକ୍ତୃତା ଦେଲେ ସଭାମଣ୍ଡପରେ ସମସ୍ତେ ନୀରବ ନିସ୍ପନ୍ଦ ହୋଇ ମନ୍ତ୍ରମୁଗ୍ଧପରି ବସିରହୁଥିଲେ । ବକ୍ତୃତାରେ ସେହି ତାନ-ମାନ-ଲୟପୂର୍ଣ୍ଣ ଭାଷାର ଝଙ୍କାର ବିଶ୍ୱନାଥଙ୍କ ଛଡ଼ା ଆଉ କାହାରିଠାରେ ଦେଖିବାକୁ ମିଳି ନାହିଁ ।

—ଶ୍ରୀ ପଦ୍ମଚରଣ ପଟ୍ଟନାୟକ

## ୭. ଧର୍ମ

ଧର୍ମଜଗତରେ ମଧ୍ୟ ସେ ବିଶିଷ୍ଟ ସ୍ଥାନ ଅଧିକାର କରିଥିଲେ । ଧର୍ମ-ବିଶ୍ୱାସପାଇଁ ସେ ପାରିବାରିକ, ସାମାଜିକ ଓ ସାଂସାରିକ କେତେ ନିର୍ଯ୍ୟାତନାକୁ ଅକୁଣ୍ଠିତ ଭାବରେ ଛାତି ପତେଇ ଗ୍ରହଣ କରିନେଇଥିଲେ । ଧର୍ମରାଜ୍ୟରେ 'ଦୋନାବୁଡ଼ିଆ' ନୀତି ତାଙ୍କର ପ୍ରକୃତିବିରୁଦ୍ଧ ଥିଲା । ଯାହା ସେ ବିଶ୍ୱାସ କରୁ ନ ଥିଲେ, ସେପରି କାର୍ଯ୍ୟକୁ ସେ ଅନୁମୋଦନ କରିପାରୁ ନ ଥିଲେ । ବହୁ ସାଂସାରିକ କଷ୍ଟ ଓ ଅଭାବରେ ବୁଡ଼ିରହିବାବେଳେ ସୁଦ୍ଧା ଈଶ୍ୱରଙ୍କ ଦୟାଉପରେ, କରୁଣାମୟ ବିଧିଙ୍କର ବିଧାନଉପରେ ତାଙ୍କର ଅଟଳ ବିଶ୍ୱାସ ଥିବାର ମୁଁ ଅନୁଭବ କରିଛି । ଭଗବତ୍‌ପ୍ରାର୍ଥନାଦ୍ୱାରା ସେ ଅଶାନ୍ତିମଧ୍ୟରେ ଶାନ୍ତି ଲାଭ କରୁଥିଲେ । ତାଙ୍କର ପ୍ରାର୍ଥନାର ଭାଷା ଓ ଭକ୍ତ୍ୟଶ୍ରୁପ୍ଲାବିତ ବଦନ ପାଷଣ୍ଡ-ହୃଦୟରେ ମଧ୍ୟ ଭକ୍ତିଧାରା ପ୍ରବାହିତ କରୁଥିଲା । ସାଂସାରିକ କୌଣସି ନୂଆ କାର୍ଯ୍ୟ ନୂଆ କରି ଆରମ୍ଭ କଲାବେଳେ ସେ ପ୍ରଥମେ ପ୍ରାର୍ଥନା କରୁଥିଲେ ।

— ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ

ତାଙ୍କର ସ୍ୱଧର୍ମତ୍ୟାଗ ସଙ୍ଗେ କାମିନୀ-କାଞ୍ଚନାଦି ପ୍ରଲୋଭନର ଗନ୍ଧ-ସମ୍ବନ୍ଧ ନ ଥିଲା । ଧର୍ମାନ୍ତରଗ୍ରହଣ ସଙ୍ଗେ ସଙ୍ଗେ ଯେତେବେଳେ ଦାରୁଣ ଅର୍ଥାଭାବ ଓ ତୀବ୍ର ସାମାଜିକ ନିର୍ଯ୍ୟାତନା ଆରମ୍ଭ ହେଲା, ସେ ମହାବୀରପରି ସମର-ପ୍ରାଙ୍ଗଣରେ ଦଣ୍ଡାୟମାନ ହୋଇ ରହିଲେ । ଆତ୍ମପ୍ରତ୍ୟୟଲବ୍ଧ ସତ୍ୟ-ଧର୍ମର ଦୁର୍ଭେଦ୍ୟ ବର୍ମ ତାଙ୍କର ଏକମାତ୍ର ଅବଲମ୍ବନ । ନୀରବ ପ୍ରାର୍ଥନା, ଐକାନ୍ତିକ ସାଧନା ଓ ଅଟଳ ବିଶ୍ୱାସବଳରେ ସେ ଜୟଶ୍ରୀବିମଣ୍ଡିତ । 'ବ୍ରାହ୍ମ-ସମାଜ'ରେ ତାଙ୍କ ସୁଧାମୟୀ ଉପାସନା ଯେଉଁମାନଙ୍କ ଶ୍ରବଣ-କୁହରରେ ଥରେମାତ୍ର ପ୍ରବେଶ କରିଛି, ସେମାନଙ୍କ ପ୍ରାଣ ସତ୍ୟଧର୍ମର ମାଧୁରୀରେ ଦ୍ରବୀଭୂତରେ ବିଗଳିତ ହୋଇଯାଇଛି । ତାଙ୍କ ଭାବପ୍ରବଣତାରେ ବାଗ୍‌ଦେବୀ ସତେ ଯେପରି ଦାସୀପରି ଭକ୍ତଙ୍କର ଅନୁଗତ ହୋଇ ରହୁଥିଲେ । କେବଳ ଉତ୍କଳ ପ୍ରଦେଶରେ ନୁହେଁ, ବଙ୍ଗ ପ୍ରଦେଶରେ ମଧ୍ୟ ବିଶ୍ୱନାଥଙ୍କର ଏହି ଭାବମୟୀ ଉପାସନା ବହୁ ସୁଧୀ ସାଧୁଙ୍କର କର୍ଣ୍ଣରସାୟନ ହେଉଥିଲା ।

ହିନ୍ଦୁ, ମୁସଲମାନ, ଖ୍ରିସ୍ଟିଆନ ସବୁ ଧର୍ମରେ ଯେ ସାର ସତ୍ୟ ନିହିତ ଅଛି ଏବଂ ସବୁ ଧର୍ମରେ ଯେ ମହାପୁରୁଷମାନେ ଜନ୍ମ ଗ୍ରହଣ କରି ପ୍ରେମ-ରଜ୍ଜୁରେ

ଜଗଦ୍‌ବାସୀଙ୍କୁ ବାନ୍ଧିଯାଇଅଛନ୍ତି, କେବେହେଲେ ସେ ଏହା ଅସ୍ୱୀକାର କରୁ ନ ଥିଲେ । ବିନେ ଏହି ପ୍ରସଙ୍ଗରେ ସେ ସ୍ପଷ୍ଟ କରିଥିଲେ :

> "ରାମକୃଷ୍ଣ ପରମହଂସ, ଚୈତନ୍ୟ ପ୍ରଭୃତି ଶତ ଶତ ସାଧୁ ଯେଉଁ ପ୍ରଣାଳୀରେ ଉପାସନା କରି ସିଦ୍ଧି ଲାଭ କରିଥିବା ପ୍ରତ୍ୟକ୍ଷ ବିଷୟ, ସେ ପ୍ରଣାଳୀକୁ କିଏ ଘୃଣା କରିବାକୁ ସାହସ କରିବ ? ତେବେ ଆମ୍ଭମାନଙ୍କର ମତ, ସେ ପ୍ରଣାଳୀ ସମସ୍ତଙ୍କ ପକ୍ଷରେ ଅବଲମ୍ବନୀୟ ନୁହେଁ—ନିରାକାର ବ୍ରହ୍ମହିଁ ଜୀବର ଉପାସ୍ୟ ବୋଲି ଆବହମ ଯୁଗରୁ ସିଦ୍ଧାନ୍ତିତ ହୋଇଅଛି ।"
>
> —ଶ୍ରୀ କୁଳମଣି ଦାଶ

ତାହାଙ୍କର ଧର୍ମପ୍ରାଣତାହିଁ ତାହାଙ୍କ ଅପରୂପ ଜୀବନର ଶ୍ରେଷ୍ଠ ସୌନ୍ଦର୍ଯ୍ୟ । ସେ ଅତି ଉଚ୍ଚତମ ଅର୍ଥରେ ଧାର୍ମିକ ଥିଲେ । ସମସ୍ତ ଧର୍ମର ସାରସାରରେ ତାହାଙ୍କ ହୃଦୟ-ମନ୍ଦିର ପୂର୍ଣ୍ଣ ହୋଇ ରହିଥିଲା । ସେହି ଧର୍ମଜ୍ଞାନ ଏଭଳି ଉଦାର ଓ ମଧୁର, ସାର୍ବଭୌମିକ ଓ ସାର୍ବଜନୀନ ଯେ, ସାଂପ୍ରଦାୟିକ କ୍ଷୁଦ୍ରଭାବର କଣାମାତ୍ର ତାହାଙ୍କୁ ସ୍ପର୍ଶ କରୁ ନ ଥିଲା; ସାଂପ୍ରଦାୟିକତା ସେହି ମହତ୍ତର ଧାରଣାରେ ବିଲୀନ ହୋଇଯାଇଥିଲା । ଖ୍ରିଷ୍ଟୀୟମାନେ ବିଶ୍ୱନାଥଙ୍କ ମୁହଁରୁ ଆତ୍ମତ୍ୟାଗମୟ ଖ୍ରିଷ୍ଟୀଶ୍ୱରର ଭକ୍ତିପୂର୍ଣ୍ଣ ଗୁଣଗାଥା ଶୁଣି ତାହାଙ୍କୁ ଖ୍ରିଷ୍ଟୀଧର୍ମନିଷ୍ଠ ଜ୍ଞାନ କରି ଆତ୍ମସଂପ୍ରୀତି ଲାଭ କରୁଥିଲେ । ବ୍ରାହ୍ମ ଓ ଥିଅଜଫିଷ୍ଟଗଣ ତାହାଙ୍କର ବିଶ୍ୱାସ ଓ ଆସକ୍ତି ଦର୍ଶନରେ ତାହାଙ୍କୁ ପରମପବିତ୍ର ଧର୍ମନିଷ୍ଠ ବ୍ୟକ୍ତି ବୋଲି ବୁଝୁଥିଲେ । ସକଳ ଧର୍ମର ପ୍ରାଣସ୍ୱରୂପ ଭଗବାନଙ୍କପ୍ରତି ଅନନ୍ତ ଭକ୍ତି ଓ ପ୍ରଗାଢ଼ ପ୍ରେମରେ ବିଶ୍ୱନାଥ ସର୍ବଦା ତନ୍ମୟ ରହୁଥିଲେ— କାୟମନୋବାକ୍ୟରେ ତାଙ୍କର ସୁମଙ୍ଗଳମୟ ଇଚ୍ଛା ପାଳନ କରିବାପାଇଁ ଜୀବନ ଧାରଣ କରିଥିଲେ ।

ଯେଉଁମାନଙ୍କ ମନୀଷା ଓ ମନସ୍ୱିତା ପ୍ରଭାବରୁ ବ୍ରାହ୍ମଧର୍ମର ବିସ୍ତାର ଉତ୍କଳରେ ଘଟିଥିଲା, ସେମାନଙ୍କର ନାମ କରିବାକୁ ହେଲେ ସର୍ବାଗ୍ରରେ ଉତ୍କଳବିର ମଧୁସୂଦନ ଏବଂ ତାହାଙ୍କ ପଛରେ ଭୁମ୍ବର ନାମ ମନେ ପଡ଼ିଯାଏ । ଉଭୟହିଁ ଯେପରି ଏକ ଭାବ-ବୃନ୍ତର ଯୋଡ଼ିଏ ଫୁଲ । ମଧୁସୂଦନଙ୍କ ପ୍ରଭାବରେ ଭୁମ୍ବର ଚରିତ୍ର ଯେ ଅନେକ ପରିମାଣରେ ଗଠିତ ହୋଇଥିଲା, ଏହା ଯେପରି

ସତ୍ୟ, ତୁମ୍ଭ ପ୍ରଭାବରେ ମଧୁସୂଦନଙ୍କ ଭାବ-ପ୍ରବାହ ଯେ କେତେକ ପରିମାଣରେ ବିପୁଳ ଆକାର ଧାରଣ କରିଥିଲା, ଏହା ମଧ୍ୟ ସେହିପରି ସତ୍ୟ । ଉଭୟେ ବ୍ରାହ୍ମଧର୍ମଭୁକ୍ତ ହେଲେହେଁ ସାହିତ୍ୟସାଧନାହିଁ ପ୍ରକୃତ ଧର୍ମ ବୋଲି ଉଭୟେହିଁ ମନେ କରିଥିଲେ ।

—ଶ୍ରୀ ଶଶିଭୂଷଣ ରାୟ

ତାଙ୍କର ପବିତ୍ରତାବୋଧ ଅତି ଉଚ୍ଚ ଥିଲା । ଏ ବିଷୟରେ ମହାତ୍ମା କେଶବଚନ୍ଦ୍ର ତାଙ୍କର ଶ୍ରେଷ୍ଠ ଆଦର୍ଶ ଥିଲେ । ଅପବିତ୍ରତା, ଅଜ୍ଞାନ ଓ ଅନ୍ୟାୟ ବିରୋଧରେ ସେ ଜୀବନବ୍ୟାପୀ ସଂଗ୍ରାମ କରିଥିଲେ । କାର୍ଲାଇଲ୍ (Carlyle) ଓ ଇମର୍ସନ୍ (Emorson)ଙ୍କ ଓଜସ୍ୱିତାପୂର୍ଣ୍ଣ ଗ୍ରନ୍ଥାବଳି ସେ ଆଗ୍ରହ ସହକାରେ ପାଠ କରୁଥିଲେ । କାର୍ଲାଇଲ୍‌ଙ୍କ ନିମ୍ନଲିଖିତ ବାକ୍ୟଟି ସେ ସର୍ବଦା ମନେ ରଖି ତଦନୁସାରୀ କାର୍ଯ୍ୟ କରୁଥିଲେ :

> "Are not all true men, that live or that ever lived, soldiers of the same army, enlisted under Heaven's Captaincy, to do battle against the same enemy, the Emperor of Darkness and Wrong?"

ପୁନଶ୍ଚ, ତାଙ୍କ ପବିତ୍ରତାବୋଧକୁ ମିଲ୍‌ଟନୀୟ (Miltonic) ବୋଲି ଯାଇପାରେ । ସେ ମହାକବି ମିଲ୍‌ଟନଙ୍କ ପବିତ୍ରତାର ଓ ମହୋଦାରତା (Sublimity)ର ଭୂୟସୀ ପ୍ରଶଂସା କରୁଥିବାର ମୁଁ ଶୁଣିଅଛି । ମିଲ୍‌ଟନ୍‌ଙ୍କପରି ସେ ସର୍ବଦା ଧର୍ମପଥରେ ଚାଲୁଥିଲେ ଓ ସ୍ୱକୀୟ ଜ୍ୱଳନ୍ତ ଉଦାହରଣଦ୍ୱାରା ତାଙ୍କ ସଂସ୍ପର୍ଶରେ ଆସୁଥିବା ବ୍ୟକ୍ତିମାନଙ୍କୁ ଧର୍ମଭାବରେ ପ୍ରଭାବିତ କରୁଥିଲେ । ମିଲ୍‌ଟନ୍‌ଙ୍କ ନିମ୍ନୋଦ୍ଧୃତ ପ୍ରସିଦ୍ଧ ପଙ୍‌କ୍ତିଗୁଡ଼ିକର ମହାଭାବ ବିଶ୍ୱନାଥଙ୍କ ଜୀବନର ପ୍ରତ୍ୟେକ ଘଟଣାରେ ଉଣାଅଧିକେ ଅନୁସୃତ ହୋଇଥିବାପରି ବୋଧ ହୁଏ :

> "Mortals ! that would follow me,
> Love Virtue; She alone is free,
> She can teach ye how to climb
> Higher than the sphery hime.
> Or, if Virtue feeble were,
> Heaven Itself would stoop to Her."

ଶରୀରପାତ୍ରମଳଣ

ବିଶ୍ୱନାଥ-ଚନ୍ଦନର ଉଞ୍ଚନସାର

ବିଶ୍ୱନାଥ ନିମ୍ନଲିଖିତ ବଙ୍ଗଳା କବିତାଂଶଦ୍ୱୟ ଅନେକ ସମୟରେ ଗାନ କରୁଥିବାର ମୁଁ ଶୁଣିଅଛି—

୧ । ଦୟାଲ୍ ନାମେ ଭାସ ସୁଖେ ମନ୍ ଆମାର୍
କେନ ରେ ଭାବ ଆର୍
(ଓରେ) ସାହସେ ନିର୍ଭର୍ କରେ ଝାଁପ୍ ଦିୟେ ଯାଓରେ ପଡ଼େ
ଡୁବିଲେଓ ଅବଶ୍ୟ ପାବେ ଉଦ୍ଧାର୍ ॥
୨ । ଯେ ଯାବେ ଯାକ୍, ଯେ ଯାବେ ଥାକ୍
ଶୁନେ ଚଲ ତୋମାର ଡାକ୍ ।

ଉପରୋକ୍ତ ସଂଗୀତାଂଶଦ୍ୱୟ ସେ ଯେ କେବଳ ଗାନ କରୁଥିଲେ ତାହା ନୁହେଁ, ତଦନୁସାରେ ନିଜ ଜୀବନ ମଧ୍ୟ ପରିଚାଳନା କରୁଥିଲେ । ସେ ଦୟାମୟ ପରମେଶ୍ୱରଙ୍କ ଅମୃତମୟ ନାମ ଗାନ କରି କରି ପରମପବିତ୍ର ସୁଖରେ ଭାସୁଥିଲେ ଓ କୌଣସି ବିଷୟରେ ଭାବନା କରୁ ନ ଥିଲେ ।

— ଶ୍ରୀ ଆନନ୍ଦଚନ୍ଦ୍ର ପତି

ତାହାଙ୍କର ସମସ୍ତ କାର୍ଯ୍ୟରେ ଧର୍ମନିଷ୍ଠା ପ୍ରତିଭାତ ହେଉଥିଲା । ସେ ଘୋର ଦୁଃଖ, ଦୈନ୍ୟ ଓ ବିପଦର କବଳରେ ପଡ଼ି ମଧ୍ୟ ଧର୍ମବିଶ୍ୱାସଯୋଗୁଁ ଆତ୍ମରକ୍ଷା କରିପାରିଥିଲେ । ଯେଉଁମାନେ 'ବ୍ରାହ୍ମସମାଜ'ରେ ଆଚାର୍ଯ୍ୟରୂପେ ବିଶ୍ୱନାଥଙ୍କୁ ଦେଖିଅଛନ୍ତି ଓ ତାହାଙ୍କର ଆବେଗମୟୀ ପ୍ରାର୍ଥନା ଶୁଣିଅଛନ୍ତି, ସେମାନେ ତାହାଙ୍କ ଧର୍ମପ୍ରାଣତାର କଥଞ୍ଚିତ୍ ଧାରଣା କରିପାରିଥିବେ । ସେ ରବିବାର ବ୍ୟତୀତ ଅନ୍ୟ ଦିନମାନଙ୍କରେ ନାନାପ୍ରକାର ସଭା ସମିତିରେ ଯୋଗ ଦାନ କରୁଥିଲେ; ମାତ୍ର ରବିବାସରରେ—'ବ୍ରାହ୍ମସମାଜ'ର ଉପାସନା ଦିବସରେ —ଅନ୍ୟ କୌଣସି ସଭାରେ ଯୋଗଦାନ ନ କରି 'ବ୍ରାହ୍ମସମାଜ'ରେ ହିଁ ଉପସ୍ଥିତ ହେଉଥିଲେ । ତାହାଙ୍କର ଏ ନିଷ୍ଠା ସର୍ବଥା ଅନୁକରଣୀୟ । ବିଶ୍ୱନାଥ ନିଜ ଧର୍ମପ୍ରତି ଏକାନ୍ତ ନିଷ୍ଠାପର ସତ୍ୟ, କିନ୍ତୁ ପରଧର୍ମପ୍ରତି ସହୃଦୟ ଥିଲେ ।

—ଶ୍ରୀ କୃଷ୍ଣଚନ୍ଦ୍ର ସେନଗୁପ୍ତ

ବିଶ୍ୱନାଥଙ୍କ ପ୍ରାଣରେ ଯେଉଁ ସନାତନ ବ୍ରହ୍ମଭାବର ଉଦୟ ହେଲା, ତାହା କାହାର କୃତ ନୁହେ, ସଂପୂର୍ଣ୍ଣ ସ୍ୱାଭାବିକ—ତାହା କେବଳ ତାଙ୍କ ଆତ୍ମ-ପ୍ରେରଣାର ଫଳ । ଜୀବନର ପ୍ରାରମ୍ଭରେ ଶୁଭ ମୁହୂର୍ତ୍ତରେ ଏହି ପବିତ୍ର ଭାବ ଜାଗ୍ରତ ହୋଇଥିବାରୁ ସେ ସାରା ଜୀବନ ପବିତ୍ରଭାବରେ କଟାଇପାଇଛନ୍ତି ।

. ଶଦେହଅଣଜ୍ଞଣ

ତାଙ୍କର ସମସ୍ତ ପରବର୍ତ୍ତୀ ଜୀବନ ଆଲୋଚନା କଲେ ଦେଖାଯାଏ ଯେ, ସେ ସଂସାର-ଆଶ୍ରମରେ ଜଣେ ପ୍ରକୃତ ସନ୍ନ୍ୟାସୀ । ସେ ସଂସାରବନ୍ଧନମଧ୍ୟରେ ରହି ପ୍ରକୃତ ମୁକ୍ତକାମୀ ଥିଲେ । ସଂସାର ସହିତ ଆଜୀବନ ସଂଗ୍ରାମ କରି ସେ ଜଣେ ପ୍ରକୃତ ବୀରର ପରିଚୟ ଦେଇଯାଇଅଛନ୍ତି ।

ସେ ଯେ ଜଣେ ବୀର ଥିଲେ, ତାହା କେବଳ ଅଚଳଭକ୍ତି ବ୍ରହ୍ମବିଶ୍ୱାସର ଫଳ । ଚକ୍ଷୁ ମୁଦ୍ରିତ କରି ଉପାସନାରେ ନିରତ ଥିଲାବେଳେ ବ୍ରହ୍ମଙ୍କର ଦିବ୍ୟ ଆଲୋକ ଓ ନିର୍ମଳ ଜ୍ୟୋତି ତାଙ୍କ ହୃଦୟର ପ୍ରତ୍ୟେକ ତନ୍ତ୍ରୀ ଭେଦ କରି ବାହାରି-ଆସୁଥିଲା । ଋଷିମୁଖନିଃସୃତ ବେଦ ନିନାଦପରି ଯେତେବେଳେ ତାଙ୍କର ଗମ୍ଭୀର ଧ୍ୱନି ଶ୍ରୋତାର କର୍ଣ୍ଣରେ ପ୍ରବେଶ କରୁଥିଲା, ସେତେବେଳେ ମନେ ହେଉଥିଲା, ସତେ ଯେପରି ଦେବତାଙ୍କର ଶୁଭ ଆଶୀର୍ବାଦ ଅମୃତପ୍ରବାହରେ ବହିଆସୁଅଛି । ସତେ ଯେପରି ଶିଶୁଟି ମାତୃକୋଳକୁ ଫେରିଯିବାଲାଗି ବ୍ୟାକୁଳ, ସତେ ଯେପରି ସେ ଆଉ ସଂସାରର କୌଣସି ଖେଳନାରେ ଭୁଲି ରହିବ ନାହିଁ !

—ଶ୍ରୀ ଚନ୍ଦ୍ରଶେଖର ମିଶ୍ର

ଈଶ୍ୱରଙ୍କ ପ୍ରତି ବିଶ୍ୱନାଥଙ୍କ ଭକ୍ତିର ପରିଚୟ ତାଙ୍କର ନିଜ ଜୀବନର କାର୍ଯ୍ୟକଳାପ । ସେହି ଈଶ୍ୱରଭକ୍ତି ଓ ତୀବ୍ର ଧର୍ମପରାୟଣତାବଳରେ ସେ ତରୁଣ ବୟସରେ ଘରଦ୍ୱାର ଛାଡ଼ି ଏକାକୀ ଅସହାୟ ଅବସ୍ଥାରେ ରାଜଦାଣ୍ଡରେ ଠିଆ ହୋଇଥିଲେ ଏବଂ ତାହାରି ଉପରେ ନିର୍ଭର କରି ନିଜର ଯତ୍ନ ଓ ବଳଦ୍ୱାରା ସଂସାରରେ ଜଣେ ସୁପ୍ରତିଷ୍ଠିତ ବ୍ୟକ୍ତିର ସମ୍ମାନ ଲାଭ କରିବାକୁ ସମର୍ଥ ହୋଇଥିଲେ । ସେହି ଭଗବଦ୍‌ଭକ୍ତି ତାଙ୍କର ପ୍ରତି କାର୍ଯ୍ୟକୁ ନିୟନ୍ତ୍ରିତ କରିଥିଲା । ଜୀବନର ଶେଷ ମୁହୂର୍ତ୍ତପର୍ଯ୍ୟନ୍ତ ସେ ଈଶ୍ୱରବିଶ୍ୱାସ ଓ ଧର୍ମପରାୟଣତାରୁ ତିଳେମାତ୍ର ବିଚ୍ୟୁତ ହୋଇ ନ ଥିଲେ । ସାଂସାରିକ ଲୋଭ ପ୍ରଲୋଭନ ତାଙ୍କୁ ଧର୍ମପଥରୁ ବିଚଳିତ କରିପାରି ନ ଥିଲା । ତାଙ୍କ ମୁଖରୁ ଶୁଣିଅଛୁଁ, ସରକାରୀ କର୍ମରେ ଓଡ଼ିଶାର ଦୂରବର୍ତ୍ତୀ ସ୍ଥାନରେ ତାଙ୍କ ଯୌବନରେ ଶତାଧିକ ଟଙ୍କା ବେତନରେ ତାଙ୍କୁ କାର୍ଯ୍ୟ ଗ୍ରହଣ କରିବାର ଅନୁରୋଧ ଆସିଥିଲା; ····ମାତ୍ର ସେ କଟକ ସହରରେ ରହି ସୁଧୀସଜ୍ଜନମାନଙ୍କ ସଙ୍ଗସୁଖରେ ଜ୍ଞାନାର୍ଜନ କରିବାର ପିପାସା ଓ 'ବ୍ରାହ୍ମସମାଜ'ର ପରିଚାଳନା କାର୍ଯ୍ୟକୁ ପରିତ୍ୟାଗ କରି ଦୂରରେ ରହି ଅର୍ଥାର୍ଜନ କରିବାକୁ ମନ ବଳାଇ ନ ଥିଲେ ।

—ଶ୍ରୀ ପଦ୍ମଚରଣ ପଟ୍ଟନାୟକ

ଶତେହପରିଶ

## ୭. ସମାଜସଂସ୍କାର ଓ ରାଜନୀତି

ସମାଜସଂସ୍କାର ଓ ରାଜନୀତିରେ ତାଙ୍କର ମୋର ଅନେକ ସମୟରେ ମତଦ୍ୱୈଧ ଲକ୍ଷିତ ହେଉଥିଲା; କିନ୍ତୁ ଆମମଧ୍ୟରେ ତତ୍ତତ୍ ମତଭେଦହେତୁ କେବେ ହେଲେ ବନ୍ଧୁତାର ହ୍ରାସ ହୋଇ ନ ଥିଲା ।

—ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ

ତାଙ୍କର ନିରପେକ୍ଷ ସମାଲୋଚନା ଓ ସ୍ୱାଧୀନ ମତବାଦ ଅନେକ କ୍ଷେତ୍ରରେ ଉତ୍କଳୀୟ ସମାଜ ଓ ରାଜନୀତି କ୍ଷେତ୍ରରେ ଘୋର ପରିବର୍ତ୍ତନ ବିଧାନ କରିଥିଲା । ସମସାମୟିକ ସମାଜର ବହୁ ବିଶିଷ୍ଟ ବ୍ୟକ୍ତିଙ୍କର ସ୍ୱେଚ୍ଛାଚାରିତାକୁ ବିଶ୍ୱନାଥଙ୍କ ଲେଖନୀହିଁ ଦୂର କରିଥିଲା ଏବଂ ଅନେକ ଧର୍ମଧ୍ୱଜୀ ତାଙ୍କ ଲେଖନୀ-ଭୟରେ ସନ୍ମାର୍ଗର ପଥିକ ହେବାକୁ ବାଧ୍ୟ ହୋଇଥିଲେ ।

—ଶ୍ରୀ କୁଳମଣି ଦାଶ

୧୯୦୫ ମସିହାରେ ଯେତେବେଳେ ବଙ୍ଗ-ବ୍ୟବଚ୍ଛେଦ ଘେନି……… ସୁରେନ୍ଦ୍ରନାଥ ନିଜର ବାଗ୍ମିତାବଳରେ ବଙ୍ଗପ୍ରାଣକୁ ଆଲୋଡ଼ିତ କରୁଥିଲେ, ସେତେବେଳେ ବିଶ୍ୱନାଥ ନିଜର ଅସାଧାରଣ ବାକ୍‌ଶକ୍ତିଦ୍ୱାରା ଉତ୍କଳପ୍ରାଣରେ ନବ ଜାଗରଣର ସୂତ୍ରପାତ କଲେ । ସେତେବେଳେ ବିଶ୍ୱନାଥ ପୁରୁଷସିଂହ । ଯେଉଁମାନେ ସେହି ସମୟରେ ତାଙ୍କର ସେ ମୂର୍ତ୍ତି ଦେଖି ନାହାନ୍ତି ଓ ସେ ମେଘମନ୍ଦ୍ର ଗର୍ଜନ ଶୁଣି ନାହାନ୍ତି, ସେମାନେ ବୃଦ୍ଧ ବିଶ୍ୱନାଥଙ୍କୁ ଦେଖି ତାଙ୍କ ଯୌବନର କାର୍ଯ୍ୟକଳାପର ବିଶେଷ ଧାରଣା କରିପାରିବେ ନାହିଁ । ରାଜନୀତି-କ୍ଷେତ୍ରରେ ବିଶ୍ୱନାଥ ଦେଶର କ୍ରମୋନ୍ନତି ବାଞ୍ଛା କରୁଥିଲେ ଏବଂ ବ୍ରିଟିଶ ଶାସନାଧୀନରେ ରହିବା ଯେ ବର୍ତ୍ତମାନ ଭାରତବାସୀଙ୍କ ପକ୍ଷରେ ଶ୍ରେୟସ୍କର, ତହିଁରେ ମଧ୍ୟ ତାହାଙ୍କର ସଂପୂର୍ଣ୍ଣ ବିଶ୍ୱାସ ଥିଲା । ଏହି ବିଶ୍ୱାସପାଇଁ ତାହାଙ୍କୁ ଲାଞ୍ଛନା ଭୋଗ କରିବାକୁ ପଡ଼ୁଥିଲା; ତଥାପି ସେ ସେହି ଲାଞ୍ଛନାପ୍ରତି ଭ୍ରୂକ୍ଷେପ କରୁ ନ ଥିଲେ ।

—ଶ୍ରୀ କୃଷ୍ଣଚନ୍ଦ୍ର ସେନଗୁପ୍ତ

ସମାଜର ଯାବତୀୟ କୁସଂସ୍କାରକୁ ବଜ୍ରଗମ୍ଭୀର ଭାଷାରେ ନିନ୍ଦା କରି ବଜ୍ରହସ୍ତରେ ନିଜ ଜୀବନରେ ସେ ଯେଉଁ କାର୍ଯ୍ୟ କରିଯାଇଛନ୍ତି, ତାହା ଦେଖିଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ହୁଏ । ତାଙ୍କର ସେହି ଦୃଢ଼ତା ସମକ୍ଷରେ ଆମେ ମସ୍ତକ

ସ୍ୱତଃ ନତ ହୋଇଯାଏ । କି ସାହସ, କି ଦମ୍ଭ ! ବିଧବାବିବାହ ଓ ଯୁବତୀ-ବିବାହ ସପକ୍ଷରେ, ଜାତିଭେଦ ଓ ଅସ୍ପୃଶ୍ୟତାରୂପୀ ଅନ୍ଧବିଶ୍ୱାସ ବିପକ୍ଷରେ ସେ ଯେଉଁ ଭାଷାରେ ନିଜ ମତ ପ୍ରକାଶ କରିଯାଇଛନ୍ତି, ତାହା କି ଜୀବନ୍ତ, କି ଅମର ! ରକ୍ଷଣଶୀଳ ଅନ୍ଧବିଶ୍ୱାସୀ ବୁଝିପାରୁ ନାହିଁ ସେ କ'ଣ କରୁଛି—ଲୌହକୁ କାଞ୍ଚନ, ଅଭ୍ରକୁ ଦର୍ପଣ ଓ ରାକ୍ଷସୀକୁ ସୀତା ବୋଲି ସେ ଭାବୁଛି !

—ଶ୍ରୀମତୀ ସରଳା ଦେବୀ



ବାଗ୍ମୀ ବିଶ୍ୱନାଥଙ୍କ ଜୀବନାନ୍ତର କେତେକ ବର୍ଷପରେ ତାଙ୍କ ପ୍ରଥମ ପ୍ରତିଷ୍ଠିତ ଉଚ୍ଚପ୍ରାଥମିକ ବିଦ୍ୟାଳୟଟି ସାମୂହିକ ଗ୍ରାମୀଣ ସହଯୋଗଫଳରେ ମଧ୍ୟଇଂରାଜୀ ବିଦ୍ୟାଳୟ ସ୍ତରକୁ ଉନ୍ନୀତ ହେଲା ଏବଂ ତାହା ପୁଣି ଯଥାକାଳରେ ପୂର୍ଣ୍ଣାଙ୍ଗ ଉଚ୍ଚଇଂରାଜୀ ବିଦ୍ୟାଳୟରେ ପରିଣତ ହୋଇ 'ବାଗ୍ମୀ ବିଶ୍ୱନାଥ ବିଦ୍ୟା-ନିକେତନ' ନାମ ଧାରଣ କଲା । ଏହି ସଫଳତା ହାସଲପାଇଁ ସଂକଳ୍ପିତଚେତା ଗ୍ରାମର ଦୁଇ ବରିଷ୍ଠ ବିଦ୍ୟୋତ୍ସାହୀ ଜଗନ୍ନାଥ କର ଓ ପ୍ରଫେସର୍ କରୁଣାକର କରଙ୍କ ବହୁତୋମୁଖୀ ଉଦ୍ୟମ ଓ ଅକ୍ଳାନ୍ତ ଶ୍ରମ ଏକାନ୍ତ ଅଭିନନ୍ଦନୀୟ । ଜନ୍ମପୀଠ ମୂଳବସନ୍ତସ୍ଥ ଏହି ଶିକ୍ଷାନୁଷ୍ଠାନଟିହିଁ ବାଣୀବରପୁତ୍ର ବିଶ୍ୱନାଥଙ୍କ ସ୍ମୃତିରକ୍ଷଣର ପ୍ରଧାନ ମଞ୍ଚରୂପେ ଏପର୍ଯ୍ୟନ୍ତ ନିଜର କର୍ତ୍ତବ୍ୟ କରିଆସିଅଛି । ଏଠାରେ ପ୍ରତିବର୍ଷ ସୂରିବରଙ୍କ ଜନ୍ମ ଓ ତିରୋଧାନ ଦିବସରେ ବିଭିନ୍ନ ସ୍ମାରକୀ ଉତ୍ସବ-ସମାରୋହ ସହ ଅନୁଷ୍ଠିତ ହୁଏ ଗଣ୍ୟମାନ୍ୟ ପଦସ୍ଥ ବ୍ୟକ୍ତି ଓ ସାରସ୍ୱତ ରଥୀମାନଙ୍କ ସଦୟ ଯୋଗଦାନରେ ।

ଅଧିକନ୍ତୁ, ଉତ୍କଳ ସାହିତ୍ୟ ସମାଜ ତଥା ବିଭିନ୍ନ ପତ୍ରପତ୍ରିକା ଓ ବିଭିନ୍ନ ପଞ୍ଜିକାର ଅଧିକାରୀମାନେ ଏ ଦିଗରେ ଉତ୍ସାହପ୍ରଦ ସହଯୋଗ ଯଦି କରନ୍ତି, ତାହାହେଲେ ସାହିତ୍ୟଗୁରୁ ବାଗ୍ମୀ ବିଶ୍ୱନାଥଙ୍କ ସ୍ମୃତିପୂଜା ଅଧିକ ବ୍ୟାପକ ହୋଇପାରନ୍ତା ।